# ସୂଚୀ



# କବି ଜୟଦେବ

ଶ୍ରୀକ୍ଷେତ୍ରବାସୀ ଭକ୍ତକବି ଶ୍ରୀଜୟଦେବ ଉତ୍କଳର ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଜଣେ ପରମ ଭକ୍ତ ଥିବା ବିଷୟ ମୈଥିଳୀ ପଣ୍ଡିତ ଶ୍ରୀ ଚନ୍ଦ୍ରଦତ୍ତଙ୍କ କୃତ ପ୍ରସିଦ୍ଧ 'ଭକ୍ତମାଳା' ଗ୍ରନ୍ଥରେ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଅଛି ।

ଉତ୍କଳ ଦେଶର ଜଗନ୍ନାଥ ପୁରୀ ପ୍ରାନ୍ତରେ ବ୍ରାହ୍ମଣ ସଂକୁଳ କେନ୍ଦୁବିଲ୍ୱ ନାମକ ଗ୍ରାମରେ ଶ୍ରୀଜୟଦେବ ଜନ୍ମ ଗ୍ରହଣ କରିଥିଲେ । ଜୟଦେବ ଗୃହ ତ୍ୟାଗ କରି ସନ୍ନ୍ୟାସ ବ୍ରତ ଅବଲମ୍ବନ ପୂର୍ବକ ଶ୍ରୀକ୍ଷେତ୍ର ସୀମାରେ ନିର୍ମିତ ଏକ ପର୍ଣ୍ଣକୁଟୀରରେ ବାସ କରୁଥିଲେ । ଦେବଶର୍ମା ନାମକ ଜନୈକ ବିପ୍ର ଶ୍ରୀଜଗନ୍ନାଥଙ୍କ ବରପ୍ରସାଦରୁ ଲାଭ କରିଥିବା ସ୍ୱୀୟ ପ୍ରଥମ ଅପତ୍ୟ ପଦ୍ମାବତୀଙ୍କୁ ଶ୍ରୀକ୍ଷେତ୍ର ଆଗମନ ପୂର୍ବକ ମହାପ୍ରଭୁଙ୍କ ନିକଟରେ ପୂର୍ବକୃତ ଶପଥ ଅନୁଯାୟୀ ତାଙ୍କ ସେବା ପାଇଁ ଉତ୍ସର୍ଗ କରିଥିଲେ । କିନ୍ତୁ ସେ ଶ୍ରୀଜଗନ୍ନାଥଙ୍କ ସ୍ୱପ୍ନାଦେଶ ପ୍ରାପ୍ତ ହୋଇ ତାଙ୍କର ପ୍ରିୟ ଭକ୍ତ ଶ୍ରୀଜୟଦେବଙ୍କୁ ସ୍ୱକନ୍ୟାଙ୍କୁ ଅର୍ପଣ କରିଥିଲେ । ସନ୍ନ୍ୟାସୀ ଶ୍ରୀଜୟଦେବ ପ୍ରଥମେ ତାଙ୍କ ସହିତ ପରିଣୟ ପାଶରେ ଆବଦ୍ଧ ହେବା ପାଇଁ ଅନିଚ୍ଛା ପ୍ରକାଶ କରିଥିଲେ ମଧ୍ୟ ପରେ ଶ୍ରୀଜଗନ୍ନାଥଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି ଯଥାବିଧି ତାଙ୍କର ପାଣିଗ୍ରହଣ କରିଥିଲେ । ଗଭୀର ପ୍ରେମାବଦ୍ଧ ଭକ୍ତ ଦମ୍ପତି ଏକ ପ୍ରାଣରେ ନୃତ୍ୟଗୀତାଦି ଦ୍ୱାରା ଶ୍ରୀକୃଷ୍ଣାର୍ଚ୍ଚନରେ କାଳାତିପାତ କଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଜୟଦେବଙ୍କୁ ବିବାହ କରିବା ପୂର୍ବରୁ ପଦ୍ମାବତୀ ଜଣେ ନୃତ୍ୟ ପଟିୟସୀ ମହିଳା ଥିଲେ । ଦାକ୍ଷିଣାତ୍ୟର ତିନୋଟି ମନ୍ଦିରରେ ପଦ୍ମାବତୀଙ୍କ ନାମ ନୃତ୍ୟାଙ୍ଗନାଭାବେ ଶିଳାଲେଖରେ ଉଲ୍ଲେଖ ଅଛି । ଜୟଦେବ ମଧ୍ୟ କଳିଙ୍ଗର କୂର୍ମପାଟକରେ ଥିବା ସଂଗୀତ ନୃତ୍ୟ ଓ ଶାସ୍ତ୍ରୀୟ କଳା ବିଦ୍ୟାଳୟରେ ଅଧକ୍ଷ ଥିବାର ପ୍ରମାଣ ମନ୍ଦିର ଶିଳାଲେଖରେ ମିଳୁଛି ।

ତଦନନ୍ତର ଶ୍ରୀଜୟଦେବ ସ୍ୱୀୟ ପରମାରାଧ୍ୟ ଶ୍ରୀଜଗନ୍ନାଥଙ୍କ ସନ୍ତୋଷ ବିଧାନ ନିମିତ୍ତ ଶ୍ରୀଗୀତଗୋବିନ୍ଦ ରଚନାରେ ପ୍ରବୃତ୍ତ ହେଲେ । ଏକଦା ସଂଶୟାପନ୍ନ ହୋଇ ଉପଯୁକ୍ତ ଶବ୍ଦବିନ୍ୟାସ ଦ୍ୱାରା ସେ ଗୀତର ପାଦ ପୂରଣ କରିବା ପାଇଁ ଅସମର୍ଥ ହେବାରୁ ଶ୍ରୀକୃଷ୍ଣ ତାଙ୍କ ଅନୁପସ୍ଥିତ ସମୟରେ ଶ୍ରୀଜୟଦେବଙ୍କ ବେଶରେ ପର୍ଣ୍ଣକୁଟୀରରେ ପ୍ରବେଶ ପୂର୍ବକ ଏହି ପାଦ ପୂରଣ କରି ଅନ୍ତର୍ହିତ ହୋଇଗଲେ । ସ୍ନାନ ପ୍ରତ୍ୟାବୃତ କବି ଏହା ଦେଖି ବିସ୍ମୟାଭିଭୂତ ହେବାରୁ ଶ୍ରୀକୃଷ୍ଣ ସେଦିନ ରାତ୍ରିଶେଷରେ ସ୍ୱପ୍ନରେ ତାଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇ ଦେଲେ । ନିଜ ଚକ୍ଷୁରେ ଶ୍ରୀକୃଷ୍ଣଙ୍କ ଦର୍ଶନ ଲାଭ ରୂପକ ପରମ ସୌଭାଗ୍ୟ ପ୍ରାପ୍ତ ହୋଇଥିବାରୁ, ଭକ୍ତକବିଙ୍କର ସ୍ୱପତ୍ନୀ ପଦ୍ମାବତୀଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତି ବିଶେଷ ବୃଦ୍ଧି ଲାଭ କଲା । ଏହା ପରେ ସେ ପ୍ରତ୍ୟହ ପତ୍ନୀଙ୍କ ସହ ଶ୍ରୀଜଗନ୍ନାଥଙ୍କ ସମ୍ମୁଖରେ ତନ୍ମୟ ହୋଇ ଶ୍ରୀଗୀତଗୋବିନ୍ଦ ଗାନ କରି ନୃତ୍ୟ କରିବାକୁ ଲାଗିଲେ । ଶ୍ରୀକ୍ଷେତ୍ରବାସ କାଳରେ ଏହାର ରଚନା ସମାପନାନ୍ତେ ସେ ଏହାକୁ ଶ୍ରୀଜଗନ୍ନାଥଙ୍କୁ ନୈବେଦ୍ୟ ରୂପେ ଅର୍ପଣ କରି ନିଜ ଜୀବନକୁ ଧନ୍ୟ କରିଥିଲେ ।

ଶ୍ରୀଗୀତଗୋବିନ୍ଦର ମହତ୍ତ୍ୱ ଓ ଉତ୍କର୍ଷରେ ମୁଗ୍ଧ ହୋଇ ତତ୍କାଳୀନ ଉତ୍କଳାଧୀଶ ତାହାର ସମକକ୍ଷ ଅନ୍ୟ ଏକ 'ଗୀତଗୋବିନ୍ଦ' ରଚନା ପୂର୍ବକ ଶ୍ରୀଜଗନ୍ନାଥଙ୍କ ସମକ୍ଷରେ ଏହାର ଗାନକୁ ବାଧ୍ୟତାମୂଳକ କରିଥିଲେ । ଦିନେ ରାଜା ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ସମୟରେ ଶ୍ରୀଜୟଦେବ ରାଜାଜ୍ଞା ଅମାନ୍ୟ କରି ଗୀତଗୋବିନ୍ଦ ଗାନରେ ପ୍ରବୃତ୍ତ ଥିବା ଜାଣି ପାରିଥିଲେ । ଏଥିରେ ସେ ବିରକ୍ତ ହୋଇ ଶ୍ରୀଜୟଦେବଙ୍କୁ ଏହାର କାରଣ ଜିଜ୍ଞାସା କରିବାରୁ, ସେ ଉତ୍ତରରେ କହିଲେ ଯେ, ତାଙ୍କର ଗ୍ରନ୍ଥ ଶ୍ରୀଜଗନ୍ନାଥଙ୍କ ଅଧିକ ସନ୍ତୋଷପ୍ରଦ ।

ତଦନନ୍ତର ରୁଦ୍ଧଦ୍ୱାର ଗର୍ଭଗୃହ ମଧ୍ୟରେ ମହାପ୍ରଭୁଙ୍କ ସମକ୍ଷରେ ଉଭୟ ଗ୍ରନ୍ଥର ମହତ୍ତ୍ୱ ପରୀକ୍ଷା ପାଇଁ ରଖାଯାଇଥିଲା । କପାଟୋନ୍ମୋଚନ କଲା ପରେ ଜୟଦେବଙ୍କ ଶ୍ରୀଗୀତଗୋବିନ୍ଦ ରାଜରଚିତ ଗୀତଗୋବିନ୍ଦ ଉପରେ ରଖାଯାଇଥିବାର ଦେଖାଗଲା । ଏଥିରେ ରାଜା ଅତ୍ୟନ୍ତ କ୍ଷୁବ୍ଧ ଓ ନିରାଶ ହେବାରୁ ଶ୍ରୀଜଗନ୍ନାଥ ତାହାଙ୍କୁ ଶ୍ରୀଗୀତଗୋବିନ୍ଦର ମହତ୍ତ୍ୱ ସ୍ୱୀକାରପୂର୍ବକ ଏହାକୁ ଲୋକ ସମାଜରେ ପ୍ରଚାର କରିବା ପାଇଁ ସ୍ୱପ୍ନରେ ଆଦେଶ ପ୍ରଦାନ କରିଥିଲେ । ରାଜା ମହାପ୍ରଭୁଙ୍କ ନିକଟରେ ସ୍ୱ-ଅପରାଧ କ୍ଷମା ପାଇଁ ପ୍ରାର୍ଥନା କରି ସେହିଦିନୁ ଶ୍ରୀଜୟଦେବଙ୍କ ପ୍ରତି ବିଶେଷ ଭକ୍ତିମାନ ହେଲେ ଏବଂ ପ୍ରତ୍ୟହ କଳି-କଳୁଷ-ନାଶନ ଶ୍ରୀଗୀତଗୋବିନ୍ଦ ପାଠ କଲେ । ଏହା ପରେ ଶ୍ରୀଗୀତଗୋବିନ୍ଦର ମାହାତ୍ମ୍ୟ ଚତୁର୍ଦ୍ଦିଗରେ

ପ୍ରଚାରିତ ହେଲା । ଐତିହାସିକ ପ୍ରମାଣ ଅନୁଯାୟୀ ଯେଉଁ ଗଜପତି ସମ୍ରାଟଙ୍କ ସମୟରେ ''ଅଭିନବ ଗୀତଗୋବିନ୍ଦ'' ନାମରେ ଏକ କାବ୍ୟ ରଚିତ ହୋଇଥିଲା, ସେ ଥିଲେ ମହାନ୍ ପରାକ୍ରମଶାଳୀ ସମ୍ରାଟ ପୁରୁଷୋତ୍ତମ ଦେବ । କବିଚନ୍ଦ୍ର ରାୟ ଦିବାକର ମିଶ୍ର ଏହି କାବ୍ୟଟି ନିଜେ ରଚନା କରିଥିଲେ ମଧ୍ୟ ଗଜପତି ସମ୍ରାଟଙ୍କ ନାମରେ ଭଣିତା କରିଥିଲେ । ଏହି କାବ୍ୟଟି ଶ୍ରୀମନ୍ଦିରରେ ପ୍ରଚଳିତ ହୋଇଥିଲା । ଗଜପତି ସମ୍ରାଟ ପୁରୁଷୋତ୍ତମ ଦେବଙ୍କ ପୁତ୍ର ଗଜପତି ପ୍ରତାପରୁଦ୍ର ଦେବଙ୍କ ବେଳେ ଏହି ଦୁଇଟି କାବ୍ୟରୁ ଜଗନ୍ନାଥଙ୍କ ପ୍ରିୟ କେଉଁଟି ତାହାର ନିଷ୍ପତ୍ତି କରାଯାଇଥିଲା ଓ ତାହାପରେ ଶ୍ରୀମନ୍ଦିରର ଜୟବିଜୟ ଦ୍ୱାରରେ ଗଜପତିଙ୍କ ଆଦେଶ ଲିପିବଦ୍ଧ କରାଗଲା । ଜୟଦେବଙ୍କ ଗୀତଗୋବିନ୍ଦ କେଉଁ ସମୟରେ ଜଗନ୍ନାଥଙ୍କ ପାଖରେ ବୋଲାଯିବ ଏବଂ କିଏ ତାହା ବୋଲିବେ ଏକଥା ମଧ୍ୟ ସେଥିରେ ଲେଖା ଅଛି । ଗଜପତି ସମ୍ରାଟ ପୁରୁଷୋତ୍ତମ ଦେବଙ୍କ ସମୟ ଥିଲା ପଞ୍ଚଦଶ ଶତାବ୍ଦୀ ଏବଂ ଜୟଦେବ ଥିଲେ ଦ୍ୱାଦଶ ଶତାବ୍ଦୀର କବି । ତେଣୁ ଜଗନ୍ନାଥଙ୍କ ପାଖରେ ଏହି ପରୀକ୍ଷା ହେଲାବେଳକୁ ଜୟଦେବ ଜୀବିତ ନଥିଲେ । ଗଜପତି ପ୍ରତାପରୁଦ୍ର ଦେବଙ୍କ ସମୟରେ ହୋଇଥିବା ଏହି ପରୀକ୍ଷାଟି କଥା କିମ୍ବଦନ୍ତୀ ବ୍ୟତୀତ ସେହି ସମୟରେ ଲେଖା ହୋଇଥିବା ''ବୈଷ୍ଣବ ଲୀଳାମୃତ'' କାବ୍ୟରେ ଉଲ୍ଲେଖ ମଧ୍ୟ ଅଛି ।

ଏକଦା ଶ୍ରୀକ୍ଷେତ୍ର ସମୀପବର୍ତ୍ତୀ ଏକ ଗ୍ରାମର ଶାକ ବିକ୍ରୟକାରିଣୀ ଶରତକାଳୀନ ଚନ୍ଦ୍ରିକା ବିଧୌତ ରଜନୀରେ ସ୍ୱ-ଉଦ୍ୟାନରୁ ବାଇଗଣ ତୋଳିବା ସମୟରେ ଅତି ତନ୍ମୟ ଭାବରେ ଶ୍ରୀଗୀତଗୋବିନ୍ଦର ମଧୁର-କୋମଳ-ପଦାବଳୀ ଉଚ୍ଚ ସ୍ୱରରେ ଗାନ କରୁଥିଲେ । ସର୍ବବ୍ୟାପୀ ଶ୍ରୀଜଗନ୍ନାଥ ନିଜର ଅତିପ୍ରିୟ ଶ୍ରୀଗୀତଗୋବିନ୍ଦର ମଧୁର ଗାନରେ ଅତ୍ୟନ୍ତ ମୁଗ୍ଧ ହୋଇ ଅଲକ୍ଷିତରେ ତାହାର ପଛେ ପଛେ ଚାଲିବାକୁ ଲାଗିଲେ । ଏହା ଫଳରେ ତାଙ୍କର ଶ୍ରୀଅଙ୍ଗ ଲୁଗା ବାଇଗଣ କଣ୍ଟାରେ ଛିନ୍ନଭିନ୍ନ ହୋଇଗଲା । କେତେ ସମୟ ପରେ ବାଇଗଣ ତୋଳା ସାରି ସ୍ତ୍ରୀ ଲୋକଟି ଘରକୁ ଚାଲିଯିବାରୁ ମହାପ୍ରଭୁ ଶ୍ରୀମନ୍ଦିରକୁ ଫେରି ଆସିଲେ ।

ତତ୍‌ପରଦିନ ପ୍ରଭାତରେ ପୂଜକମାନେ କପାଟୋନ୍ମୋଚନ ପୂର୍ବକ ପ୍ରଭୁଙ୍କ ଶ୍ରୀଅଙ୍ଗ ବସ୍ତ୍ର ବାଇଗଣ କଣ୍ଟାରେ ଛିନ୍ନଭିନ୍ନ ହୋଇଥିବାର ଦେଖି ବିସ୍ମୟାଭିଭୂତ ହୋଇଗଲେ । ପୂଜା ସମ୍ଭାର ନେଇ ମହାପ୍ରଭୁଙ୍କର ଦର୍ଶନ ପାଇଁ ଆଗତ ଗଜପତି ସମ୍ରାଟ ମଧ୍ୟ ଏହା ଲକ୍ଷ୍ୟ କରି ଅତ୍ୟନ୍ତ ବିସ୍ମିତ ହେଲେ । ଏଥିରେ ସମ୍ରାଟ ଓ ପୂଜକ ଅଶୁଭ ଆଶଙ୍କାରେ ବିଶେଷ ଉଦ୍‌ବିଗ୍ନ ଓ ଚିନ୍ତାମୟ ହୋଇ ପାନାହାର ତ୍ୟାଗ କଲେ । ଅନ୍ତର୍ଯ୍ୟାମୀ ମହାପ୍ରଭୁ ସେଦିନ ନିଶାବସାନ ସମୟରେ ଉଭୟଙ୍କୁ ଶ୍ରୀଅଙ୍ଗବସ୍ତ୍ର ଛିଣ୍ଡିଛାଣ୍ଡି ଯାଇଥିବାର କାରଣ ଜଣାଇବାରୁ, ଗଜପତି ତତ୍‌ପରଦିନ ଉକ୍ତ ଶାକ ବିକ୍ରୟକାରିଣୀଙ୍କୁ ଡକାଇ ଆଣି ତାଙ୍କୁ ମହାପ୍ରଭୁଙ୍କ ନିକଟରେ ନିତ୍ୟ ଶ୍ରୀଗୀତଗୋବିନ୍ଦ ଗାନ ପାଇଁ ନିଯୁକ୍ତି ଦେଲେ । ଗଜପତି ସମ୍ରାଟ ଶ୍ରୀଜୟଦେବଙ୍କୁ ମହାପ୍ରଭୁଙ୍କ ପରମଭକ୍ତ ରୂପେ ସ୍ୱୀକାର କରି ତାଙ୍କୁ ସମ୍ମାନ ପ୍ରଦର୍ଶନ କରିବା ନିମିତ୍ତ ତାଙ୍କ ବାସସ୍ଥାନକୁ ଯାଇଥିଲେ ।

ଏକଦା ଉତ୍କଳର ମହାରାଣୀ ପଦ୍ମାବତୀଙ୍କ ସତୀତ୍ୱ ଓ ପତିପ୍ରାଣତା ପରୀକ୍ଷା କରିବା ଉଦ୍ଦେଶ୍ୟରେ ରାଜାଙ୍କ ସହିତ ଦେବ ଦର୍ଶନ ପାଇଁ ଯାଇଥିବା ଭକ୍ତକବି ଜୟଦେବଙ୍କ ମିଥ୍ୟା ଆକସ୍ମିକ ମୃତ୍ୟୁ ସମ୍ବାଦ ଛଳନାରେ କାନ୍ଦି ଜଣାଇ ଦେଲେ । ଏହା ଶ୍ରବଣ କରିବା ମାତ୍ରକେ ପତିଗତପ୍ରାଣା ପଦ୍ମାବତୀଙ୍କ ପ୍ରାଣବାୟୁ ଉଡ଼ିଗଲା । ତାଙ୍କର ହଠାତ୍ ମୃତ୍ୟୁ ଘଟିବାରୁ ରାଣୀ ଘୋର ଦୁଃଖ ଓ ଭୟରେ ବିଳାପ କରିବାକୁ ଲାଗିଲେ । ଇତ୍ୟବସରରେ ସମ୍ରାଟ ଶ୍ରୀଜୟଦେବଙ୍କ ସହ ଦେବ ଦର୍ଶନରୁ ଫେରି କ୍ରନ୍ଦନଜନିତ କୋଳାହଳର କାରଣ ଜାଣିବା ପାଇଁ ଅନ୍ତଃପୁରକୁ ଗମନ କଲେ । ସେଠାରେ ଉଭୟ ବିଗତପ୍ରାଣା ଶାୟିତା ପଦ୍ମାବତୀଙ୍କୁ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲେ । ରାଣୀଙ୍କଠାରୁ ପଦ୍ମାବତୀଙ୍କ ମୃତ୍ୟୁ ବୃତ୍ତାନ୍ତ ଜାଣି ରାଜା ତାଙ୍କ (ରାଣୀଙ୍କ) ଯୋଗୁଁ ସ୍ତ୍ରୀଙ୍କ ପ୍ରାଣନାଶ ଘଟିଥିବାର ସ୍ଥିର କଲେ ଏବଂ ସ୍ତ୍ରୀ ବଧଜନିତ ଘୋର ପାପର ଦଣ୍ଡବିଧାନ ସ୍ୱରୂପ ତାଙ୍କୁ ଗୃହତ୍ୟାଗ କରିବା ପାଇଁ କ୍ରୋଧରେ ଆଦେଶ ଦେଲେ । ରାଣୀ କୌତୁକରେ ଏପରି କରିଥିବାରୁ ତାଙ୍କର ଅପରାଧ କ୍ଷମଣୀୟ ବୋଲି ଶ୍ରୀଜୟଦେବ ରାଜାଙ୍କୁ ସାନ୍ତ୍ୱନା ଦେଲେ । ତତ୍‌ପରେ ଭକ୍ତକବି ଶ୍ରୀଜଗନ୍ନାଥଙ୍କୁ ସ୍ମରଣ ପୂର୍ବକ ବାଦ୍ୟବାଦନ ସହ ସ୍ୱ-ମୃତପତ୍ନୀଙ୍କ ପାଖରେ ପ୍ରିୟ ଗୀତଗୋବିନ୍ଦ ତନ୍ମୟ ଚିତ୍ତରେ ଗାନ କରିବାକୁ ଲାଗିଲେ । ଭକ୍ତକବି କଣ୍ଠ ବିନିସୃତ ମଧୁର ସଂଗୀତର ମୃତ ସଂଜୀବନୀ ମୂର୍ଚ୍ଛନା ପଦ୍ମାବତୀଙ୍କ ପ୍ରାଣହୀନ ଶରୀରରେ ପୁନର୍ବାର ପ୍ରାଣସଂଚାର କରିବାରୁ, ସେ ନିଦ୍ରୋତ୍‌ଥିତା ପରି ଉଠି ବସିଥିଲେ । ସକଳ ଅନ୍ତଃପୁରବାସୀ ବିସ୍ମୟୋତ୍‌ଫୁଲ୍ଲ ଲୋଚନରେ ଏହି ଜୀବନ୍ୟାସ ପ୍ରକ୍ରିୟା ସନ୍ଦର୍ଶନରେ ଭକ୍ତକବିଙ୍କୁ ସାଧୁବାଦ ଅର୍ପଣ କରିଥିଲେ । ଏହାପରେ ଶ୍ରୀଜୟଦେବ ହୃଷ୍ଟ ଚିତ୍ତରେ ପ୍ରାଣପ୍ରିୟା ପଦ୍ମାବତୀଙ୍କ ସହ ସ୍ୱଗୃହକୁ ଗମନ କଲେ ।

ଏକଦା ସାଧୁପ୍ରବର ଶ୍ରୀଜୟଦେବ ସ୍ୱ-ଭକ୍ତମାନଙ୍କ ନିମନ୍ତ୍ରଣ ରକ୍ଷା ନିମିତ୍ତ ଶ୍ରୀକ୍ଷେତ୍ର ଛାଡ଼ି ଏକ ଦୂର ଗ୍ରାମକୁ ଯାତ୍ରା କରିଥିଲେ । ସେଠାରେ ସେ ବିଶେଷ ସମ୍ମାନିତ ଓ ବହୁ ବସ୍ତ୍ର, ଅଳଙ୍କାର ଓ ସୁବର୍ଣ୍ଣପ୍ରାପ୍ତ ହୋଇ ଅରଣ୍ୟ ମାର୍ଗରେ ପୁରୁଷୋତ୍ତମ ପୁରୀକୁ ପ୍ରତ୍ୟାବର୍ତ୍ତନ କଲେ । ପଥ ମଧ୍ୟରେ ନିଷ୍ଠୁର ଓ ଅତ୍ୟନ୍ତ ହିଂସା ପରାୟଣ ଚାରିଜଣ ଦସ୍ୟୁଙ୍କ ହାବୁଡ଼ରେ ପଡ଼ିଯିବାରୁ ପ୍ରାଣରକ୍ଷା ଉଦ୍ଦେଶ୍ୟରେ ସେମାନଙ୍କୁ ସମସ୍ତ ଅଳଙ୍କାରାଦି ଧନରତ୍ନ ଅର୍ପଣ କରିଥିଲେ । ତଥାପି ନିର୍ଦ୍ଦୟ ମହାଦୁଷ୍ଟ ଦୁର୍ବୃତ୍ତଗଣ ସାଧୁଙ୍କୁ ସ୍ୱଗୃହକୁ ଫେରିବାକୁ ସୁଯୋଗ ନଦେଇ ତାଙ୍କ ହାତଗୋଡ଼ ଏକାଠି ବାନ୍ଧି ହାତ ଓ ପାଦକୁ ଖଣ୍ଡାରେ ହାଣି ଦେଲେ ଏବଂ ତାଙ୍କୁ ଜଙ୍ଗଲ ମଧ୍ୟରେ ଏକ ନିର୍ଜନ ସ୍ଥାନରେ କ୍ଷତବିକ୍ଷତ ଅବସ୍ଥାରେ ପକାଇ ଦେଇ ଚାଲି ଗଲେ । କ୍ଷୁଧାତୃଷାର୍ତ୍ତ ସାଧୁ ଜୟଦେବ ନିଜର ଏହି ଘୋର ଦୁର୍ଦ୍ଦଶାରେ ବିଚଳିତ ନହୋଇ ଶ୍ରୀଜଗନ୍ନାଥଙ୍କ ସ୍ତୁତି ଗାନ କରିବାକୁ ଲାଗିଲେ ।

ଏକଦା ରାଜା ଅଶ୍ୱପୃଷ୍ଠରେ ଆରୋହଣ ପୂର୍ବକ ସେହି ବନରେ ମୃଗୟା କରୁଥିବା ସମୟରେ ଦୁର୍ଦ୍ଦଶାଗ୍ରସ୍ତ ଓ ପରିତ୍ୟକ୍ତ ସାଧୁ ଜୟଦେବଙ୍କ ଉପରେ ତାଙ୍କର ଦୃଷ୍ଟି ପଡ଼ିଗଲା । ସେ ତତ୍‌କ୍ଷଣାତ୍ ତାଙ୍କୁ ଶିବିକା (ପାଲିଙ୍କି)ରେ ରାଜପ୍ରାସାଦକୁ ଅଣାଇ ସାଧ୍ୱୀ ପଦ୍ମାପତୀଙ୍କ ତତ୍ତ୍ୱାବଧାନରେ ରଖି ଦେଲେ । ଏହାର କିଛି ଦିନ ପରେ ସାଧୁ ବେଶଧାରୀ ସେହି ଦସ୍ୟୁଗଣ ଭକ୍ତକବିଙ୍କ ଗୃହରେ ଅତିଥି ହେବାରୁ ତାଙ୍କ ଆଦେଶରେ ସତୀ ପଦ୍ମାବତୀ ଅତି ଯତ୍ନ ଓ ଆଦର ସହକାରରେ ସେମାନଙ୍କ ପରିଚର୍ଯ୍ୟା କରିଥିଲେ । ତାଙ୍କ ଅନୁରୋଧରେ ରାଜା ମଧ ସେମାନଙ୍କୁ ବିବିଧ ରତ୍ନ, ବସ୍ତ୍ର ଓ ଆଭରଣାଦି ଦାନ କରିଥିଲେ ଏବଂ ନିରାପଦରେ ବନାଞ୍ଚଳ ଅତିକ୍ରମ ନିମିତ୍ତ ସେମାନଙ୍କ ସହିତ କେତେକ ସଶସ୍ତ୍ର ପଦାତିକ ସୈନ୍ୟ ପଠାଇଥିଲେ ।

ଏହାପରେ ରାଜଭୃତ୍ୟମାନେ ସେମାନଙ୍କ ପ୍ରତି ସାଧୁ ଜୟଦେବଙ୍କର ଏପରି ଅତିଶୟ ଶ୍ରଦ୍ଧା ଓ ଭକ୍ତି ପ୍ରଦର୍ଶନର କାରଣ ଜିଜ୍ଞାସା କରିବାରୁ ସେମାନେ ତାଙ୍କ ବିରୁଦ୍ଧରେ ସଂପୂର୍ଣ୍ଣ ଏକ ମିଛ ଘଟଣା ବର୍ଣ୍ଣନା କରିଥିଲେ । ଯଥା - ସେମାନେ କର୍ଣ୍ଣାଟକାଧିପତିଙ୍କ ଦ୍ୱାରା ଅତିଥି ରୂପେ ସତ୍‌କୃତ ହେଉଥିବା ସମୟରେ ସେଠାରେ ଉପଗତ କବି ଜୟଦେବ ସେଠା ରାଜାଙ୍କ ଦ୍ୱାରା ଏକ ଚୌର୍ଯ୍ୟ ଅପରାଧରେ ଦଣ୍ଡିତ ହୋଇଥିଲେ । ରାଜାବେଶରେ ତାଙ୍କ ଦଣ୍ଡବିଧାନ ପାଇଁ ପ୍ରେରିତ କତିପୟ ଚାଣ୍ଡାଳ ତାଙ୍କୁ ରାଜ୍ୟରୁ ବହିଷ୍କାର କରି ହତ୍ୟା କରିବା ପାଇଁ ଉଦ୍ୟତ ହେଉଥିଲେ । କିନ୍ତୁ ଶ୍ରୀଜୟଦେବ ସେମାନଙ୍କୁ ଧନରତ୍ନ ଦାନ ଦ୍ୱାରା ସନ୍ତୁଷ୍ଟ କରି ପ୍ରାଣଭିକ୍ଷା କରିବାରୁ ସେମାନେ ତାଙ୍କୁ ଜୀବନରେ ନମାରି ହାତଗୋଡ଼ କାଟି ଏକ ଜଙ୍ଗଲରେ ଛାଡ଼ି ଦେଇ ଆସିଲେ । କାଳେ ସେମାନେ ତାଙ୍କ ପୂର୍ବ ଚୌର୍ଯ୍ୟକ୍ରିୟା ଜନିତ ଦଣ୍ଡବିଧାନ ବିଷୟ ପ୍ରକାଶ କରି ଦେବେ, ଏହି ଆଶଙ୍କାରେ କପଟୀ ସାଧୁ ଶ୍ରୀଜୟଦେବ ସେମାନଙ୍କୁ ଏପରି ସାଦର ଅଭ୍ୟର୍ଥନା କରିଥିଲେ ।

ସାଧୁ ମହାତ୍ମାଙ୍କ ନାମରେ ଏପରି ଘୋର ମିଥ୍ୟାପବାଦ କରିବା ସମୟରେ ହଠାତ୍ ବଜ୍ରପାତ ଦ୍ୱାରା ସେମାନଙ୍କ ପ୍ରାଣନାଶ ଘଟିଥିଲା । ରାଜଭୃତ୍ୟଗଣ ରାଜାଙ୍କୁ ଦୁର୍ବୃତ୍ତଗଣଙ୍କ ଆକସ୍ମିକ ମୃତ୍ୟୁ ସମ୍ବାଦ ଜଣାଇ ସେମାନଙ୍କୁ ପ୍ରଦତ୍ତ ଧନରତ୍ନ ସମୂହ ପ୍ରତ୍ୟର୍ପଣ କରିଥିଲେ । ସେମାନଙ୍କ ମୃତ୍ୟୁର ଶୋକରେ ଅଧୀର ହୋଇ ଉଦାରଚେତା ଶ୍ରୀଜୟଦେବ ନିଜ ଛିନ୍ନ ହସ୍ତପଦ ଭୂଇଁରେ କଚାଡ଼ି କାନ୍ଦିବାରୁ, ପ୍ରଭୁ ଜଗନ୍ନାଥଙ୍କ କୃପାରୁ ପୁନର୍ବାର ତାଙ୍କ ହସ୍ତପଦର ଉଦ୍ଭବ ଘଟିଥିଲା । ଏତଦ୍ ଦର୍ଶନରେ ବିସ୍ମୟାଭିଭୂତ ରାଜାଙ୍କ ଅନୁରୋଧରେ ମହାପ୍ରାଣ ଜୟଦେବ ତାଙ୍କ ପ୍ରତି ଉକ୍ତ ସାଧୁ ବେଶଧାରୀ ଦସ୍ୟୁମାନଙ୍କ ପୂର୍ବ ଅତ୍ୟାଚାର ବୃତ୍ତାନ୍ତ ବର୍ଣ୍ଣନା କରିଥିଲେ । ଏହି ପ୍ରାଣଘାତକ ନୃଶଂସମାନଙ୍କ ପ୍ରତି ତାଙ୍କର କ୍ଷମା ଓ ମମତା ପ୍ରଦର୍ଶନରେ ରାଜା ବିମୁଗ୍ଧ ହୋଇଥିଲେ ।

ଦିନେ ଜରାଗ୍ରସ୍ତ ସାଧୁ ଶ୍ରୀଜୟଦେବ ବହୁ କଷ୍ଟରେ ନିତ୍ୟ ସଂକଳ୍ପିତ ପ୍ରାଚୀସ୍ନାନ ସାରି ସ୍ୱଗୃହକୁ ଫେରିବା ସମୟରେ ଦୁର୍ବଳତା ଯୋଗୁଁ ବାଟରେ ପଡ଼ି ମୂର୍ଚ୍ଛିତ ହେଲେ । ପ୍ରାଚୀସ୍ନାନ ପାଇଁ ବହିର୍ଗତ ରାଜା ପଥ ମଧ୍ୟରେ ଭକ୍ତଙ୍କର ଏପରି ଦୁର୍ଦ୍ଦଶା ଅବଲୋକନ କରି ତାଙ୍କୁ ପାଲିଙ୍କିରେ ବସାଇ ନିଜ ଘରେ ଛାଡ଼ି ଦେଲେ । ଜରା ଜନିତ ଅସାମର୍ଥ୍ୟ ଘଟିଥିବା ଯୋଗୁଁ ତାଙ୍କୁ ନିତ୍ୟ ଶିବିକାରୋହଣ ପୂର୍ବକ ପ୍ରାଚୀସ୍ନାନ ପାଇଁ ଯିବାକୁ ବିନୀତ ଅନୁରୋଧ କଲେ । କିନ୍ତୁ ପ୍ରତ୍ୟହ ପଦଚାରୀ ହୋଇ ପ୍ରାଚୀସ୍ନାନ କରିବା ତାଙ୍କର ବ୍ରତ ହୋଇଥିବାରୁ, ସେ ଏହି ଅନୁରୋଧକୁ ପ୍ରତ୍ୟାଖ୍ୟାନ କଲେ । ଏଥିରେ ରାଜା ବିଶେଷ ଚିନ୍ତିତ ହେଲେ । ଉତ୍କଳର ରାଜା ପ୍ରାଚୀସ୍ନାନ କରିବା କଥା ଏକ କିମ୍ବଦନ୍ତୀ ହୋଇପାରେ, କିନ୍ତୁ ଐତିହାସିକ ସତ୍ୟ ଉପରେ ପର୍ଯ୍ୟବସିତ ନୁହେଁ ।

ସେଦିନ ରାତିରେ ରାଜା, ରାଜମାନ୍ୟ ପୁରୋହିତ, ରାଜାଦୃତ ମହନ୍ତଗଣ, ଉକ୍ତ ଗ୍ରାମବାସୀ ଦ୍ୱିଜବୃନ୍ଦ ଏବଂ ସ୍ୱୟଂ ଭକ୍ତପ୍ରବର ଶ୍ରୀଜୟଦେବ ଶୁକ୍ଳାମ୍ବରଧାରିଣୀ, ମକରବାହିନୀ, ପଦ୍ମହସ୍ତା ଗଙ୍ଗାଦେବୀଙ୍କର ଶ୍ରୀଜୟଦେବଙ୍କ ବାମ୍ଫିରେ ଆବିର୍ଭାବ ସମ୍ପର୍କରେ ଏକ ଅଦ୍ଭୁତ ସ୍ୱପ୍ନ ଦେଖିଥିଲେ । ତତ୍‌ପରଦିନ ରାଜା, ମନ୍ତ୍ରୀ ଓ ଗ୍ରାମର ବୃଦ୍ଧମାନେ ଶ୍ରୀଜୟଦେବଙ୍କୁ ମଧ ତାଙ୍କ ପ୍ରତି ଶ୍ରୀରୂପିଣୀ ଗଙ୍ଗାଦେବୀଙ୍କ ସ୍ୱପ୍ନାଦେଶ ବିଷୟ ପ୍ରକାଶ କରିଥିଲେ । ତହୁଁ ଶ୍ରୀଜୟଦେବ ଓ ପଦ୍ମାବତୀ ପୁରଃସର ସକଳଜନ ଉକ୍ତ ବାମ୍ଫି ନିକଟରେ ସ୍ନାନ ପାଇଁ ଉପଗତ ହେଲେ । ମହାତ୍ମା ଜୟଦେବ ଭକ୍ତିପୂର୍ଣ୍ଣ ଚିତ୍ତରେ ମନ୍ତ୍ର ପାଠକରି ସ୍ନାନାରମ୍ଭ କରିବା ମାତ୍ରେ ଜଗତ୍‌ମାନ୍ୟା, ଜଗନ୍ମାତା, ଜଗତ୍ ଉଦ୍ଧାରକାରିଣୀ ଗଙ୍ଗାଦେବୀଙ୍କର ସେଠାରେ ଆବିର୍ଭାବ ଘଟିଥିଲା । ଏହା ଫଳରେ ଉକ୍ତ ପୀଠର ଜଳରାଶି ତରଙ୍ଗାୟିତ ହୋଇ ଦୁଗ୍ଧ, କୁନ୍ଦ, ଇନ୍ଦୁଙ୍କ ପରି ନିର୍ମଳ ଓ ଶୁଭ୍ରବର୍ଣ୍ଣ ଧାରଣ କଲା । ବହୁ ବିକଚକମଳ ଦ୍ୱାରା ଏହାର ଶୋଭା ବର୍ଦ୍ଧିତ ହେଲା । ଗଙ୍ଗାତୀର ପରି ଏହାର ଚତୁର୍ଦ୍ଦିଗ ସିକତାଚ୍ଛାଦିତ ହୋଇଗଲା । ସେହିଦିନୁ ଏହା ଏକ ସର୍ବାଭୀଷ୍ଟ ପ୍ରଦାୟକ ମହାତୀର୍ଥ ରୂପେ ପରିଗଣିତ ହେଉଅଛି । ଏହି ଅତ୍ୟାଶ୍ଚର୍ଯ୍ୟ ଘଟଣା ବର୍ଣ୍ଣନା ପରେ 'ଭକ୍ତମାଳା' ଗ୍ରନ୍ଥକାର ଶ୍ରୀ ଚନ୍ଦ୍ରଦତ୍ତ ଭକ୍ତାଗ୍ରଣୀ ଶ୍ରୀଜୟଦେବଙ୍କ ଜୀବନ ଚରିତ ବର୍ଣ୍ଣନା ସମାପ୍ତ କରିଛନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଖୋର୍ଦ୍ଧା ଜିଲ୍ଲା ବାଲିଅନ୍ତା ବ୍ଲକର ପ୍ରାଚୀନଦୀ କୂଳରେ ଥିବା ଜୟଦେବଙ୍କ ଜନ୍ମସ୍ଥାନଠାରୁ ପ୍ରାଚୀ ନଦୀର ବନମାଳୀପୁରସ୍ଥ ତ୍ରିବେଣୀ ସଂଗମ ଘାଟ ମାତ୍ର ଦୁଇ ମାଇଲ ବାଟ । ପ୍ରାଚୀକୁ ଉତ୍କଳରେ ଗଙ୍ଗାନଦୀ କୁହାଯାଉଥିଲା ଏବଂ ଏହାର ଉଲ୍ଲେଖ ଅନେକ ପୁରାଣରେ ଅଛି । ଏବେ ମଧ ଏଠାରେ ଥିବା ତ୍ରିବେଣୀ ଘାଟ ନାମକ ଏକ ଅତି ପବିତ୍ର ସ୍ଥଳ ଅଛି ଯେଉଁଠାରେ ଏକ ମେଳା ଅନୁଷ୍ଠିତ ହୁଏ ।

ସୌଜନ୍ୟ : ଐତିହାସିକ ସ୍ୱର୍ଗତଃ କେଦାରନାଥ ମହାପାତ୍ର

---

# ଶ୍ରୀ ଜୟଦେବ ପୂଜିତ ମାଧବ ମୂର୍ତ୍ତି

ଡ. ତ୍ରିନାଥ ପଟ୍ଟନାୟକ

**ମା**ଧବ ବିଗ୍ରହର ଉପାସନା ପରମ୍ପରା ଓଡ଼ିଶାର ସର୍ବତ୍ର ବହୁ କାଳରୁ ପ୍ରଚଳିତ ହୋଇ ଆସୁଅଛି । ନୀଳମାଧବ, ଦୁର୍ଗାମାଧବ, ଲକ୍ଷ୍ମୀମାଧବ ଆରାଧନା ଉତ୍କଳର କୋଣେ କୋଣେ ଦେଖିବାକୁ ମିଳେ । ନୀଳମାଧବ ଶ୍ରୀଜଗନ୍ନାଥଙ୍କର ପୂର୍ବ ସ୍ୱରୂପ । ଏଣୁ ଉତ୍କଳୀୟ କବି ଜୟଦେବ ଶ୍ରୀଜଗନ୍ନାଥଙ୍କୁ ମାଧବ ରୂପେ ସ୍ୱୀକାର କରିଛନ୍ତି । ଉତ୍କଳର ପ୍ରାଚୀନଦୀ ବହୁ ପ୍ରାଚୀନ । ପ୍ରାଚୀ ଉପତ୍ୟକାରେ ମାଧବ ଉପାସନା ପରମ୍ପରା କ୍ରମେ ପ୍ରଚଳିତ ହୋଇ ଆସୁଅଛି । ନିଆଳୀ ମାଧବ, ମୁଦଗଲ୍ ମାଧବ, ଲଳିତ ମାଧବ, ଗଙ୍ଗା ମାଧବ ଓ ଗୁପ୍ତ ମାଧବ ପ୍ରଭୃତି ଅନେକ ମାଧବ ବିଗ୍ରହ ବିଭିନ୍ନ ସ୍ଥାନରେ ପ୍ରତିଷ୍ଠିତ ହୋଇଛନ୍ତି । ନିଆଳୀ ଶୋଭନେଶ୍ୱର ମନ୍ଦିର ପ୍ରାଙ୍ଗଣରେ ଆଠଗୋଟି ମାଧବ ବିଗ୍ରହ ସଂଗୃହିତ ହୋଇ ରଖାଯାଇଛି । ଏଣୁ ମାଧବ ଉପାସନାର ପ୍ରଭାବ ଜୟଦେବଙ୍କ ଉପରେ ପଡ଼ିବା ସ୍ୱାଭାବିକ କଥା ।

ଜୟଦେବ ପ୍ରାଚୀକୂଳର କେନ୍ଦୁଲି ଗ୍ରାମରେ ଜନ୍ମଲାଭ କରିଥିଲେ । ପିଲାବେଳୁ ପିତାମାତାଙ୍କୁ ହରାଇ ଏକପ୍ରକାର ମୁରବୀହୀନ ହୋଇଗଲେ । ବନ୍ଧୁ ପରାଶରଙ୍କ ସହିତ ପ୍ରାଚୀକୂଳରେ ଇତଃସ୍ତତ ବୁଲିବାକୁ ଲାଗିଲେ । ଶିକ୍ଷା ଗ୍ରହଣରେ ସେ ଅବହେଳା କରୁନଥିଲେ କି ରାଧାମାଧବଙ୍କୁ ସ୍ମରଣ କରିବାରେ ତ୍ରୁଟି କରୁନଥିଲେ । ମାଧବଙ୍କୁ ସ୍ମରଣ କରୁ କରୁ ସେ ନିଜର ସ୍ଥିତି ଭୁଲି ଯାଉଥିଲେ ଓ ତନ୍ମୟ ହୋଇ ସଂଜ୍ଞାହୀନ ହୋଇ ଉଠୁଥିଲେ । ପ୍ରାଚୀର ବୃକ୍ଷଲତା ପୁଷ୍ପ ଶୋଭିତ ଦୁଇ କୂଳ ତାଙ୍କୁ ବୃନ୍ଦାବନ ଭଳି ପ୍ରତୀୟମାନ ହେଉଥିଲା । ତାଳ ତମାଳ, ମାଧବୀ କଦମ୍ବ ବନରେ ଭ୍ରମରମାନଙ୍କର କଳକୂଜନ କୋଇଲି କୁହୁ ତାନ ତାଙ୍କୁ ଏକ ସ୍ୱପ୍ନିଳ ଅବସ୍ଥାରେ ରଖୁଥିଲା ଓ କବିତା ଲେଖିବା ପାଇଁ ପ୍ରେରଣା ଦେଉଥିଲା । ପରବର୍ତ୍ତୀ ସମୟରେ ଏହି ପରିବେଶ 'ଗୀତଗୋବିନ୍ଦ କାବ୍ୟ'ର କେତେଗୋଟି ପଦ୍ୟ ସଂଯୋଜନାରେ ସହାୟତା ଦେଇଥିଲା ।

'ଉନ୍ମୀଳନ ମଧୁଗନ୍ଧ ଲୁବ୍‌ଧ ମଧୁପବ୍ୟାଧୂତ ଚୂତାଂକୁର
କ୍ରୀଡ଼ତ୍ କୋକିଳ କାକଳୀ କଳ କର୍ଣୈ ରୁଦ୍‌ଗୀର୍ଣ୍ଣ କର୍ଣ୍ଣଜ୍ୱରାଃ ।
ନୀୟନ୍ତେ ପଥିକୈଃ କଥଂ କଥମପି ଧ୍ୟାନାବଧାନକ୍ଷଣ
ପ୍ରାପ୍ତା ପ୍ରାଣସମା ସମାଗମ ରସୋଲ୍ଲାସୈରମୀ ବାସରାଃ ।।'



(ଉଦାଗର ମଧୁଗନ୍ଧ ଲୋଭେ ଭ୍ରମର ।
ମଉଉରେ ଧ୍ୱନି କରେ ଚୂତ ଶିଖର ।
କ୍ରୀଡ଼ନ୍ତି କୋକିଳ କୋଳାହଳ ଶବଦ ।
ଶୁଣନ୍ତେ ବିରହୀ କର୍ଣ୍ଣେ ଜ୍ୱର ବିଷାଦ ।
ପଥିକ ବିଦେଶୀ ଜନ ଅତିବିଚ୍ଛିନ୍ନ ।
ନିଜ ରାମା ପ୍ରିୟବତୀ ସୁମରି ମନ ।।)

ଜୟଦେବଙ୍କ ମନରେ ଏକମାତ୍ର ଚିନ୍ତା ରାସ ରସିକ ମଧୁମୟ ପୁରୁଷ ଶ୍ରୀମାଧବଙ୍କୁ ଥରେ କିପରି ଚର୍ମଚକ୍ଷୁରେ ଦର୍ଶନ କରନ୍ତେ । ତାଙ୍କରିଠାରୁ ପ୍ରେରଣା ଲାଭ କରନ୍ତେ । ପ୍ରାଚୀକୂଳରେ ଏକ ବିରାଟ ବଟବୃକ୍ଷ ତା'ରି ମୂଳେ ଜୟଦେବ ବିଶ୍ରାମ ନେଇଥା'ନ୍ତି । କ୍ରମେ କ୍ରମେ ଆଖିପତା ବନ୍ଦ ହୋଇଗଲା । ସେ ସ୍ୱପ୍ନରେ ନିର୍ଦ୍ଦେଶ ପାଇଲେ - ଜୟଦେବ ତୁମେ ଯେଉଁ ବଟବୃକ୍ଷ ମୂଳେ ଶୋଇଛ ତା'ର କିଛି ଦୂରରେ ତ୍ରିବେଣୀ ଘାଟ । ଘାଟ ଶେଷ ପାହାଚରେ ଅର୍ଥାତ୍ ଅଣ୍ଟାଏ ଜଳରେ ମୋର ବିଗ୍ରହ ତୁମକୁ ଅପେକ୍ଷା କରିଛି, ତୁମେ ତାହା ନେଇ ଆସ ଓ ଏହି ବଟମୂଳରେ ସ୍ଥାପନା କରି ଆରାଧନା କର । ତୁମର ମନୋବାଞ୍ଛା ପୂରଣ ହେବ ।

ଜୟଦେବ ବନ୍ଧୁ ପରାଶରଙ୍କୁ ସାଥୀରେ ନେଇ ତ୍ରିବେଣୀ ଘାଟରେ ପହଁଚିଲେ । ସତକୁ ସତ ତ୍ରିବେଣୀ ଧାରରୁ କଳାମୁଗୁନି ପଥର ନିର୍ମିତ ସୁନ୍ଦର ମାଧବ ମୂର୍ତ୍ତି ପ୍ରାପ୍ତ କଲେ । ଜୟଦେବ ଶ୍ରଦ୍ଧାର ସହିତ ସେହି ମାଧବ ମୂର୍ତ୍ତିକୁ ଆଣି ବଟବୃକ୍ଷ ମୂଳେ ସ୍ଥାପନା କରି ପୂଜା ଆରାଧନା କରିବାକୁ ଲାଗିଲେ । ସେହି ସ୍ଥାନର ନାମ ଅର୍ଦ୍ଧେଶ୍ୱରପୁର । ବର୍ତ୍ତମାନର ନାମ ଅଡଶପୁର । ଏବେ ସେହି ପ୍ରାଚୀନ ବଟବୃକ୍ଷ ନାହିଁ । ସେହି ସ୍ଥାନରେ ଏକ ମନ୍ଦିର ନିର୍ମାଣ ହୋଇଛି । ମନ୍ଦିର ଭିତରେ ଜୟଦେବଙ୍କ ଦ୍ୱାରା ସ୍ଥାପିତ ସେହି ପ୍ରାଚୀନ ମୂର୍ତ୍ତି ଏବେ ବି ପୂଜା କରାଯାଉଛି । ଲୋକଙ୍କ ମୁଖରେ ସେହି ମନ୍ଦିର ମାଧବାନନ୍ଦ ମଠ ନାମରେ ପରିଚିତ । ଏଠାରେ ବିରାଜିତ ମାଧବ ମୂର୍ତ୍ତି ଓ ଗରୁଡ଼ ମୂର୍ତ୍ତି ଦେଖିବା ଯୋଗ୍ୟ । ସ୍ୱତଃ ମନରେ ଭକ୍ତିଭାବ ଉଦ୍ରେକ କରିଥାଏ । ମନ୍ଦିରର ଜଗମୋହନରେ ଗୀତଗୋବିନ୍ଦ ରଚୟିତା ଶ୍ରୀଜୟଦେବଙ୍କର ପ୍ରତିମୂର୍ତ୍ତି ସ୍ଥାପନ କରାଯାଇଛି । କାନ୍ଥରେ ଜୟଦେବ ବର୍ଣ୍ଣିତ ଦଶଅବତାର ମୂର୍ତ୍ତି ଶୋଭା ପାଉଛି । ପ୍ରତିଦିନ ଏବେ ସୁଦ୍ଧା ଗୀତଗୋବିନ୍ଦ ଉକ୍ତ ମଠରେ ଗାନ କରାଯାଏ ।

ଶ୍ରୀଜୟଦେବ ଗୀତଗୋବିନ୍ଦ ମହାକାବ୍ୟର ମଙ୍ଗଳାଚରଣରେ ମାଧବଙ୍କୁ ସ୍ମରଣ କରି ଲେଖିଛନ୍ତି - 'ରାଧା ମାଧବୟୋର୍ଜୟନ୍ତି ଯମୁନା କୂଳେ ରହଃ - କେଳୟଃ ।' ଜୟଦେବ ତାଙ୍କ କାବ୍ୟର ବହୁ ସ୍ଥାନରେ ମାଧବ ଶବ୍ଦ ପ୍ରୟୋଗ କରିଛନ୍ତି -

ମଞ୍ଜୁ ତରକୁଞ୍ଜତଳ କେଳି ସଦନେ
ବିଳସ ରତି ରଭସ ହସିତ ବଦନେ ।
ପ୍ରବିଶ ରାଧେ ମାଧବ ସମୀପମିହ ॥ (୧୪।୧୧. ଗୀ.ଗୋ)

(ସୁନ୍ଦର ନିକୁଞ୍ଜ ଲତା କ୍ରୀଡ଼ାର ମନ୍ଦିର, ପ୍ରବେଶ ହୁଅ ତୁ ମାଧବର ସନ୍ନିଧିର)

ଜୟଦେବ ପ୍ରତ୍ୟହ ପ୍ରାଚୀ ନଈର ଆରପାରି କେନ୍ଦୁଲି ଗାଁରୁ ଅଡଶପୁର ଆସି ତାଙ୍କର ଆରାଧ୍ୟ ମାଧବଙ୍କର ପୂଜାର୍ଚ୍ଚନା କରୁଥିଲେ । ଜୟଦେବ ଶ୍ରୀକ୍ଷେତ୍ର ଚାଲିଯିବା ପରେ ଏ କ୍ଷେତ୍ର ଅବହେଳିତ ହୋଇ ଉଠିଲା । କ୍ରମେ ଜୟଦେବ ପ୍ରତିଷ୍ଠିତ ମନ୍ଦିର ଲୁପ୍ତ ହୋଇଗଲା । ୧୮୮୪ ମସିହାରେ ମଙ୍ଗୁଳି ଦାସ ନାମକ ଜଣେ ସାଧୁ ଏହି ସ୍ଥାନରେ ନୂତନ ମଠ ଓ ମନ୍ଦିର ସ୍ଥାପନ କରିଥିଲେ । ସେଥିପାଇଁ ମଙ୍ଗୁଳି ଦାସ ମଠ ନାମରେ ଏ ପୀଠ ପରିଚିତ ହୋଇଛି ।

ମଠର ପରିବେଶ ବେଶ୍ ଶାନ୍ତ ଓ ମନମୁଗ୍ଧକର । ସବୁଠାରୁ ବିଚିତ୍ର ପରମ୍ପରା ଏଠି ଦେଖାଯାଏ । ଦୁଧିଆଳୀ ଗାଈଙ୍କଠାରୁ କ୍ଷୀର ଦୁହାଁଯାଏ ନାହିଁ । ବାଛୁରୀ ମନଇଚ୍ଛା କ୍ଷୀର ପାନ କରନ୍ତି । ଏବେ ବି ଗୋଟିଏ ଦୁଇଟି ଗାଈ ସେଇ ନିୟମରେ ଅଛନ୍ତି । ବାହାରୁ କ୍ଷୀର ଆସି ଠାକୁରଙ୍କ ନୀତି ହୁଏ । ଯେତେବେଳେ ମଠରେ ଗୋଠ ଗୋଠ ଗାଈ ଥିଲେ ସେତେବେଳେ ମଧ୍ୟ ନିୟମ ଭଙ୍ଗ ହୋଇନି । ଏବେ ପ୍ରତିଦିନ ଗାଈ ଓ ଷଣ୍ଢକୁ ପାଞ୍ଚ କେଜି ଚୋକଡ଼ ଦିଆଯାଏ । ମାଙ୍କଡ଼ମାନଙ୍କ ପାଇଁ କିଛି ଫଳମୂଳ କିଣାଯାଇ ପ୍ରତି ଦିନ ଦିଆଯାଏ । ସେଓ, କଦଳୀ ଓ ପିଜୁଳି ପ୍ରଭୃତି ଫଳ ଖଞ୍ଜା ଯାଇଛି । ମାଙ୍କଡ଼ମାନେ ମଧ୍ୟ ଠିକ୍ ସମୟରେ ଆସି ଫଳ ଖାଇଥାନ୍ତି । କେବଳ ସେତିକି ନୁହେଁ କାଉ ପ୍ରଭୃତି ପକ୍ଷୀମାନଙ୍କୁ ପ୍ରତିଦିନ ଦୁଇ କେଜି ଚୂଡ଼ା ବଣ୍ଟାଯାଏ । ଯେଉଁଠି ମଠମାନଙ୍କରେ ଅତିଥି ଅଭ୍ୟାଗତମାନଙ୍କ ପାଇଁ ପ୍ରସାଦ ଗଣ୍ଡିଏର ବ୍ୟବସ୍ଥା ଆଜିକାଲି କାଠିକର ପାଠ ହୋଇଗଲାଣି, ସେହି ପରିସ୍ଥିତିରେ ଏଭଳି ପ୍ରାଣୀ ପ୍ରତି ଦୟା ଓ ପଶୁପକ୍ଷୀ ପ୍ରୀତି କେଉଁ ମଠରେ ଅଛି ? କେବଳ ଜୟଦେବଙ୍କର ମଧୁର ମନନଶୀଳ ଚିନ୍ତାଚେତନାର ସୂକ୍ଷ୍ମ ଭାବଧାରା ଏଠି କାର୍ଯ୍ୟ କରୁଛି । ପରମ୍ପରା ହିଁ ପରମ୍ପରାର ସୂତ୍ରକୁ ଅଛିଣ୍ଡା ରଖିଛି ।

ଆମେ ଜୟଦେବଙ୍କୁ କେବଳ ବୈଷ୍ଣବ କବି କିମ୍ବା ଭକ୍ତକବି କହିଲେ ଠିକ୍ ହେବନି । ସେ ଜଣେ ରସିକ କବି । 'ପ୍ରାଚୀ'ର ପ୍ରାକୃତିକ ପରିବେଶ ତାଙ୍କୁ ଅଚିନ୍ତନୀୟ ରସ ସଂଭାର ଦାନ କରିଥିଲା, ଯାହାକି ରାଧାକୃଷ୍ଣଙ୍କର ଅନାବିଳ ପ୍ରେମଧାରାରେ ଉଭାସିତ କରିଛି । ଜୟଦେବ ପ୍ରୀତି ପ୍ରଣୟକୁ ଆଧାର କରି କାବ୍ୟ ଲେଖିଥିବା ଯୋଗୁଁ ତଥା ତାହା କେବଳ ସଂସ୍କୃତରେ ରଚନା ହୋଇଥିବା ଯୋଗୁଁ ଆଜି ସେ ବିଶ୍ୱ ବିଦିତ । ସେ ଜନ୍ମସ୍ଥାନର ନାମ ପ୍ରକାଶ କରିବା ପକ୍ଷପାତୀ ନଥିଲେ । ଅଖଣ୍ଡ ଭାରତବର୍ଷକୁ ସେ ନିଜର ଜନ୍ମସ୍ଥାନ ଓ ଜନନୀ ବୋଲି ବିଚାର କରୁଥିଲେ । ଭାରତର ପ୍ରତ୍ୟେକ ଭାଷା ଓ ପ୍ରତ୍ୟେକ ଅଞ୍ଚଳ ତାଙ୍କର ନିଜର । ସେଥିପାଇଁ ଗୀତଗୋବିନ୍ଦର ବହୁ ଟୀକା ଓ ଭାଷ୍ୟ ବିଭିନ୍ନ ଭାଷାରେ ଦେଖିବାକୁ ମିଳୁଛି । ସମସ୍ତେ ଜୟଦେବଙ୍କୁ ନିଜର ପ୍ରିୟ କବି ବୋଲି ଗ୍ରହଣ କରୁଛନ୍ତି ।

ସଂପାଦକ, ପୁରାଣ ପତ୍ରିକା
ନିଆଳୀ - ୭୫୪୦୦୪, କଟକ

■■■■

# ପବିତ୍ର ପ୍ରାଚୀ ଉପତ୍ୟକା ଓ ମାଧବ ଉପାସନାର ଅଗ୍ରସାରଥୀ ଶ୍ରୀ ଜୟଦେବ

ଡାକ୍ତର ଦୀନବନ୍ଧୁ ମହାରଣା

**ଉ**ତ୍କଳୀୟ ଧର୍ମ ଓ ମହାନ ସାଂସ୍କୃତିକ ଐତିହ୍ୟର ପୀଠସ୍ଥଳୀ ତଥା ଧର୍ମପ୍ରାଣ ଉତ୍କଳୀୟମାନଙ୍କର ପରମ ଆରାଧ୍ୟ ଦେବତା ନୀଳାଦ୍ରି କନ୍ଦରବାସୀ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ଭକ୍ତକବି ଶ୍ରୀ ଜୟଦେବଙ୍କର ଜନ୍ମସ୍ଥଳୀ ରୂପେ ପ୍ରାଚୀ ଉପତ୍ୟକା ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ବହନ କରେ । 'ଶ୍ରୀଗୀତଗୋବିନ୍ଦ' ମହା ଭକ୍ତିରସାତ୍ମକ କାବ୍ୟର ସ୍ରଷ୍ଟା ଭକ୍ତକବି ଶ୍ରୀ ଜୟଦେବ ଗୋସ୍ୱାମୀଙ୍କର ଜନ୍ମ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରଠାରୁ ୨୦-୨୨ କି.ମି. ଦୂରବର୍ତ୍ତୀ ବାଲିପାଟଣା ନିକଟସ୍ଥ ପ୍ରାଚୀ ଓ କୁଶଭଦ୍ରା ନଦୀ ତୀରସ୍ଥ କେନ୍ଦୁବିଲ୍ୱ ବା କେନ୍ଦୁଲି ଗ୍ରାମରେ । ଏକଦା ମାଧବ ଉପାସନାର ପ୍ରମୁଖ ପୀଠସ୍ଥଳୀ ରୂପେ ପ୍ରାଚୀ ଉପତ୍ୟକା ପ୍ରସିଦ୍ଧି ଲାଭ କରିଥିଲା । ପ୍ରାଚୀ ଉପତ୍ୟକାରେ ନିଆଳି ଓ ମାଧବ ଗ୍ରାମର ମଧ୍ୟବର୍ତ୍ତୀ ଅଞ୍ଚଳକୁ ମାଧବ ଉପାସନାର କେନ୍ଦ୍ରସ୍ଥଳୀ ଭାବରେ ଗ୍ରହଣ କରାଯାଇଥାଏ । ପ୍ରାଚୀ ଉପତ୍ୟକାର ବିଭିନ୍ନ ସ୍ଥାନରେ ମୂର୍ତ୍ତିତତ୍ତ୍ୱ ଅନୁଯାୟୀ ମାଧବ ରୂପେ ସ୍ୱୀକୃତ ବହୁ ମାଧବ ମୂର୍ତ୍ତିଙ୍କର ପୂଜାର ପ୍ରଚଳନ ଏକଥାକୁ ପ୍ରମାଣିତ କରିଥାଏ ।

ଖ୍ରୀ:ପୂ: ୬ଷ୍ଠ ଶତାବ୍ଦୀରେ ବାସୁଦେବ, ବିଷ୍ଣୁଙ୍କର ଏକ ରୂପ ଭାବରେ ପ୍ରତିଷ୍ଠା ଲାଭ କରିଥିଲେ । ଏହାର ପ୍ରମାଣ ୬ଷ୍ଠ ଶତାବ୍ଦୀରେ ରଚିତ 'ଛାନ୍ଦୋଗ୍ୟ ଉପନିଷଦ'ରେ ଭାଗବତ ସମ୍ପ୍ରଦାୟର ଏକ ଶାଖା ଭାବରେ ବାସୁଦେବ ସମ୍ପ୍ରଦାୟ କଥା ଉଲ୍ଲେଖ ଅଛି । ପ୍ରଭାତ ମୁଖାର୍ଜୀଙ୍କର 'The History of Mediaval Vaishnavism in Orissa' ପୁସ୍ତକରେ ପ୍ରଦତ୍ତ ମେଘାସ୍ଥିନିସ୍‌ଙ୍କ 'ଇଣ୍ଡିକା' ବିବରଣୀ ଅନୁଯାୟୀ ଖ୍ରୀ:ପୂ: ୪ର୍ଥ ଶତାବ୍ଦୀରେ କୃଷ୍ଣପୁର (Kleisobora) ଓ ମଥୁରା (Methora)ରେ ଯେଉଁ କୃଷ୍ଣ (Heracles) ପୂଜା ପାଉଥିଲେ ସେ ହେଉଛନ୍ତି ବାସୁଦେବ କୃଷ୍ଣ । ଖ୍ରୀ:ପୂ: ୬ଷ୍ଠ ଶତାବ୍ଦୀ ପରଠାରୁ ଭାରତର ଉତ୍ତର ପଶ୍ଚିମ ଦିଗରେ ବିତସ୍ତା ନଦୀର କୂଳବର୍ତ୍ତୀ ଅଂଚଳରେ ବାସୁଦେବ ଉପାସନାର ବହୁଳ ପ୍ରଚଳନ ଥିଲା । ୧୯୭୫ ମସିହାରେ ଭୁବନେଶ୍ୱରରୁ ପ୍ରକାଶିତ Prachi Valley (Achaeological Survey Report) ଅନୁଯାୟୀ ମଧ୍ୟ ଭାରତରେ ଦକ୍ଷିଣ-ପୂର୍ବ ଦିଗରେ ପ୍ରାଚୀନ ନଦୀର କୂଳେ କୂଳେ ବାସୁଦେବ ପୂଜାର ପ୍ରଚଳନ ବହୁଳ ଭାବରେ ଥିଲା ।



ତେଣୁ ବହୁ ପ୍ରାଚୀନ କାଳରୁ ପ୍ରାୟ ଦୁଇ ହଜାର ବର୍ଷ ପୂର୍ବରୁ ବାସୁଦେବ କୃଷ୍ଣ ପୂଜିତ ହୋଇଆସିଥିବାର ପ୍ରମାଣ ଭାରତୀୟ ପରମ୍ପରାରେ ଅଛି । ପରବର୍ତ୍ତୀ ସମୟରେ ବାସୁଦେବ ହିଁ ମାଧବରେ ରୂପାନ୍ତରିତ ହୋଇଛନ୍ତି ।

କେବଳ ପ୍ରାଚୀ ଉପତ୍ୟକା ନୁହେଁ, ଗଙ୍ଗବଂଶର ଶାସକମାନେ ଓଡ଼ିଶାର ବିଭିନ୍ନ ସ୍ଥାନରେ ଅତି ରମଣୀୟ ସୁନ୍ଦର ମାଧବ ମୂର୍ତ୍ତିମାନ ନିର୍ମାଣ କରାଇଥିବାର ପ୍ରମାଣ ମିଳେ । ପ୍ରାଚୀ ଉପତ୍ୟକାରେ ନିଆଳି ଓ ମାଧବ ଗ୍ରାମର ମଧ୍ୟବର୍ତ୍ତୀ ଅଞ୍ଚଳକୁ ମାଧବ ଉପାସନାର କେନ୍ଦ୍ରସ୍ଥଳୀ

ଭାବରେ ଗ୍ରହଣ କରାଯାଇଥାଏ । ନିଆଳିର ବ୍ରହ୍ମା ମନ୍ଦିର ଜଗମୋହନ ମଧ୍ୟରେ ଖଚିତ ଦୁଇଟି ବିଷ୍ଣୁ ମୂର୍ତ୍ତି, ଅମରେଶ୍ୱରସ୍ଥ ଅମରେଶ୍ୱର ମନ୍ଦିରର ଜଗମୋହନ ମଧ୍ୟରେ ସ୍ଥାପିତ ଦୁଇଟି ବିଷ୍ଣୁ ମୂର୍ତ୍ତି, ରାମେଶ୍ୱର ମନ୍ଦିରର ନାଟ ମନ୍ଦିର ମଧରେ ସ୍ଥାପିତ ବିଷ୍ଣୁ ମନ୍ଦିର, ଲତାହରଣ ଗ୍ରାମେଶ୍ୱର ମନ୍ଦିରର ଜଗମୋହନ ମଧ୍ୟସ୍ଥ ବିଷ୍ଣୁ ମୂର୍ତ୍ତି ନିବାରଣସ୍ଥ ଗ୍ରାମେଶ୍ୱର ମନ୍ଦିର ବେଢ଼ାରେ ଥିବା ବିଷ୍ଣୁ ମୂର୍ତ୍ତି, ସୋମେଶ୍ୱର ଗ୍ରାମର ସୋମେଶ୍ୱର ମନ୍ଦିରର ଜଗମୋହନ ମଧରେ ଥିବା ବିଷ୍ଣୁ ମୂର୍ତ୍ତି, ବିଶ୍ୱନାଥ ମନ୍ଦିରର ଜଗମୋହନ ମଧରେ ଥିବା ବିଷ୍ଣୁ ମୂର୍ତ୍ତି, କେନ୍ଦୁଲିସ୍ଥ ବିଷ୍ଣୁ ମୂର୍ତ୍ତି, ରଘୁନାଥପୁରରେ ମାଧବ ଭାବରେ ପୂଜିତ ବିଷ୍ଣୁ ମୂର୍ତ୍ତି ଇତ୍ୟାଦି ସମସ୍ତ ସମୟକ୍ରମେ ମାଧବ ଉପାସନାର ସାକ୍ଷ୍ୟ ବହନ କରି ଆସିଛନ୍ତି ।

ନିଆଳି ଗ୍ରାମର ଶୋଭନେଶ୍ୱର ମନ୍ଦିର ବେଢ଼ାରେ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ପକ୍ଷରୁ ସଂରକ୍ଷିତ ଆଠଗୋଟି ମାଧବ ମୂର୍ତ୍ତି ହେଉଛନ୍ତି ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ଏବଂ ଗୋଟିଏ ମୂର୍ତ୍ତିର ଦୁଇ ପାର୍ଶ୍ୱରେ ଉପାସିକା ଭାବରେ କେତୋଟି ନାରୀ ମୂର୍ତ୍ତି ଥିବାରୁ ସେ ଗୋଟିକୁ ଗୋପୀ ଉପାସିତ ମାଧବ ମୂର୍ତ୍ତି ବୋଲି ଗ୍ରହଣ କରାଯାଉଛି । ସେହିପରି ବିଷ୍ଣୁପୁରର ସୋମେଶ୍ୱର ଦେବଙ୍କ ମନ୍ଦିର ଗର୍ଭ ଗୃହରେ ଅଷ୍ଟଦଳ ପଦ୍ମ ଉପରେ ଗୋପୀକୃଷ୍ଣ ଓ ମାଧବ ମୂର୍ତ୍ତି ପ୍ରଭୃତି ବୈଷ୍ଣବୀ ସଂସ୍କୃତି ସହିତ ଏକାତ୍ମ ବିଷ୍ଣୁ-କୃଷ୍ଣ-ମାଧବଙ୍କର ସମନ୍ୱିତ କଳ୍ପନାକୁ ପରିପ୍ରକାଶ କରେ ।

ପ୍ରାଚୀନଦୀ ତଟବର୍ତ୍ତୀ କେନ୍ଦୁବିଲ୍ୱ ଗ୍ରାମର ପବିତ୍ର ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିବା ଜୟଦେବ ନିଜ ଗ୍ରାମର ଚତୁଃପାର୍ଶ୍ୱ ପରିବେଶ ମଧରେ ମାଧବ ମୂର୍ତ୍ତି ଦର୍ଶନ ଓ ମାଧବ ଉପାସନା ପ୍ରତି ନିଶ୍ଚୟ ଆକୃଷ୍ଟ ହୋଇଥିଲେ । ତତ୍କାଳୀନ ରାଜନୈତିକ ଓ ଧାର୍ମିକ ଶୃଙ୍ଖଳା ପ୍ରତି ଲକ୍ଷ୍ୟ ରଖି ରାଧାମାଧବଙ୍କର ଉପାସନା ନିମିତ୍ତ ଚିନ୍ତାକରି ତାଙ୍କ ପ୍ରତି ପ୍ରେମଭକ୍ତିର ଅର୍ଘ୍ୟ ରୂପେ ସେ 'ଗୀତଗୋବିନ୍ଦ' ରଚନା କଲେ । ଏହି ସମୟରେ ଦାକ୍ଷିଣାତ୍ୟରେ ପ୍ରଚଳିତ ଆଲଵ୍ର ବୈଷ୍ଣବୀ ଧାରା ପୁରୀ ଧାମ ମଧକୁ ପ୍ରବେଶ କରିବା ସହିତ ରାମାନୁଜ, ନିମ୍ବାର୍କ, ବିଷ୍ଣୁସ୍ୱାମୀ ପ୍ରଭୃତି ପରମ ବୈଷ୍ଣବ ପଣ୍ଡିତଗଣ ବୈଷ୍ଣବ ମତବାଦକୁ ପ୍ରଚାରମୁଖୀ କରିଥିଲେ । ଏଭଳି ଏକ ଅନୁକୂଳ ପରିସ୍ଥିତିରେ ଜୟଦେବ ରଚନା କଲେ ଗୀତଗୋବିନ୍ଦ, ଯେଉଁଥିରେ ଭକ୍ତ ରାଧା ଭାବରେ ଭଗବାନ ଶ୍ରୀକୃଷ୍ଣଙ୍କ ସହ ମିଳିତ ହୋଇ ଅପାର ଆନନ୍ଦ ଲାଭ କରିବା ସହିତ ପାପ ପଙ୍କିଳ ଅନ୍ଧକାରମୟ ଜଗତରୁ ମୁକ୍ତିଲାଭ କରିବାକୁ ପ୍ରେମଭକ୍ତି ସଙ୍ଗୀତ ଗାନରେ ବିହ୍ୱଳ ହୋଇପଡ଼ିଲେ ।

କେତେକ ସମାଲୋଚକ ମତପ୍ରକାଶ କରିଥାନ୍ତି ଯେ ଜୟଦେବ ବଙ୍ଗଳାର ରାଜା ଲକ୍ଷ୍ମଣ ସେନଙ୍କର ସଭାକବି ଥିଲେ ଓ ସେ ବୀରଭୂମି ଜିଲ୍ଲାର ଅଜୟ ନଦୀକୂଳସ୍ଥିତ କେନ୍ଦୁଲି ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ମାତ୍ର ବହୁ ବିଦ୍ୱାନ ସାହିତ୍ୟିକ, ସମାଲୋଚକ ଓ କବି ନାନାବିଧ ଐତିହାସିକ ଦୃଷ୍ଟିକୋଣରୁ ତାଙ୍କର ଜନ୍ମସ୍ଥାନ ପୂର୍ବବର୍ଣ୍ଣିତ ପ୍ରାଚୀ ନଦୀ ତୀରବର୍ତ୍ତୀ କେନ୍ଦୁଲି ଗ୍ରାମ ବୋଲି ମତ ପ୍ରକାଶ କରିଛନ୍ତି ।

ଜୟଦେବ ବଙ୍ଗର ରାଜା ଲକ୍ଷ୍ମଣ ସେନଙ୍କ ରାଜଦରବାରର ସଭାକବି ଥିବା କେତେକ ବଙ୍ଗୀୟ ସମାଲୋଚକ ମତପ୍ରଦାନ କରିଥିଲେ ହେଁ ସେପରି ବିଶେଷ ପ୍ରାମାଣିକ ତଥ୍ୟ ଉପଲବ୍ଧ ନୁହେଁ । ବରଂ ବଙ୍ଗଳାର ରାଜା ଲକ୍ଷ୍ମଣ ସେନ ନିଜର ସାମ୍ରାଜ୍ୟ ଓ ରାଜଧାନୀ ସମ୍ପୂର୍ଣ୍ଣ ହରାଇବା ପରେ କବି ଜୟଦେବ ତାଙ୍କୁ (ଲକ୍ଷ୍ମଣ ସେନଙ୍କୁ) ଉତ୍କଳର ରାଜଦରବାରରେ ଆଶ୍ରୟ ପ୍ରଦାନ କରିବା ତଥ୍ୟ ମହମ୍ମଦ ବକ୍ତିୟାର ଖିଲିଜଙ୍କ ବିରଚିତ 'ତବାକତ-ଇ-ନାସିର' ଗ୍ରନ୍ଥରୁ ମିଳେ ।

ତେବେ ସେ ଯାଉ ହେଉ କବି ଜୟଦେବଙ୍କ ଉତ୍କଳୀୟତା ଉପରେ ଆଦୌ ସନ୍ଦେହ କରାଯାଇପାରେନା । ଏ ବିଷୟରେ ଅନେକ ଐତିହାସିକ ଓ ପ୍ରାମାଣିକ ତଥ୍ୟ ଉପଲବ୍ଧ । ଖ୍ରୀ:ପୂ: ୬ଷ୍ଠ ଶତାବ୍ଦୀରୁ ବହୁକାଳ ପର୍ଯ୍ୟନ୍ତ ପ୍ରାଚୀ ଉପତ୍ୟକା ମାଧବ ଉପାସନାର ଏକ ଆଦର୍ଶ ପୀଠ ରୂପେ ପ୍ରସିଦ୍ଧିଲାଭ କରିଥିଲା । ବିଷ୍ଣୁ, ବାସୁଦେବ, ମାଧବ, ନୀଳମାଧବ, ଜଗନ୍ନାଥ କ୍ରମେ ଏକ ମୁଖ୍ୟ ଉପାସ୍ୟ ଦେବତାଙ୍କର ଭିନ୍ନ ଭିନ୍ନ ନାମ ଓ ରୂପ ବୋଲି ସମୟକ୍ରମେ ବୈଷ୍ଣବୀୟ ବିଦ୍ୱାନଗଣ ଜନମାନସରେ ପ୍ରଚାର କରିଥିଲେ ।

ଖ୍ରୀ:ପୂ: ପଞ୍ଚମ ଶତାବ୍ଦୀରେ ସମଗ୍ର ଉତ୍କଳ ଭୂଖଣ୍ଡରେ ବୈଷ୍ଣବୀୟ ଭକ୍ତିଧର୍ମର ଯେଉଁ ଆଧାତ୍ମିକ ଆନ୍ଦୋଳନ ଜାଗ୍ରତ ହୋଇଥିଲା ତହିଁରେ ମୁଖ୍ୟ ପୁରୋଧା ଥିଲେ ଭକ୍ତକବି ଶ୍ରୀଜୟଦେବ ଏବଂ ତାଙ୍କର କବିପ୍ରାଣରେ ମାଧବ ଭକ୍ତିରସର ଅମୃତକୁ ସଞ୍ଚାର କରିବା ଦିଗରେ ପ୍ରାଚୀ ଉପତ୍ୟକାର ଧାର୍ମିକ ଓ ସାଂସ୍କୃତିକ ପରିବେଶ ଥିଲା ଏକ ପ୍ରେରଣା ଦାୟୀ ଶକ୍ତି ।

ସେହି ମହାନ୍ ଓ ପବିତ୍ର ପୁଣ୍ୟ ନଦୀ ପ୍ରାଚୀ ନଦୀ ଓ ତାହାର ଉପତ୍ୟକାର ମହନୀୟତା ଏବେ ମଧ ଏହାର ଚତୁର୍ଦ୍ଦିଗ ବାତାୟନରେ ପ୍ରତିଧ୍ୱନିତ ଓ ସ୍ପନ୍ଦିତ ହୁଏ । କେବଳ ବିଭୁ ପ୍ରେମ ରସସିକ୍ତ ମନ ହିଁ ଏହି ମହନୀୟତାକୁ ଅନୁଭବ କରିପାରେ ।

ଓଡ଼ିଶା ଆୟୁର୍ବେଦ ସେବାସଦନ
ରୁମ୍ ନଂ-୧୧୧
ମ୍ୟୁନିସିପାଲିଟି ମାର୍କେଟ କମ୍ପ୍ଳେକ୍ସ
ଓ.ଏମ୍.ପି. ଛକ, କଟକ-୩

---

# ଶ୍ରମିକ ଦିବସ ଏକ ଐତିହାସିକ ଆନ୍ଦୋଳନ

କାଞ୍ଚି ନାରାୟଣ ମହାନ୍ତି

ଶ୍ରମ ବିନା ସମୃଦ୍ଧି ଅସମ୍ଭବ । ତେଣୁ ଯେଉଁ ଦେଶ ସମୟ ଓ ଶ୍ରମର ମର୍ଯ୍ୟାଦା ବୁଝେ ସେ ଦେଶ ସେତେ ସମୃଦ୍ଧ । ଶ୍ରମର ମୂଲ୍ୟ ମଧ୍ୟ ସମୟେ ସମୟେ କଳନା କରିବା ସାଧ୍ୟାତୀତ ହୋଇଥାଏ ।

ପରିଶ୍ରମୀ ପାଇଁ ଭାଗ୍ୟ ଦେବୀ ପ୍ରସନ୍ନ ହୁଅନ୍ତି । ମହାତ୍ମା ଗାନ୍ଧୀ କହିଛନ୍ତି - A nation may do without its millionaries and without its capitalist but a nation can never do without its labours. ଜାତୀୟ ଉନ୍ନତି ପାଇଁ ଅନ୍ୟ କାହାରି ଆବଶ୍ୟକ ଥାଉ ନ ଥାଉ କିନ୍ତୁ ଶ୍ରମିକମାନଙ୍କର ଆବଶ୍ୟକତା ବିନା କୌଣସି ଦେଶ ଆଗେଇ ପାରିବ ନାହିଁ ।

ରୋଟି, କପଡ଼ା ଓ ମକାନ ଏ ତିନି ଅନିବାର୍ଯ୍ୟ ଆବଶ୍ୟକତା ପାଇଁ ବ୍ୟକ୍ତିଟିଏ ନିଶ୍ଚୟ ଶ୍ରମ କରିବ କିମ୍ବା ଶ୍ରମିକଟିଏ ଆବଶ୍ୟକ କରିବ ।

ଶ୍ରମ ବଳରେ ଶାରୀରିକ ସୁସ୍ଥତା ସହ ଆର୍ଥିକ ସୁସ୍ଥତା ମଧ୍ୟ ମିଳେ । ସୁସ୍ଥ ଶରୀର, ସ୍ୱଚ୍ଛଳ ଅବସ୍ଥା, ମନକୁ ପ୍ରଫୁଲ୍ଲ ରଖେ । ତେଣୁ ପରିବାର ବ୍ୟକ୍ତି, ସମାଜ ଏବଂ ରାଷ୍ଟ୍ରରେ ଶାନ୍ତିର ସହାବସ୍ଥାନ ହୁଏ ।

ପୂର୍ବେ ଶ୍ରମିକ ତା'ର ନ୍ୟାଯ୍ୟ ପ୍ରାପ୍ୟ ପାଉ ନଥିଲା । ଅନ୍ୟର ସୁଖ ପାଇଁ ସେ କଠିନ ପରିଶ୍ରମ କରୁଥିଲା । ପଶୁଠାରୁ ହୀନ ପରିବେଶ, ଖାଦ୍ୟ, ପୋଷାକ ଏବଂ ବ୍ୟବହାର ଯୋଗୁଁ ସେ କେବଳ ଶୋଷିତ ହେଉଥିଲା । ଦରିଦ୍ର ଓ ଘୃଣ୍ୟ ଭାବେ ସମାଜର ନୀଚସ୍ତରର ମଣିଷ ବୋଲି ଗଣା ହେଉଥିଲା ।

ସମୟ ବଦଳିଲା । ସମାଜବାଦୀମାନେ ମାନବର ଦୃଷ୍ଟିକୋଣକୁ ପରିବର୍ତ୍ତନ କରିଆସିଛନ୍ତି । 'ଟମକକାଙ୍କ କୁଟୀର'ରେ ଶ୍ରମିକମାନଙ୍କୁ ଅକଥନୀୟ ନିର୍ଯ୍ୟାତନା, ଗୋଡ଼ି, ଚାବୁକ ପାହାର, ଗୋରୁଗାଈ ହାଟ ପରି ଶ୍ରମିକମାନଙ୍କୁ ଲୁହାକଣ୍ଟାରେ, କଣ୍ଟା ଚାବୁକରେ ନିର୍ମମ ଭାବେ ପିଟି ସେମାନଙ୍କ ଦେହରୁ ଝରୁଥିବା ରକ୍ତର ପରିମାଣକୁ ଦେଖି ଶ୍ରମିକ କିଣାବିକା ଚାଲୁଥିଲା । ଆବ୍ରାହମ୍ ଲିଙ୍କନ୍ ତାଙ୍କ ଭାଷଣରେ କହିଛନ୍ତି - If the Almighty had ever meant a set of man that should do all of the eating and none of the work. He would have made them with mouths only and no hand and if he had meant another class to do all the work and no eating. He would have wide them with hands only and no mouths.

ଶ୍ରମିକମାନେ ଦେଶର ଗୁରୁତ୍ୱପୂର୍ଣ୍ଣ ଅଂଶ । ସେମାନଙ୍କୁ ଅବହେଳା କରି ଦେଶ ଅଗ୍ରଗତି କରିପାରିବ ନାହିଁ । ଟିମୋଥି (Timothy)ଙ୍କ ଉକ୍ତି ହେଲା - The labourer is worthy of his reward. ଯେ ଶ୍ରମ କରେ ସେ ଉପଯୁକ୍ତ ମୂଲ୍ୟ ପାଇବା ଦରକାର । ଶ୍ରମିକର ଝାଳବୁହା ଶ୍ରମକୁ ଯେ ପ୍ରତାରିତ କରିଛି ତା'ର ସମୃଦ୍ଧି ଅପେକ୍ଷା କ୍ରନ୍ଦନ ଅଧିକ ।

ଶ୍ରମିକକୁ ମର୍ଯ୍ୟାଦା ଦେଲେ ହିଁ ଶ୍ରମର ଗୌରବ ମିଳିଥାଏ । ପ୍ରଥମେ ମଣିଷ କେବଳ କ୍ଷେତରେ ଖଟି ଚାଷ କରୁଥିଲା । ମଣିଷର ବିକାଶ ଧାରାରେ ବିଭିନ୍ନ ଶ୍ରମ ବିଭାଗ ଖୋଲିଗଲା । ସେଗୁଡ଼ିକ ହେଲା କ୍ଷେତ, ଖଣି, କାରଖାନା, ଗୃହ ନିର୍ମାଣ, ରାସ୍ତାଘାଟ, ପୋଲ, ବନ୍ଦର, ପରିବହନ ପ୍ରଭୃତି ବହୁ କ୍ଷେତ୍ର । ସେମାନଙ୍କ ମଧ୍ୟରେ ପୁରୁଷ-ନାରୀ ତାଲିମ, ଅଣତାଲିମପ୍ରାପ୍ତ ଇତ୍ୟାଦି ଶ୍ରେଣୀ ବିଭାଗ ରହିଲା । ଶ୍ରମିକର ଜ୍ଞାନକୌଶଳ ଅଭିଜ୍ଞତାକୁ ନେଇ ତା'ର ପ୍ରାପ୍ୟ ସ୍ଥିର କରାଗଲା ।

ଭାରତ ପରି ଏକ ବିକାଶଶୀଳ ରାଷ୍ଟ୍ରରେ ଶ୍ରମିକର ସ୍ୱାଧୀକାର ଓ ସୁରକ୍ଷା ପାଇଁ ଦୀର୍ଘ ବର୍ଷ ଧରି ଧାରଣା, ଆନ୍ଦୋଳନ, ସଂସ୍କାର ଚାଲି ଆସିଛି । ଏ ଯାବତ୍ ମଧ୍ୟ ଶ୍ରମ ମନ୍ତ୍ରଣାଳୟ ଶ୍ରମ ଆଇନ ପ୍ରଭୃତି ଶ୍ରମ ନୀତି ଘୋଷିତ କରିଥିଲେ ମଧ୍ୟ ଶ୍ରମିକର ଦୁଃଖ ଲାଘବ ହୋଇପାରିନାହିଁ । ଶ୍ରମଦିବସ ସୃଷ୍ଟି କରିବା, ନିଯୁକ୍ତି ଏବଂ ସୁରକ୍ଷା ପାଇଁ ଜନସଂଖ୍ୟା ବୃଦ୍ଧି ଓ ଶିଳ୍ପ ତଥା କମ୍ପ୍ୟୁଟରୀକରଣ ଏକ ଜଟିଳ ସମସ୍ୟା ଭାବେ ମୁଣ୍ଡ ଟେକିଛି ।

ଇଣ୍ଡିଆ ୨୦୦୩, ଅବଜରଭର୍ ଷ୍ଟାଟିଷ୍ଟିକ୍ସ ହ୍ୟାଣ୍ଡ ବୁକ୍ (ପୃ. ଏନ୍- ୦୧) ଅନୁଯାୟୀ ଆମ ଭାରତବର୍ଷରେ ଶ୍ରମିକ ସର୍ବେକ୍ଷଣ

ରିପୋର୍ଟରୁ ଜଣାପଡ଼େ ଯେ ୨୦୦୦ ମସିହାରେ ୧୯୩.୧୪ ଲକ୍ଷ ଶ୍ରମିକ ନିମ୍ନୋକ୍ତ ବିଭାଗରେ ନିୟୋଜିତ ।

| | | |
|---|---|---|
| କେନ୍ଦ୍ର ସରକାରୀ କର୍ମଚାରୀ | - | ୩୨.୭୩ |
| ରାଜ୍ୟ ସରକାରୀ କର୍ମଚାରୀ | - | ୭୪.୭୦ |
| ଅର୍ଦ୍ଧସରକାରୀ କର୍ମଚାରୀ | - | ୬୩.୨୬ |
| ବେସରକାରୀ ଅନୁଷ୍ଠାନ | - | ୨୨.୫୫ |
| **ମୋଟ** | **-** | **୧୯୩.୧୪ ଲକ୍ଷ** |

**ବିଭାଗଗୁଡ଼ିକରେ ନିଯୁକ୍ତ ସେମାନଙ୍କ ପରିସଂଖ୍ୟାନ**

| | | |
|---|---|---|
| କୃଷି ଓ ଶୀକାର କ୍ଷେତ୍ରରେ | - | ୫.୧୪ |
| ଖଣି ଖାଦାନ | - | ୯.୨୪ |
| ପଣ୍ୟ ସାମଗ୍ରୀ ପ୍ରସ୍ତୁତକାରୀ ସଂସ୍ଥା | - | ୧୫.୩୧ |
| ବିଦ୍ୟୁତ୍ ଗ୍ୟାସ୍ ଏବଂ ଜଳଯୋଗାଣ | - | ୯.୪୬ |
| ନିର୍ମାଣ | - | ୧୦.୯୨ |
| ହୋଲସେଲ୍ ଓ ରିଟେଲ ଟ୍ରେଡ୍ | - | ୧.୬୩ |
| ପରିବହନ, ସଂରକ୍ଷଣ ଓ ଯୋଗାଯୋଗ | - | ୩୦.୭୭ |
| ଅର୍ଥ, ବୀମା ଓ ଜମିଜମା ଖର୍ଦ୍ଦବିକ୍ରୀ | - | ୧୨.୯୬ |
| ସାମାଜିକ ଅନୁଷ୍ଠାନ | - | ୯୭.୭୧ |
| **ମୋଟ** | **-** | **୧୯୩.୧୪ ଲକ୍ଷ** |

ମଇ ଦିବସକୁ ଶ୍ରମିକ ଦିବସ ଭାବେ ପାଳନ କରିବାର ତାତ୍ପର୍ଯ୍ୟ ରହିଛି । ମଇ ପହିଲା ଶ୍ରମିକମାନଙ୍କ ପ୍ରାଣରେ ଆତ୍ମ ମର୍ଯ୍ୟାଦା, ସୁରକ୍ଷା ଓ ଅଧିକାର ପାଇଁ ଅତୀତର ବହୁ ରକ୍ତକ୍ଷୟୀ ଅଧ୍ୟାୟକୁ ସ୍ମରଣ କରାଇ ଦିଏ ।

କେବଳ ଅର୍ଥନୈତିକ ସୁବିଧା ହାସଲ ପାଇଁ ନୁହେଁ ବରଂ ଏକ ଶୋଷଣମୁକ୍ତ ସାମାଜିକ ଓ ରାଜନୈତିକ ବ୍ୟବସ୍ଥା ପାଇଁ ଶ୍ରମିକମାନଙ୍କର ବିଶ୍ୱବ୍ୟାପୀ ଏହି ଦିବସ ପାଳନ ଐତିହାସିକ ବିପ୍ଳବର କଥାକୁ ମାନ୍ୟତା ଦେଇଥାଏ ।

ପୂର୍ବେ ଶ୍ରମିକମାନେ ମାଲିକ ନିକଟରେ ବିକ୍ରୀ ହୋଇଯାଉଥିଲେ କହିଲେ ଚଳେ । ସେମାନେ ଦିନରାତି ମାଲିକର ଇଚ୍ଛା ଅନୁଯାୟୀ ନିୟୋଜିତ ହେଉଥିଲେ ମଧ୍ୟ ଉଚିତ ପାରିଶ୍ରମିକ ମିଳୁ ନଥିଲା ।

ଏହାକୁ ପ୍ରକାରାନ୍ତରେ ବେଠି ବେଗାରି ବା ବେରୋଜଗାରୀର ଅକଥନୀୟ ନିର୍ଯ୍ୟାତନା କୁହାଯାଇପାରେ । ଦରିଦ୍ରର ଅବସ୍ଥା ଏଥିପାଇଁ ଦାୟୀ । ସେମାନେ କୌଣସି ପ୍ରକାରର ନ୍ୟାୟ ପାଇଁ ସ୍ୱର ଉତ୍ତୋଳନ କରିପାରୁ ନଥିଲେ ।

୧୮୦୬ ମସିହାରେ ସୂର୍ଯ୍ୟୋଦୟରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ କାମରେ ନିଯୁକ୍ତି ବିରୁଦ୍ଧରେ ପ୍ରଥମେ ଶ୍ରମିକମାନେ ବୁକୁଫଟା ଚିତ୍କାର କରିଥିଲେ ମଧ୍ୟ ଫଳ କିଛି ହୋଇ ନଥିଲା । ତା'ର ୮୦ ବର୍ଷ ପରେ ଆଠଘଣ୍ଟା କାମର ନିର୍ଘଣ୍ଟ ଦାବୀରେ ଚିକାଗୋ ସହରରେ ସମସ୍ତ ଶ୍ରମିକ ଆନ୍ଦୋଳନ ଆରମ୍ଭ କଲେ । ଏହା ମେ ପହିଲା ଦିନ ଆରମ୍ଭ ହେଲା, ସେଇ ମଇ ତିନି ତାରିଖ ଦିନ ସେମାନଙ୍କୁ ଦମନ କରିବା ପାଇଁ ଛଅ ଜଣଙ୍କୁ ହତ୍ୟା କରାଗଲା ଏବଂ ସେ ଅପରାଧକୁ ସେଇ ଶ୍ରମିକନେତାମାନଙ୍କ ଉପରେ ଲଦି ଦିଆଗଲା । ୧୮୮୭ ମସିହାରେ ଶ୍ରମିକ ନେତାମାନଙ୍କୁ ଫାଶୀ ଦିଆଗଲା । ମଇ ପହିଲା ଦିନ ସାରା ବିଶ୍ୱରେ ଏ ଆନ୍ଦୋଳନ ବ୍ୟାପିଲା । ଭାରତକୁ ଏହା ବ୍ୟାପିଗଲା । ୧୮୬୨ରେ କଲିକତାରେ ହାଓଡା ରେଳ କର୍ମଚାରୀମାନେ ଆଠଘଣ୍ଟା କାମ ପାଇଁ ଧର୍ମଘଟକୁ ସପ୍ତାହ କାଳ ବଢ଼ାଇ ଦେଇଥିଲେ । ୧୮୮୦ ମସିହାରେ ପୋଷ୍ଟମ୍ୟାନମାନେ ଆନ୍ଦୋଳନ କଲେ । ସେହିପରି ଭାବେ ୧୮୯୫ ମସିହାରେ ବମ୍ବେର ଡାକ କର୍ମଚାରୀ ଓ କଳକାରଖାନାର ଶ୍ରମିକମାନେ ସଂଗଠିତ ହୋଇ ଆଠଘଣ୍ଟା କାମ ପାଇଁ ଆନ୍ଦୋଳନ କଲେ । ୧୯୧୮ ମସିହାଠାରୁ ବିଶ୍ୱଯୁଦ୍ଧ ସମାପ୍ତି (ନଭେମ୍ବର ଏଗାର ତାରିଖ ପର୍ଯ୍ୟନ୍ତ) ବିଭିନ୍ନ ସ୍ଥାନରେ ବିଭିନ୍ନ ସଂଗଠନମାନେ ଧର୍ମଘଟ ଆରମ୍ଭ କଲେ ଏବଂ ୧୯୧୯-୧୯୨୦ ବେଳକୁ ଏହା ତେଜି ଉଠିଲା ।

ରୁଷ୍ ବିପ୍ଳବ ଆମ ଶ୍ରମିକ ଆନ୍ଦୋଳନକୁ ଆହୁରି ଶକ୍ତିଶାଳୀ କଲା ଏବଂ ଏହି ସଂଗ୍ରାମ ଫଳରେ ୧୯୨୦ ମସିହାରେ ସାରା ଭାରତରେ ଟ୍ରେଡ ୟୁନିୟନ୍ ପ୍ରତିଷ୍ଠା ଲାଭ କଲା ।

୧୮୫୦ ମସିହାରୁ ୧୯୦୦ ମସିହା ହେଲା ଶ୍ରମିକ ସଂଗ୍ରାମର ପ୍ରାତଃକାଳ । ୧୯୦୧ରୁ ୧୯୧୪ ମସିହା ଟ୍ରେଡ୍ ୟୁନିୟନ୍‌ର ଆନ୍ଦୋଳନ ପର୍ଯ୍ୟାୟ । ୧୯୧୫ରୁ ୧୯୪୭ ମସିହା ହେଲା ସଂଗଠିତ ଟ୍ରେଡ ୟୁନିୟନ୍ ଆନ୍ଦୋଳନ ଓ ଶ୍ରମିକ ଚେତନାର ଯୁଗ । ନେତୃତ୍ୱର ଅଧିକାର ସହ ଆଠଘଣ୍ଟା ଶ୍ରମଦାନ ତଥା ଅନେକ ଅଧିକାର ପାଇଥିଲେ ।

ଏହିଠାରୁ ନୂତନ ସଭ୍ୟତାର ଆରମ୍ଭ ହେଲା । ଭାରତ ପରି ଚୀନ, ରୁଷ, ଭିଏତ୍‌ନାମ, କୋରିଆ ରାଷ୍ଟ୍ରର ଶ୍ରମିକ ଶ୍ରେଣୀ ସେମାନଙ୍କର ଅଧିକାର ସାବ୍ୟସ୍ତ କଲେ ।

ବିଶ୍ୱରେ କେତେକ ସମୃଦ୍ଧ ରାଷ୍ଟ୍ର ସେମାନଙ୍କର ଆଧିପତ୍ୟ ଜାହିର କରିବା ପାଇଁ ପୁଞ୍ଜିବାଦୀ ସାମ୍ରାଜ୍ୟବାଦୀ ଦେଶମାନେ ଜଗତିକରଣ, ଘରୋଇକରଣ, ଉଦାରୀକରଣ ମାଧ୍ୟମରେ ଶ୍ରମିକମାନଙ୍କ ଉପରେ ଆକ୍ରମଣ ଚଳାଇଛନ୍ତି ।

ଯେହେତୁ ଆମେରିକା ନିର୍ଦ୍ଦେଶରେ ପରିଚାଳିତ ବିଶ୍ୱବ୍ୟାଙ୍କ, ବିଶ୍ୱ ବାଣିଜ୍ୟ ସଂଗଠନ ଏବଂ ଆନ୍ତର୍ଜାତୀୟ ମୁଦ୍ରାପାଣ୍ଠି, ତେଣୁ ଭାରତ ଭଳି କେତେକ ବିକାଶଶୀଳ ରାଷ୍ଟ୍ର ସେହି ସର୍ତ୍ତାବଳୀରେ ଛନ୍ଦି ହୋଇ ତାଙ୍କରି ପରିଚାଳନାରେ ଆମ ଶ୍ରମନୀତିକୁ ନିୟନ୍ତ୍ରଣ କରୁଛନ୍ତି ।

ଭାରତ ଭଳି ଜନବହୁଳ ରାଷ୍ଟ୍ରରେ ଜନସଂଖ୍ୟା ତୁଳନାରେ ନିଯୁକ୍ତି ତଥା ଶ୍ରମ ଦିବସର ଅଭାବ ସାଂଗକୁ ଶିଳ୍ପ ବିପ୍ଲବର ପ୍ରଭାବରେ ହଜାର ହଜାର ସଂଖ୍ୟକ ଲୋକ ଛଟେଇ, ତାଲାବନ୍ଦ ଯୋଗୁଁ କର୍ମସଂସ୍ଥାନ ହରାଇ ବେକାର ହୋଇଯାଉଛନ୍ତି ।

ଶ୍ରମିକମାନଙ୍କର ସର୍ବାଙ୍ଗୀନ ଉନ୍ନତି ଓ ସୁରକ୍ଷା ଦୃଷ୍ଟିରୁ ଶ୍ରମ ନୀତିକୁ ପ୍ରଭାବିତ କରୁଥିବା ତିନୋଟି ବିଭାଗ ହେଲା - ଶ୍ରମିକଙ୍କୁ ସାମାଜିକ ନ୍ୟାୟ ପ୍ରଦାନ । ଉତ୍ପାଦନ ପ୍ରକ୍ରିୟାରେ ଶ୍ରମିକର ଶ୍ରମଦାନ ତଥା ଅର୍ଥନୈତିକ ବିକାଶ ସାଧନ ଏବଂ ଶିଳ୍ପ ମାଲିକ ଓ ଶ୍ରମିକ ଉଭୟଙ୍କୁ ଶିଳ୍ପାୟନ ପ୍ରକ୍ରିୟାରେ ଦୁଇ ସହଯୋଗୀ ଅଂଶୀଦାର ରୂପେ ଗ୍ରହଣ କରି ରାଷ୍ଟ୍ର ଗଠନ ପ୍ରକ୍ରିୟାରେ ସଂପୃକ୍ତ କରାଇବା ।

ଆମ ସମ୍ବିଧାନରେ ଶ୍ରମିକ ସୁରକ୍ଷା ନିମନ୍ତେ କେତେକ ଆଇନ ପ୍ରଣୟନ କରାଯାଇଛି । ସମ୍ବିଧାନର ୨୩ ଧାରା ଅନୁଯାୟୀ ଶ୍ରମିକଙ୍କୁ ପଣ୍ୟ ଦ୍ରବ୍ୟ ନମଣିବା ପାଇଁ ସ୍ପଷ୍ଟ ଉଲ୍ଲେଖ ରହିଛି । ୨୪ ଧାରାରେ ଅଛି ଯେ ୧୪ ବର୍ଷରୁ କମ ବୟସର ବାଳକ ବାଳିକାମାନଙ୍କୁ ବିପଦ ଶଙ୍କୁଳ କାର୍ଯ୍ୟରେ ନିଯୁକ୍ତ କରାଯାଇପାରିବ ନାହିଁ । ୪୩ ଧାରାରେ ଶିଳ୍ପ ପରିଚାଳନାରେ ଶ୍ରମିକର ସକ୍ରିୟ ଅଂଶଗ୍ରହଣ ପାଇଁ ଅଧିକାର ରହିବା ବାଞ୍ଛନୀୟ ।

ଏହାବ୍ୟତୀତ ଶ୍ରମିକର ଅଧିକାର ପାଇଁ ଶ୍ରମ ସଂଗଠନ ଆଇନ (୧୯୨୬)ରେ ସାଂଗଠନିକ ଅଧିକାର, ଶିଳ୍ପ ନିୟୋଜନ ଆଦେଶ ଆଇନ (୧୯୪୬) କାର୍ଯ୍ୟ ସମୟ, ବିଶ୍ରାମ, ଛୁଟି, ନିଯୁକ୍ତି, ସ୍ୱାସ୍ଥ୍ୟ, କଲ୍ୟାଣ ବ୍ୟବସ୍ଥା (୧) କଳାକାରଖାନା ଆଇନ (୧୯୪୮) ଓ (୨) ଖଣି ଆଇନ (୧୯୫୨) ।

ଶିଶୁ ଶ୍ରମିକ ନିୟୋଗ ଓ ନିବାରଣ ଆଇନ (୧୯୮୬) ସାମାଜିକ ସୁରକ୍ଷା ଆଇନ, କର୍ମଚାରୀ ବୀମା ଆଇନ, କର୍ମଚାରୀ ଭବିଷ୍ୟନିଧି ଆଇନ । ସଂପ୍ରତି ଆମ ଦେଶରେ ପ୍ରାୟ ୩୬ଟିରୁ ଅଧିକ ସ୍ୱତନ୍ତ୍ର ଶ୍ରମ ଆଇନ ଓ ନିୟମାବଳୀ ରହିଛି । ଅନେକ କ୍ଷେତ୍ରରେ ସରକାରୀ ଆଇନ ଥାଇ ମଧ ଶ୍ରମିକ ତା'ର ନ୍ୟାଯ୍ୟ ପ୍ରାପ୍ୟ ପାଇବାରୁ ବଞ୍ଚିତ ହୋଇଥାଏ । ସେଥିପାଇଁ ଶ୍ରମିକଶ୍ରେଣୀ ସମାଜକୁ ବିବିଧ ଅବଦାନ ଦେଇ ବି ଦୁଃସ୍ଥ ଓ ଦୁର୍ବଳ । ଆବଶ୍ୟକତାକୁ ଆଖିରେ ରଖି ବାସ୍ତବମୁଖୀ ନୀତି ନିର୍ଦ୍ଧାରଣ ଓ ସଫଳ ରୂପାୟନ ଆଜିର ଆହ୍ୱାନ ହେଉ ।

ଭାରତବର୍ଷରେ ସମୁଦାୟ ଲୋକସଂଖ୍ୟାର ପ୍ରାୟ ୨୮ କୋଟି ଲୋକ ହେଲେ କର୍ମଜୀବୀ । ସେମାନଙ୍କ ମଧ୍ୟରୁ ୧୦.୫ କୋଟି ଦରମା ବା ବେତନଭୋଗୀ ଶ୍ରମିକ ରହିଥିବା ବେଳେ ବଳକା ୧୬.୫ କୋଟି ଆତ୍ମନିଯୁକ୍ତି କ୍ଷେତ୍ରରେ ଅଧିଷ୍ଠିତ । ସେମାନଙ୍କ ମଧରେ କୃଷକମାନଙ୍କ ସଂଖ୍ୟା ୧୩ କୋଟି । କେନ୍ଦ୍ର ଓ ରାଜ୍ୟ ସରକାରୀ ଉଦ୍ୟୋଗର କର୍ମଚାରୀଙ୍କ ସଂଖ୍ୟା ୧୯.୦୫ ନିୟୁତ ଥିବାବେଳେ ଘରୋଇ ଶ୍ରମିକଙ୍କ ସଂଖ୍ୟା ପ୍ରାୟ ୬.୬୮ ନିୟୁତ ।

କୃଷି ଶ୍ରମିକମାନେ ସବୁବେଳେ ଅସଂଗଠିତ । ଏପର୍ଯ୍ୟନ୍ତ ସେମାନଙ୍କର ସାମାଜିକ ନିରାପତ୍ତା ପାଇଁ କୌଣସି ଆଇନ ପ୍ରଣୟନ ହୋଇ ନାହିଁ । ଶୋଷଣହୀନ, ଶ୍ରମଭିତ୍ତିକ, ଅର୍ଥକରୀ ସମାଜ ପ୍ରତିଷ୍ଠା ପାଇଁ ଦୃଢ଼ ନେତୃତ୍ୱ ଓ ସଂଗଠନର ଆବଶ୍ୟକତା ରହିଛି ।

ଭାରତର ସ୍ୱାଧୀନତା ସଂଗ୍ରାମରେ ଶ୍ରମିକମାନଙ୍କର ଭୂମିକା ଦିନେ ଥିଲା ଗୁରୁତ୍ୱପୂର୍ଣ୍ଣ । ସେହିଭଳି ଶୋଷଣହୀନ ସୁସ୍ଥ ସାମାଜିକ ସହାବସ୍ଥାନ ପାଇଁ ଶ୍ରମିକ ସୁରକ୍ଷା ଆର୍ଥିକ ଓ ସାମାଜିକ ନ୍ୟାୟ ସାଂପ୍ରତିକ ପରିସ୍ଥିତିରେ ଶ୍ରମ ନୀତି ଆହୁରି ବାସ୍ତବାଭିମୁଖୀ ହେଉ ।

'ଆଶ୍ରମ'
ଶ୍ରୀବିହାର କଲୋନୀ, କଟକ - ୮



ଓଡ଼ିଶା ବିଧାନସଭା ସମ୍ମୁଖରେ ୫୭ତମ ରାଜଧାନୀ ପ୍ରତିଷ୍ଠା ଦିବସ ଉତ୍ସବ-୨୦୦୫ ପାଳନ ଅବସରରେ ମାନ୍ୟବର ବାଚସ୍ପତି ଶ୍ରୀ ମହେଶ୍ୱର ମହାନ୍ତି ଏବଂ ସୂଚନା ଓ ଲୋକ ସଂପର୍କ, କ୍ରୀଡ଼ା ତଥା ଯୁବସେବା ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ ଅଭିବାଦନ ଗ୍ରହଣ କରୁଛନ୍ତି । (୧୩.୦୪.୦୫)

# ଶିଶୁ ଶ୍ରମିକ ସମସ୍ୟା ଓ ସମାଧାନ

ଗଙ୍ଗୋତ୍ରୀ ଦେବୀ

**ଶି**ଶୁ ହିଁ ଦେଶ ଓ ଜାତିର ଭବିଷ୍ୟତ । ଶିଶୁ ହସିଲେ ଦୁନିଆ ହସେ । ସ୍ୱାଧୀନ ଭାରତରେ ପ୍ରତ୍ୟେକ ଶିଶୁ ଶିକ୍ଷା ପାଇ ଜଣେ ଉନ୍ନତ ନାଗରିକ ଭାବରେ ନିଜକୁ ଗଢ଼ି ପାରିବ ବୋଲି ଦେଶରେ ବିଭିନ୍ନ ପ୍ରକାର ଯୋଜନା କାର୍ଯ୍ୟକାରୀ କରାଯାଉଛି । ପରିତାପର ବିଷୟ, ଏତେ ସବୁ ଯୋଜନା ସତ୍ତ୍ୱେ ଦେଶରେ ଶିଶୁ ଶ୍ରମିକ ପ୍ରଥାର କୌଣସି ପରିବର୍ତ୍ତନ ହେଉନାହିଁ । ଏକ ଅର୍ଥନୈତିକ ସର୍ଭେ ଅନୁଯାୟୀ ଦେଶରେ ପ୍ରାୟ ଏକ କୋଟି ଷାଠିଏ ଲକ୍ଷ ଶିଶୁ ବିଭିନ୍ନ ସ୍ଥାନରେ ଶ୍ରମିକ ଭାବରେ କାର୍ଯ୍ୟ କରୁଛନ୍ତି ।

ଶିଶୁ ଶ୍ରମିକ କାହାକୁ କହିବା - କମ୍ ଟଙ୍କା ବିନିମୟରେ ଉଭୟ ଶାରୀରିକ ଓ ମାନସିକ କ୍ଷତି କରୁଥିବା କାର୍ଯ୍ୟରେ ବିନିଯୋଗ କରାଯାଉଥିବା ୬-୧୪ ବର୍ଷ ବୟସର ପିଲାମାନଙ୍କୁ ଶିଶୁ ଶ୍ରମିକ ଭାବରେ ବିବେଚନା କରାଯାଇଥାଏ । ଆନ୍ତର୍ଜାତିକ ଶ୍ରମ ସଂଗଠନ ୧୯୮୩ ଅନୁସାରେ ଯେଉଁ ଶିଶୁମାନେ ମୌଳିକ ଶିକ୍ଷା ରହିତ ହୋଇ ଉପଯୁକ୍ତ ପ୍ରଶିକ୍ଷଣ ପାଇବା ପୂର୍ବରୁ ପରିବାର ପାଇଁ ବୟସ୍କର ଭୂମିକା ତୁଲାଉ ଅଛନ୍ତି, ସେମାନେ ଶିଶୁ ଶ୍ରମିକ ଅନ୍ତର୍ଭୁକ୍ତ ।

ଭାରତରେ ଏକ ସର୍ବେକ୍ଷଣ ଅନୁଯାୟୀ ଉଭୟ ବାଳକ ଓ ବାଳିକାମାନେ ଶତକଡ଼ା ୫୨ ଭାଗ କୃଷି ଶ୍ରମିକ ଭାବରେ କୃଷି କ୍ଷେତ୍ରରେ କାର୍ଯ୍ୟ କରିଥାଆନ୍ତି । ଶିଳ୍ପ ଓ ସେବା କାର୍ଯ୍ୟରେ ଏମାନଙ୍କୁ ଲଗାଯାଇଥାଏ । ଏମାନଙ୍କ ମଧ୍ୟରୁ କେତେକଙ୍କୁ ବିଭିନ୍ନ ଘରୋଇ କାର୍ଯ୍ୟ ତଥା ଅନୈତିକ କାର୍ଯ୍ୟରେ ବ୍ୟବହାର କରିଥାଆନ୍ତି ।

ଶିଶୁ ଶ୍ରମିକ କିପରି ଓ କାହିଁକି ସୃଷ୍ଟି ହୁଅନ୍ତି, ସଂପ୍ରତି ଦେଶରେ ଶିଶୁ ଶ୍ରମିକ ଉଚ୍ଛେଦ ପାଇଁ ବିଭିନ୍ନ ଯୋଜନା ପ୍ରସ୍ତୁତ କରାଯିବା ପୂର୍ବରୁ ଏକ ସର୍ଭେ କରାଯାଇ କାରଣଗୁଡ଼ିକ ଉପରେ ତର୍ଜମା କରାଯାଇଥିଲା । ସର୍ବେକ୍ଷକମାନଙ୍କ ମତରେ ପ୍ରଥମ ଭୂମିକା ମଧ୍ୟକୁ (୧) ପରିବାର, (୨) ବନ୍ଧକ ଶିଶୁ ଶ୍ରମିକ ପ୍ରଥା, (୩) ରାସ୍ତାକଡ଼, ଷ୍ଟେସନରେ ରହୁଥିବା ଶିଶୁ, (୪) ଅନାଥ ଶିଶୁ ଓ (୫) ମାଫିଆମାନଙ୍କ ଦ୍ୱାରା ଅପହୃତ ଓ ଚାଲାଣ ହେଉଥିବା ଶିଶୁମାନଙ୍କୁ ଗ୍ରହଣ କରାଯାଇଛି ।

**(୧) ପରିବାର -** ଭାରତର ଅଧିକାଂଶ ଅଶିକ୍ଷିତ, ନିଶାଗ୍ରସ୍ତ, ଗରୀବ ପରିବାରର ଶିଶୁମାନେ ଏହି ପର୍ଯ୍ୟାୟର ଅନ୍ତର୍ଭୁକ୍ତ । ଦରିଦ୍ର ପରିବାରରେ ଅଧିକ ସଂଖ୍ୟକ ଶିଶୁ ଜନ୍ମ ଓ ସେମାନଙ୍କର ଉପଯୁକ୍ତ ଭରଣପୋଷଣ ହୋଇପାରୁନଥିବାରୁ ତଥା ଅଧିକ ପିଲା ଅଧିକ ରୋଜଗାରର ଚାବିକାଠି ବୋଲି ବିଚାରୁଥିବା ପିତାମାତାମାନେ ସେମାନଙ୍କ ଶିଶୁଙ୍କୁ ଦିନ ମଜୁରିଆ, ବିଭିନ୍ନ ଘରୋଇ କାର୍ଯ୍ୟରେ ଲଗାଇ ବେଶ୍ ଦୁଇ ପଇସା ରୋଜଗାର କରାଉଛନ୍ତି । ଏଭଳି ମଧ୍ୟ ନିର୍ଦ୍ଦୟ ପିତାମାତା ଅଛନ୍ତି, ଯେଉଁମାନଙ୍କ ଜ୍ଞାତସାରରେ ସେମାନଙ୍କ ଶିଶୁ କଠିନ କାର୍ଯ୍ୟରେ ନିୟୋଜିତ ଥାଆନ୍ତି ।

**(୨) ବନ୍ଧକ ଶିଶୁ ଶ୍ରମିକ ପ୍ରଥା -** ବିଶେଷତଃ ଆଦିବାସୀ ବହୁଳ ଅଞ୍ଚଳ ତଥା ଅନୁନ୍ନତ ଅଞ୍ଚଳରେ ଏହି ବନ୍ଧକ ଶିଶୁ ଶ୍ରମିକ କାରବାର ଦେଖାଯାଇଥାଏ । ପିତାମାତାଙ୍କ କରଜ ଟଙ୍କା ଶୁଝିବା ପାଇଁ କୋମଳମତି ଶିଶୁଗଣ ଶ୍ରମିକ ଭାବରେ କାର୍ଯ୍ୟ କରିଥାଆନ୍ତି ।

**(୩) ରାସ୍ତାକଡ଼, ଷ୍ଟେସନ ଅଞ୍ଚଳ -** ପାରିବାରିକ ଚାପ ଏବଂ କେତେକ ଘରୁ ଅଭିମାନରେ ଚାଲିଆସି ରାସ୍ତାକଡ଼ ଫୁଟପାଥ ଏବଂ ଷ୍ଟେସନ ଅଞ୍ଚଳକୁ ନିଜର ନିରାପଦ ସ୍ଥାନ ଭାବରେ ବାଛି ନେଇଥାଆନ୍ତି । ଦିନସାରା ଯେ କୌଣସି କଠିନ କାର୍ଯ୍ୟ କରିବାକୁ ଏମାନେ ପଶ୍ଚାଦପଦ ହୁଅନ୍ତି ନାହିଁ ।

**(୪) ଅନାଥ ଶିଶୁ -** ପାରିବାରିକ ବିପତ୍ତି କାରଣରୁ ବାପା-ମାଆ ଛେଉଣ୍ଡ ଶିଶୁ, ଅବାଞ୍ଛିତ ଗର୍ଭଧାରଣ କାରଣରୁ ସୃଷ୍ଟି ଶିଶୁ ନିଜର ପରିଚୟ ହରାଇ ଦୈନନ୍ଦିନ ଜୀବନର ଆବଶ୍ୟକତା ପୂରଣ କରିବାକୁ ଯାଇ କଅଁଳ ବୟସରୁ ଶ୍ରମକୁ ଆଦରି ନେଇଥାଏ । ପିତାମାତାଙ୍କ ଅବାଞ୍ଛିତ କାମନାରେ ବଳି ପଡ଼ନ୍ତି ଏହି ଶିଶୁ । ଜୀବନର ସ୍ୱାଦ କ'ଣ ଜାଣିବା ପୂର୍ବରୁ ଏମାନେ ନିଜକୁ ଶ୍ରମିକ ଭାବରେ ଜାଣିସାରିଥାଆନ୍ତି ।

**(୫) ମାଫିଆମାନଙ୍କ ଦ୍ୱାରା ଚାଲାଣ ହେଉଥିବା ଶିଶୁ -** ଗୋଟିଏ ଗୋଷ୍ଠୀର ଶିଶୁ ଚାଲାଣକାରୀ ବିଭିନ୍ନ ପ୍ରଲୋଭନ ଦେଖାଇ ଗୋଟିଏ ଜିଲ୍ଲାରୁ ଅନ୍ୟ ଏକ ଜିଲ୍ଲାକୁ ଏପରିକି ଗୋଟିଏ ରାଜ୍ୟରୁ ଅନ୍ୟ ଏକ ରାଜ୍ୟକୁ ମଧ୍ୟ ଶିଶୁ ଶ୍ରମିକମାନଙ୍କୁ ଟ୍ରେନରେ ଚାଲାଣ କରିପାରୁଛନ୍ତି ।

ମାସିକ, ବାର୍ଷିକ ଦରମା ଦେବା ଲୋଭ ଦେଖାଇ ସେମାନଙ୍କ ପିତାମାତା, ଅଭିଭାବକଙ୍କଠାରୁ କିଣି ଆଣି ସ୍ୱଚ୍ଛନ୍ଦରେ ଏହି ବ୍ୟବସାୟ ଚଳାଇଅଛନ୍ତି ।

**କେଉଁ କାର୍ଯ୍ୟରେ ନିୟୋଜନ ହୁଅନ୍ତି ?**

ଏମାନେ ବିଶେଷକରି କୃଷି କ୍ଷେତ୍ରରେ ବିଭିନ୍ନ ଶିଳ୍ପ ସଂସ୍ଥା, ଗ୍ୟାରେଜ, ହୋଟେଲ, ଜରି ଗୋଟାଳି, ଫଳ ଓ ପନିପରିବା, ତେଜରାତି, ଗୁପ୍‌ଚୁପ୍, ଜୋତା ପଲିସ ଆଦି କାର୍ଯ୍ୟ କରିବା ସଂଗେସଂଗେ ମାଛ, କୁକୁଡ଼ା ଓ ମାଂସ ଦୋକାନ ଭଳି ସମ୍ବେଦନଶୀଳ ସ୍ଥାନମାନଙ୍କରେ କାର୍ଯ୍ୟ ତଥା ପଥର ଭାଙ୍ଗିବା, କ୍ରସର ନିକଟରେ କାମ କରିବା, କୋଠାବାଡ଼ି ଆଦି ଅଟାକଳ ଭଳି ବିପଜ୍ଜନକ କାର୍ଯ୍ୟ କରିବା ସଂଗେସଂଗେ ବିଭିନ୍ନ ଘରୋଇ ଚାକର ତଥା ବୁଲାବିକାଳୀ ହୋଇଥାଆନ୍ତି । ଏହାଛଡ଼ା ଏହି କୋମଳମତି ବାଳକବାଳିକାମାନଙ୍କୁ କେତେକ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ବିଭିନ୍ନ ସ୍ଥାନରେ ଭିକ୍ଷାବୃତ୍ତି କରାଇବା ଓ ଅନୈତିକ କାର୍ଯ୍ୟରେ ଲଗାଇ ଥାଆନ୍ତି ।

ସବୁକୁ ଦୃଷ୍ଟିରେ ରଖି ବର୍ତ୍ତମାନ ଭାରତ ସରକାରଙ୍କ ଜାତୀୟ ଶିଶୁ ଶ୍ରମ ପରିଯୋଜନା ଦେଶର ବିଭିନ୍ନ ରାଜ୍ୟରେ ୭୬ଟି କାର୍ଯ୍ୟ କରୁଅଛି । ଏହାଛଡ଼ା ଯେଉଁ ଶିଶୁମାନେ ବିଭିନ୍ନ ବିପଜ୍ଜନକ କାର୍ଯ୍ୟ କରୁଥିବେ, ସେହିଭଳି ୨୦ ଲକ୍ଷ ଶିଶୁଙ୍କୁ ଏହି ଯୋଜନା ପରିସରଭୁକ୍ତ କରାଯାଇ ସେମାନଙ୍କୁ ମୁକ୍ତ କରାଯିବାର ଲକ୍ଷ୍ୟ ରଖାଯାଇଛି । ପ୍ରାଥମିକ ଶିକ୍ଷା ଶିଶୁର ମୌଳିକ ଅଧିକାର । ଏହି ଉଦ୍ଦେଶ୍ୟ ପୂରଣ ପାଇଁ ସେମାନଙ୍କୁ ବିଦ୍ୟାଳୟ ଅଭିମୁଖୀ କରିବାକୁ ୟୁନିସେଫ୍ କେତେକ ଶିଶୁ କଲ୍ୟାଣକାରୀ କାର୍ଯ୍ୟକ୍ରମ ହାତକୁ ନେଇଛି । ବିଭିନ୍ନ ଗଣମାଧ୍ୟମ, ସ୍ୱେଚ୍ଛାସେବୀ ଅନୁଷ୍ଠାନ, ଶିଳ୍ପ ତଥା ବିଚାର ବିଭାଗ ମଧ୍ୟରେ ସମନ୍ୱୟ ରକ୍ଷାକରି ଏହି ଶିଶୁ ବିକାଶ କାର୍ଯ୍ୟକ୍ରମକୁ କେନ୍ଦ୍ର ତଥା ରାଜ୍ୟ ସରକାର କାର୍ଯ୍ୟକାରୀ କରୁଛନ୍ତି ।

ଏସବୁ ସତ୍ତ୍ୱେ ଜନସଚେତନତାର ଅଭାବ ଦେଶରେ ଶିଶୁ ଶ୍ରମିକ ପ୍ରଥାକୁ ଉତ୍ସାହିତ କରୁଅଛି । ଏହି ସମସ୍ୟାର ସମାଧାନ ପାଇଁ ନିମ୍ନୋକ୍ତ କାରଣଗୁଡ଼ିକୁ ଗ୍ରହଣ କରାଯାଇପାରେ ।

(୧) ଶିଶୁ ଶ୍ରମିକଙ୍କୁ ସେମାନଙ୍କ ଅଧିକାର ସମ୍ପର୍କରେ ଅବଗତ କରାଇବା, (୨) ସଂପୃକ୍ତ ପରିବାରଙ୍କ (ପିତାମାତା, ଅଭିଭାବକ) ପ୍ରତି ଦୃଢ଼ କାର୍ଯ୍ୟାନୁଷ୍ଠାନ, (୩) ଛୋଟ ପରିବାରର ଆବଶ୍ୟକତା ବୁଝାଇବା ଏବଂ ବିଭିନ୍ନ ସ୍ୱାସ୍ଥ୍ୟ ସମ୍ପର୍କୀୟ ସେବା ଯୋଗାଇ ଦେବା, (୪) ଶିଶୁଶ୍ରମିକ ରଖୁଥିବା ପରିବାର, ଶିଳ୍ପ ସଂସ୍ଥା ଏବଂ ବ୍ୟକ୍ତିବିଶେଷଙ୍କୁ ଆର୍ଥିକ, ସାମାଜିକ ତଥା ପ୍ରଶାସନିକ ସୁବିଧାରୁ ବଞ୍ଚିତ କରାଇବା, (୫) ଆଇନଗତ କଟକଣା କରାଯାଇ ପ୍ରତ୍ୟେକ ପରିବାରର ୬-୧୪ ବର୍ଷ ବୟସ ପର୍ଯ୍ୟନ୍ତ ଶିଶୁ ପ୍ରାଥମିକ ଶିକ୍ଷା ପାଇବା ପାଇଁ ସେମାନଙ୍କ ଅଭିଭାବକଙ୍କୁ ବାଧ୍ୟ କରାଯିବା ଜରୁରୀ, (୬) ସ୍ୱେଚ୍ଛାସେବୀ ସଂଗଠନ, ଜିଲ୍ଲା ପ୍ରଶାସନ, ବିଭିନ୍ନ ଗଣମାଧ୍ୟମ ଦ୍ୱାରା ବହୁଳ ପ୍ରଚାରର ଆବଶ୍ୟକତା, (୭) ଶିଶୁ ଶ୍ରମିକମାନଙ୍କର ପ୍ରକୃତ ଅସୁବିଧାକୁ ହୃଦୟଙ୍ଗମ କରି ତାହାର ଉଚିତ ସମାଧାନ କରାଯିବା ଉପରେ ଗୁରୁତ୍ୱାରୋପ କରାଯିବା, (୮) ସେମାନଙ୍କ ପାଇଁ ଅନୌପଚାରିକ ଶିକ୍ଷା ସୁବିଧା, (୯) ବିଭିନ୍ନ ବିପଦପୂର୍ଣ୍ଣ କାର୍ଯ୍ୟ ଏବଂ ଅନୈତିକ କାର୍ଯ୍ୟରେ ଲିପ୍ତ କରାଉଥିବା ସଂସ୍ଥା ଓ ବ୍ୟକ୍ତିବିଶେଷଙ୍କ ପ୍ରତି ଭାରତୀୟ ଦଣ୍ଡ ସଂହିତା, ମାନବ ଅଧିକାର, ଶିଶୁ ମଜୁରୀ ଭଳି ବିଭିନ୍ନ ଆଇନ ଅନୁଯାୟୀ କଠିନ ଦଣ୍ଡ ଦେବା ଉଚିତ, (୧୦) ଲୋକମାନଙ୍କ ମନରେ ଶିଶୁଶ୍ରମିକ ନରଖିବା ପାଇଁ ସଚେତନତା ସୃଷ୍ଟି କରିବା, ବାଳଶ୍ରମ ନିରୋଧ ଆଇନକୁ କଡ଼ାକଡ଼ି ଲାଗୁ କରିବା ନିତାନ୍ତ ଦରକାର ।

**ଉପସଂହାର** - ଶେଷରେ ଏତିକି କୁହାଯାଇପାରେ ଯେ, ଶିଶୁଶ୍ରମିକମାନଙ୍କ ପ୍ରତି ଉଚିତ ନ୍ୟାୟ ହେବ, ଯେତେବେଳେ ସେମାନଙ୍କୁ କାର୍ଯ୍ୟରେ ଲଗାଉଥିବା ବ୍ୟକ୍ତିଟି ନିଜ ହୃଦୟର ନିର୍ଦ୍ଦେଶ ଅନୁଯାୟୀ ପରିଚାଳିତ ହେବ ଓ ପ୍ରତ୍ୟେକ ଶିଶୁ ଭିତରେ ଜଣେ ଜଣେ ନିଜର ଶିଶୁଙ୍କର ପ୍ରତିଛବି ଦେଖିପାରିବ । ଏହି ସଚେତନତା ବ୍ୟକ୍ତିବିଶେଷଙ୍କ ଶୁଦ୍ଧ ଚିନ୍ତାଧାରାରୁ କ୍ଷରିତ ହେଲେ ଦେଶରେ ଶିଶୁ ଶ୍ରମିକ ପ୍ରଥାର ମୂଳୋତ୍ପାଟନ ହୋଇପାରିବ ବୋଲି ଆଶା କରାଯାଇପାରେ ।

ନଚେତ୍ ସରକାର ଯେପରି ବିଭିନ୍ନ କାର୍ଯ୍ୟକ୍ରମ ଯଥା- ସାକ୍ଷରତା ଅଭିଯାନ, ଏଡ୍‌ସ ସଚେତନତା, ପଲ୍‌ସ ପୋଲିଓ, ନିର୍ବାଚନ ଆଦିରେ ସକ୍ରିୟ ଭୂମିକା ତୁଲାନ୍ତି, ସେହିଭଳି ଶିଶୁ ଶ୍ରମିକ ଉଚ୍ଛେଦ ଆଇନକୁ କଡ଼ାକଡ଼ି ଭାବରେ କାର୍ଯ୍ୟକାରୀ କରାଇଲେ ଦେଶର ଶ୍ରମ ଅଭିଧାନରୁ ଶିଶୁଶ୍ରମିକ ଶବ୍ଦଟି ଉଠିଯିବ, ଏଥିରେ ସନ୍ଦେହ ନାହିଁ ।

ଶିକ୍ଷୟିତ୍ରୀ
କ୍ୱା.ନଂ- ୨ଆର୍ ବି ୧୭/୪
ୟୁନିଟ୍-୮, ଭୁବନେଶ୍ୱର - ୧୨



# ଓଡ଼ିଶାର ପୋଥି ବୈଭବ, ଏହାର ସଂରକ୍ଷଣ, ସମସ୍ୟା ଓ ସମାଧାନ

ଡଃ ଚନ୍ଦ୍ରଭାନୁ ପଟେଲ

**ସ**ମଗ୍ର ବିଶ୍ୱରେ ଭାରତ ସର୍ବାଧିକ ପୋଥି ପାଣ୍ଡୁଲିପିର ଗନ୍ତାଘର । ଏହି ପାଣ୍ଡୁଲିପିଗୁଡ଼ିକ ଭାରତର ବିଭିନ୍ନ ଭାଷାରେ ଧର୍ମ, ଦର୍ଶନ, ବିଜ୍ଞାନ, କଳା ଓ ସାହିତ୍ୟ ଇତ୍ୟାଦି ବିଷୟରେ ଲିଖିତ ହୋଇଅଛି । ଏଗୁଡ଼ିକ ତାଳପତ୍ର, କାଠ, କାଗଜ, ପଥର, ବାଉଁଶପତ୍ର, ରୂପା, ପିତ୍ତଳ, ବଲ୍କଳ ଓ ବସ୍ତ୍ର ପ୍ରଭୃତିରେ ଲିଖିତ ଓ ଖୋଦିତ ହୋଇ ଭାରତ ତଥା ବିଶ୍ୱର କୋଣ ଅନୁକୋଣରେ ରହିଅଛି । ଏହି ଅମୂଲ୍ୟ ପୋଥିଗୁଡ଼ିକ ମଧ୍ୟରୁ କେତେକ ନଷ୍ଟ ହୋଇଯାଇଥିବା ବେଳେ ବର୍ତ୍ତମାନ ଅନେକ ଧ୍ୱଂସାଭିମୁଖୀ । ଏହାର ସର୍ବେକ୍ଷଣ, ପଞ୍ଜିକରଣ, ରକ୍ଷଣାବେକ୍ଷଣ ଓ ଏଥିରେ ଥିବା ଲୁକ୍କାୟିତ ଜ୍ଞାନର ପରିପ୍ରକାଶ ଓ ପ୍ରଚାର ଉଦ୍ଦେଶ୍ୟରେ ଭାରତ ସରକାର ଜାତୀୟ ପାଣ୍ଡୁଲିପି ଅଭିଯାନ ପ୍ରତିଷ୍ଠା କରିଛନ୍ତି । ଏହି ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଦେଶ ବିଦେଶର ପାଣ୍ଡୁଲିପି ସହ ଜଡ଼ିତ ଥିବା ସଂସ୍ଥାମାନଙ୍କ ଦ୍ୱାରା ସାଧିତ ହେଉଛି । ଉପରୋକ୍ତ କାର୍ଯ୍ୟର ସଫଳ ରୂପାୟନ ନିମନ୍ତେ ଜାତୀୟ ପାଣ୍ଡୁଲିପି ଅଭିଯାନ ଏପର୍ଯ୍ୟନ୍ତ ଏଥିସହ ଜଡ଼ିତ ଥିବା କେତେକ ପ୍ରମୁଖ ସଂସ୍ଥାଗୁଡ଼ିକୁ ପାଣ୍ଡୁଲିପି ସମ୍ଭାର କେନ୍ଦ୍ର ଭାବରେ ଚିହ୍ନିତ କରିଛନ୍ତି । ଇନ୍ଦିରା ଗାନ୍ଧୀ ରାଷ୍ଟ୍ରୀୟ କଳା କେନ୍ଦ୍ର, ନୂଆଦିଲ୍ଲୀ, କେନ୍ଦ୍ରୀୟ ସଂସ୍ଥା ଭାବରେ ଚିହ୍ନିତ କରାଯାଇଛି । ରାଜ୍ୟ ସଂଗ୍ରହାଳୟର ଅଧୀକ୍ଷକ ଡକ୍ଟର ଚନ୍ଦ୍ରଭାନୁ ପଟେଲଙ୍କୁ ପ୍ରକଳ୍ପ-ସଂଯୋଜକ ଭାବରେ ମନୋନୀତ କରାଯାଇଛି । ଓଡ଼ିଶା ରାଜ୍ୟ ସଂଗ୍ରହାଳୟର କଳା ସଂରକ୍ଷଣ କେନ୍ଦ୍ରକୁ ପାଣ୍ଡୁଲିପି ସଂରକ୍ଷଣ କେନ୍ଦ୍ର ଭାବରେ ଚିହ୍ନିତ କରାଯାଇଛି । ଏ ସମସ୍ତ କାର୍ଯ୍ୟର ସଫଳ ରୂପାୟନ ନିମନ୍ତେ ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ପାଣ୍ଡୁଲିପି ସମ୍ଭାର କେନ୍ଦ୍ର, ରାଜ୍ୟର ବିଭିନ୍ନ ପ୍ରାନ୍ତରେ ଜନସଚେତନତା ଶିବିର, ପୋଥି ପଞ୍ଜିକରଣ କାର୍ଯ୍ୟ ପରିଚାଳନା କରୁଅଛି । ଏଥିସହ ବ୍ୟକ୍ତିବିଶେଷ ଓ ଅନୁଷ୍ଠାନମାନଙ୍କରୁ କେନ୍ଦ୍ର ସରକାରଙ୍କ ଅଧୀନରେ ନୂଆଦିଲ୍ଲୀଠାରେ ପ୍ରସ୍ତାବିତ ଏକ ଜାତୀୟ ପାଣ୍ଡୁଲିପି ଗ୍ରନ୍ଥାଗାର ପ୍ରତିଷ୍ଠା ନିମନ୍ତେ ପୋଥି ବିନା ମୂଲ୍ୟରେ ଗ୍ରହଣ କରୁଛନ୍ତି । ଏହି ପୋଥି ପ୍ରକଳ୍ପ ଅଧୀନରେ ନଭେମ୍ବର ୨୨ରୁ ୨୬, ୨୦୦୪ ତାରିଖ ମଧ୍ୟରେ ସମଗ୍ର ଓଡ଼ିଶାରେ ଏକ ବ୍ୟାପକ ପାଣ୍ଡୁଲିପି ସର୍ବେକ୍ଷଣ କାର୍ଯ୍ୟ କରାଯାଇଛି ଓ ପ୍ରାୟ ୩,୫୦,୦୦୦ ନୂତନ ପୋଥି ଠାବ କରାଯାଇଛି ।

ଓଡ଼ିଶା ଉତ୍କୃଷ୍ଟ ମୂଲ୍ୟବାନ ତାଳପତ୍ର ପୋଥି ସଂପଦକୁ ନେଇ ଯେତିକି ରୁଦ୍ଧିମନ୍ତ ଉତ୍ତର ଓଡ଼ିଶାର ଉପାନ୍ତ ଅଂଚଳରୁ ସଂଗୃହିତ ହୋଇଥିବା ପୋଥି ସମୂହକୁ ନେଇ ମଧ୍ୟ ସେତିକି ବୈଭବମୟ । ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ଏବଂ ବହୁ ବେସରକାରୀ ସଂସ୍ଥାରେ ଗଚ୍ଛିତ ଥିବା ବିଭିନ୍ନ ତାଳପତ୍ର ପୋଥି ପ୍ରାୟ ଦଶମ ଶତାବ୍ଦୀଠାରୁ ଓଡ଼ିଶାର ଐତିହ୍ୟ, ପ୍ରାଚୁର୍ଯ୍ୟ ଏବଂ ମହାନ୍ କଳା ପରମ୍ପରାର ଗାଥା ବହନ କରି ଆସୁଛି । ଏହା ବାଲେଶ୍ୱର ଜିଲ୍ଲାର ଗାନ୍ଧୀବେଢ଼ା ନିକଟରୁ ମିଳିଥିବା ଜୈନଭିକ୍ଷୁ କୁମାର ସେନଙ୍କ ଅଭିଲେଖରୁ ପ୍ରମାଣ ମିଳେ । ଓଡ଼ିଶାର ଐତିହ୍ୟ, ସଂସ୍କୃତି, କଳା ଓ କାରୁକାର୍ଯ୍ୟ ସଂପର୍କରେ ଏଗୁଡ଼ିକ ଯେ ଜ୍ଞାନର ଗନ୍ତାଘର, ଏଥିରେ ଦ୍ୱିରୁକ୍ତି ନାହିଁ । ଯେହେତୁ ଓଡ଼ିଶାରେ ତାଳପତ୍ର ବହୁଳ ଭାବରେ ଉପଲବ୍ଧ ହୁଏ, ତେଣୁ ଏଠାରେ ତାଳପତ୍ର ପୋଥି ପରମ୍ପରା କ୍ରମେ ଅଧିକରୁ ଅଧିକ ଲୋକପ୍ରିୟ ହେବାକୁ ଲାଗିଲା । ବିଭିନ୍ନ ବିଷୟବସ୍ତୁକୁ ଲୌହ ଲେଖନୀ ସାହାଯ୍ୟରେ ଖୋଦନ କରିବା ମଧ୍ୟ କ୍ରମେ ସହଜ ମନେ ହେଲା । ଓଡ଼ିଆ ଲିପିର ଗୋଲାକୃତି ଶୈଳୀ ଯୋଗୁଁ ଏହା ଉନ୍ନତମାନର ହେବା ସହଜ ହୋଇପାରିବା ସଂଗେ ସଂଗେ ଏହି ପରମ୍ପରା ଅଧୁନା ମଧ୍ୟ ଅପରିବର୍ତ୍ତିତ ରହିଛି ।

ସବୁଠାରୁ କୌତୁହଳର କଥା ହେଲା ଯେ, ଊନବିଂଶ ଶତାବ୍ଦୀରେ ବହୁ ସଂଖ୍ୟକ ପାଶ୍ଚାତ୍ୟ ଗବେଷକ ଓଡ଼ିଶାର ତାଳପତ୍ର ପୋଥି ପ୍ରତି ଆକୃଷ୍ଟ ହୋଇଥିବା ଜଣାପଡ଼େ । ରେଭରେଣ୍ଡ ଜେ. ଲଙ୍ଗଙ୍କ ଏସିଆଟିକ୍ ସୋସାଇଟି ଅଫ୍ ବେଙ୍ଗଲରେ ପ୍ରଥମ ଗବେଷଣାତ୍ମକ ପ୍ରବନ୍ଧ ପ୍ରକାଶ ପାଇଥିଲା ଏବଂ ପରେ ପରେ ମାକେଂଜି, ସାର. ଜନ୍.ବିମ୍ସ, ବାଲେଶ୍ୱରର ତତ୍କାଳୀନ ଜିଲ୍ଲାପାଳ ଆର୍.ଏଲ୍. ମିତ୍ର, ଏମ୍.ଏମ୍. ଚକ୍ରବର୍ତ୍ତୀ, ଏଚ୍.ପି. ଶାସ୍ତ୍ରୀ ଏବଂ ପ୍ରଫେସର ମେକ୍‌ଡୋନାଲ ପ୍ରଭୃତି ଓଡ଼ିଶାର ତାଳପତ୍ର ପୋଥି ପରମ୍ପରା ସଂପର୍କରେ ଗବେଷଣା କରି ଏହାର ବିସ୍ତୃତ ଉଜ୍ଜ୍ୱଳ ସଂସ୍କୃତି ଉପରେ ନୂତନ ଆଲୋକପାତ କରିଛନ୍ତି ।

୧୯୩୬ ମସିହାରେ ଓଡ଼ିଶା ଯେତେବେଳେ ଏକ ସ୍ୱତନ୍ତ୍ର ପ୍ରଦେଶ ଭାବେ ସ୍ୱୀକୃତ ହେଲା, ସେତେବେଳେ ସ୍ଥାନୀୟ ପଣ୍ଡିତମାନଙ୍କ ସାହାଯ୍ୟରେ ଓଡ଼ିଶା ତଥା ଉତ୍ତର ଓଡ଼ିଶାର ଉପାନ୍ତ ଅଂଚଳ ଯଥା-

ମେଦିନାପୁର, ଖଡଗପୁର, ପୁରୁଲିଆ, ଦୀଘା, ଜଳେଶ୍ୱର ଓ ବାଲେଶ୍ୱର ପ୍ରଭୃତି ସ୍ଥାନରେ ସୁରକ୍ଷିତ ଥିବା ତାଳପତ୍ର ପୋଥିଗୁଡ଼ିକର ତାଲିକା ପ୍ରସ୍ତୁତ କରିବା ପାଇଁ ପଦକ୍ଷେପ ନିଆଗଲା । ଏହିଭଳି ପ୍ରାୟ ୧୫ ହଜାର ପୋଥିର ଏକ ତାଲିକା ପ୍ରସ୍ତୁତ କରାଗଲା । ତନ୍ମଧ୍ୟରୁ ଏଗାର ହଜାର ପୋଥି ସଂପ୍ରତି ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସୁରକ୍ଷିତ ହୋଇ ରଖାଯାଇଛି । ପରବର୍ତ୍ତୀ ସମୟରେ ପ୍ରଫେସର ଜି.ଏସ୍. ଦାଶ ଏବଂ ପ୍ରଫେସର ଏନ୍. ବାନାର୍ଜୀଙ୍କର ପ୍ରଚେଷ୍ଟାରେ ଓଡ଼ିଶା ସରକାରଙ୍କର ଶିକ୍ଷା ବିଭାଗ ପକ୍ଷରୁ ଅନେକଗୁଡ଼ିଏ ତାଳପତ୍ର ପୋଥି ସାରା ଓଡ଼ିଶାରୁ ସଂଗ୍ରହ କରାଯାଇଥିଲା । ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ, ପୂର୍ଣ୍ଣଚନ୍ଦ୍ର ରଥ ଏବଂ କେଦାରନାଥ ମହାପାତ୍ରଙ୍କ ପରି ଗବେଷକମାନେ ସରକାରୀ ଏବଂ ବ୍ୟକ୍ତିଗତ ଭାବରେ ଅନେକ ପୋଥି ସଂଗ୍ରହ କରି ଓଡ଼ିଶା ତଥା ଉପାନ୍ତ ଅଞ୍ଚଳର ପୋଥି ସଂପଦକୁ ବହୁ ଭାବରେ ସମୃଦ୍ଧ କରିଛନ୍ତି । ଏ ଦିଗରେ ପଣ୍ଡିତ ନୀଳମଣି ମିଶ୍ରଙ୍କ ଓଡ଼ିଶାକୁ ଦାନ ଅତୁଳନୀୟ । ସେ ପୋଥି ବିଭାଗର ସଂଗ୍ରହାଧ୍ୟକ୍ଷ ଥିବାବେଳେ ଅନେକ ପୋଥି ପୁନରୁଦ୍ଧାର କରି, ତା'ର ତାଲିକା ପ୍ରକାଶ କରିଥିଲେ ।

ଭାରତୀୟ ଦର୍ଶନରେ ଓଡ଼ିଆ ତାଳପତ୍ର ପୋଥି ଲେଖକମାନଙ୍କର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି । ବୌଦ୍ଧ ଧର୍ମର ପ୍ରସାର ପରଠାରୁ ଧର୍ମକୀର୍ତ୍ତି, କବି ଡିଣ୍ଡିମ, ଜୀବ ଦେବାଚାର୍ଯ୍ୟ, ଆଚାର୍ଯ୍ୟ ନୃସିଂହ ବାଜପେୟୀ, ବଳଦେବ ବିଦ୍ୟାଭୂଷଣ, ଇନ୍ଦ୍ରଭୂତି, ଲକ୍ଷ୍ମୀକରା ଆଦି ଭାରତୀୟ ଦାର୍ଶନିକମାନଙ୍କର ପୋଥି ଜଗତକୁ ଦାନ ଅତୁଳନୀୟ । ନବମ ଶତାବ୍ଦୀର ପୁରୁଷୋତ୍ତମ ଦେବଙ୍କ ରଚିତ ତ୍ରିକାଣ୍ଡ ସେଶ ଏବଂ ହାରାବଳୀ ଓ ମେଦିନୀ କରଙ୍କ ରଚିତ ମେଦିନୀ କୋଷ ଆଦି ଓଡ଼ିଆ ଅଭିଧାନ ଭାରତର ସର୍ବତ୍ର ପ୍ରସାର ଲାଭ କରିଛି ।

ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ବେଦ ଉପରେ ବିଶେଷ ପୋଥି ଦେଖିବାକୁ ମିଳେ ନାହିଁ । କାରଣ ଓଡ଼ିଶାର ଲୋକମାନେ ସାଧାରଣତଃ ରକ୍ଷଣଶୀଳ ହୋଇଥିବାରୁ ସେମାନେ ବ୍ୟକ୍ତିଗତ ପୋଥିଗୁଡ଼ିକୁ ଦାନ କରିବାକୁ ରାଜି ହୁଅନ୍ତି ନାହିଁ । ଏହି ପୋଥିର ବର୍ଣ୍ଣନା ଅନୁସାରେ ସେମାନେ ନାନାପ୍ରକାର ପୂଜା ଅର୍ଚ୍ଚନା କରିଥାନ୍ତି । ଏହି କାରଣରୁ ପ୍ରାୟ ପ୍ରତ୍ୟେକ ଓଡ଼ିଆ ଘରେ ବହୁ ସଂଖ୍ୟାରେ ତାଳପତ୍ର ପୋଥି ଦେଖିବାକୁ ମିଳେ । ଯଜୁର୍ବେଦ ଓ ଅଥର୍ବବେଦର କେତେକ ପୋଥି ପଶ୍ଚିମବଙ୍ଗର ମେଦିନୀପୁର ଜିଲ୍ଲାରୁ ସଂଗ୍ରହ କରାଯାଇଅଛି । ଏହି ପୋଥିଗୁଡ଼ିକ ପାଠ କଲେ ତାହା ଓଡ଼ିଆ ପୋଥି ଲେଖାଳୀମାନଙ୍କ ଦ୍ୱାରା ଲିଖିତ ବୋଲି ପରିଷ୍କାର ଜଣାପଡ଼େ ।

ପଞ୍ଚଦଶ ଏବଂ ଷୋଡଶ ଶତାବ୍ଦୀର ମଧ୍ୟବର୍ତ୍ତୀ ସମୟ ଓଡ଼ିଆ ଭାଷାର ସୁବର୍ଣ୍ଣଯୁଗ । ଏହି ସମୟରେ ରାମ ଓ କୃଷ୍ଣଙ୍କ ବିଷୟରେ ଅନେକ ରଚନା ଓଡ଼ିଆ ସାହିତ୍ୟରେ ସ୍ଥାନ ପାଇଥିଲା । ଓଡ଼ିଆ ଗବେଷକମାନେ ଏହି ସମୟରେ ଶହ ଶହ ସଂଖ୍ୟାରେ ଛାନ୍ଦ, କାବ୍ୟ ବୋଲି, ହାରାହାରି ପାଞ୍ଚ ହଜାର ଚଉତିଶା, ଏକ ଲକ୍ଷ ଚଉପଦୀ, କୋଡିଏ ହଜାର ପୋଇ, ପଚାଶରୁ ଊର୍ଦ୍ଧ୍ୱ କୋଇଲି ରଚନା କରିଥିଲେ । ପରବର୍ତ୍ତୀ କାଳରେ ଅନେକ କବି ଏହା ଦ୍ୱାରା ଅନୁପ୍ରାଣିତ ହୋଇ ଆହୁରି କେତେକ ମୂଲ୍ୟବାନ ପୋଥି ରଚନା କରିଥିଲେ । ପିତାମ୍ବର ଦେବଙ୍କର ଅଖିଳ ଚିନ୍ତାମଣି, କେଶବ ରଥଙ୍କର ଅନଙ୍ଗ ରାଗିଣୀ, ଶ୍ୟାମସୁନ୍ଦର ଦେବଙ୍କର ଅନୁରାଗ କଳ୍ପଲତା ଓ ରାମଚନ୍ଦ୍ର ପଟ୍ଟନାୟକଙ୍କ ହାରାବତୀ, ଏଗୁଡ଼ିକ ମଧ୍ୟରୁ ଅନ୍ୟତମ । ଇତିହାସକୁ ନେଇ ଅନେକ ତାଳପତ୍ର ପୋଥି ମଧ୍ୟ ଆମେ ଦେଖିବାକୁ ପାଉ । ଓଡ଼ିଆ ଗବେଷକମାନଙ୍କ ରଚିତ ଅନେକ ବେଙ୍ଗଲି ଏବଂ ହିନ୍ଦୀ ପୋଥି ମଧ୍ୟ ରହିଛି । ଓଡ଼ିଆ କବିମାନଙ୍କ ରଚିତ ବେଙ୍ଗଲି ପୋଥି ମଧ୍ୟରୁ ରାମଚନ୍ଦ୍ର ପଟ୍ଟନାୟକଙ୍କର କୃଷ୍ଣଲୀଳା, ଦ୍ୱାରିକା ଦାସଙ୍କର ମାନସ ମନ୍ଥନ, ଗୌରଚନ୍ଦ୍ର ପରିଚ୍ଛାଙ୍କର ଗୋବର୍ଦ୍ଧନ ଉତ୍ସବ, ପିଣ୍ଡିକା ଶ୍ରୀଚନ୍ଦନଙ୍କର ବସନ୍ତ ରାସ, ନଟବର ଦାସଙ୍କର ଦୋଳ ରାସ, ଜଗନ୍ନାଥ ଦାସଙ୍କର ଗଙ୍ଗା ମହାତ୍ମ୍ୟ ଅନ୍ୟତମ । ଏହା ବ୍ୟତୀତ ବର୍ତ୍ତମାନ ତେଲୁଗୁ, ତାମିଲ, ପାର୍ଶୀ, ଉର୍ଦ୍ଦୁ ଭାଷାରେ ବହୁ ପୋଥି ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂଗୃହିତ ହୋଇ ରହିଅଛି । ବେଦାର୍ଥ ପ୍ରବେଶ ଟୀକା, ଅଥର୍ବ ବେଦର ପିପ୍ପଲଦା ସଂହିତା, ନାମାବଳୀ ତନ୍ତ୍ର, ଦୁର୍ଗା ଜଣାଣ ଦୀପିକା, ଭୁବନେଶ୍ୱରୀ ପ୍ରକାଶ, ତାରିଣୀ କୁଳସୁଦ୍ଧା ତରଂଗିଣୀ, କ୍ରିତ୍ୟ କୈମୁଦି, ଗୀତା ପ୍ରକାଶ, ସଂଗୀତ ନାରାୟଣ, ସଂଗୀତ କଳ୍ପଲତା, ମଣିମାଳା ନାଟିକା, ରୁକ୍ମଣୀ ପରିଣୟ, ଗୀତଗୋବିନ୍ଦ, ଭରତାମୃତ୍ୟ, ମହାକାବ୍ୟ ଆଦି ଅନେକ ପୋଥି ସଂଗ୍ରହ କରାଯାଇ ଗବେଷକମାନଙ୍କର ଆବଶ୍ୟକତା ପାଇଁ ରଖାଯାଇଛି ।

ନିମ୍ନଲିଖିତ ସତାଇଶିଟି ବିଭାଗରେ ରାଜ୍ୟ ସଂଗ୍ରହାଳୟର ପୋଥି ସବୁକୁ ବିଭକ୍ତ କରାଯାଇଛି, ଯଥା- ବେଦ, ତନ୍ତ୍ର, ଜ୍ୟୋତିଷ, ଧର୍ମଶାସ୍ତ୍ର, ଆୟୁର୍ବେଦ, ଗଣିତ, ଶିଳ୍ପଶାସ୍ତ୍ର, ସଂଗୀତ, ଅଭିଧାନ, ବ୍ୟାକରଣ, ସଂସ୍କୃତ ପୁରାଣ, ସଂସ୍କୃତ କାବ୍ୟ, ଅଳଂକାର, ବେଙ୍ଗଲି (ସଂସ୍କୃତ), ବେଙ୍ଗଲି, ଦେବନାଗରୀ, ଓଡ଼ିଆ ପୁରାଣ, ଓଡ଼ିଆ କାବ୍ୟ, ଓଡ଼ିଆ ଗଦ୍ୟ ସାହିତ୍ୟ, ଓଡ଼ିଆ ଇତିହାସ, କାଗଜ ପୋଥି (ସଂସ୍କୃତ), କାଗଜ ପୋଥି (ଓଡ଼ିଆ), ନକଲ ପୋଥି, ଆରବିକ୍, ଦର୍ଶନ, ତେଲୁଗୁ ଏବଂ ଚିତ୍ରିତ ତାଳପତ୍ର ।

ଓଡ଼ିଶାର ବିଭିନ୍ନ ଅଂଚଳରେ ଅନେକ ପୋଥି ଉପଯୁକ୍ତ ଯତ୍ନ ଅଭାବରୁ ଗାଁଗହଳରେ ଅବହେଳିତ ଅବସ୍ଥାରେ ପଡ଼ି ରହିଛି । ଆମ ସାଂସ୍କୃତିକ ଐତିହ୍ୟ ବହନ କରୁଥିବା ସେହି ପୋଥିଗୁଡ଼ିକର, ବିଭିନ୍ନ ଅନୁଷ୍ଠାନ ତଥା ବ୍ୟକ୍ତି ସମୂହଙ୍କ ଦ୍ୱାରା ଉପଯୁକ୍ତ ଯତ୍ନ ନିଆଯାଇପାରିଲେ ଓଡ଼ିଶାର ତାଳପତ୍ର ପୋଥି ସଂପଦକୁ ଅକ୍ଷୁଣ୍ଣ ରଖାଯାଇ ପାରନ୍ତା ।

ଓଡ଼ିଶାରେ ବର୍ତ୍ତମାନ ଭାରତ ସରକାରଙ୍କର ପୋଥି ପାଣ୍ଡୁଲିପି ଅଭିଯାନ ରାଜ୍ୟ ସଂଗ୍ରହାଳୟ ଜରିଆରେ ଆରମ୍ଭ କରାଯାଇଛି । ଏହି ପ୍ରକଳ୍ପ ମାଧ୍ୟମରେ ଅଦ୍ୟାବଧି ୧,୧୦,୦୦୦ ହଜାରରୁ ଊର୍ଦ୍ଧ୍ୱ ନୂତନ ତାଳପତ୍ର ପୋଥି ସର୍ବେକ୍ଷଣ ଓ ପଞ୍ଜିକରଣ କରାଯାଇଛି । ଏହି

ସର୍ବେକ୍ଷଣ କାର୍ଯ୍ୟକ୍ରମ ବର୍ତ୍ତମାନ ଚାଲୁ ରହିଛି । ଏକ ପ୍ରାରମ୍ଭିକ ଆକଳନରୁ ସାରା ଭାରତରେ ୫୦ ଲକ୍ଷରୁ ଊର୍ଦ୍ଧ୍ୱ ଓ ଓଡ଼ିଶାରେ ୫ ଲକ୍ଷରୁ ଊର୍ଦ୍ଧ୍ୱ ତାଳପତ୍ର ପୋଥି ଥିବାର ପ୍ରାକ୍ ଆକଳନ କରାଯାଇଛି । ସର୍ବେକ୍ଷଣରୁ ଆହୁରି ମଧ୍ୟ ଜଣାଯାଇଛି ଯେ, ଖାଲି ତାଳପତ୍ର ନୁହେଁ ଅନ୍ୟାନ୍ୟ ମାଧ୍ୟମ ଯଥା- ତମ୍ବାପଟା, ରୂପାପଟା, ବାଉଁଶପତ୍ର, ବଳ୍କଳ, ହାତ ତିଆରି କାଗଜ ଚମଡ଼ା ତଥା ବସ୍ତ୍ର ଦେହରେ ମଧ୍ୟ ଅନେକ ପୋଥି ପାଣ୍ଡୁଲିପି ଥିବାର ଜଣାଯାଇଛି । ଏହି ସର୍ବେକ୍ଷଣ କାର୍ଯ୍ୟ ସଂପୂର୍ଣ୍ଣ ହେଲେ ଓଡ଼ିଶାର ପୋଥି ପାଣ୍ଡୁଲିପି ବୈଭବର ଅନେକ ନୂତନ ଦିଗନ୍ତ ଉନ୍ମୋଚିତ ହେବ ବୋଲି ଆଶା କରାଯାଏ ।

୨୦୦୩ ଫେବୃଆରୀ ମାସ ୭ ତାରିଖ ଦିନ ତତ୍କାଳୀନ ପ୍ରଧାନମନ୍ତ୍ରୀ ଏହି ଜାତୀୟ ପୋଥି ପାଣ୍ଡୁଲିପି ଅଭିଯାନକୁ ଆରମ୍ଭ କରିଛନ୍ତି । ଏହାର ଉଦ୍ଦେଶ୍ୟ କେବଳ ସରକାରୀ ସ୍ତରରେ ଥିବା ପୋଥି ପାଣ୍ଡୁଲିପି ନୁହେଁ ବେସରକାରୀ ଅନୁଷ୍ଠାନ ଓ ବ୍ୟକ୍ତିବିଶେଷମାନଙ୍କ ପାଖରେ ଥିବା ପୋଥି ପାଣ୍ଡୁଲିପିର ସର୍ବେକ୍ଷଣ, ପଞ୍ଜିକରଣ, ପ୍ରକାଶ ଓ ରକ୍ଷଣାବେକ୍ଷଣ । ଏହି କାର୍ଯ୍ୟ ସଂପାଦନା ପାଇଁ ଭାରତ ସରକାର ଦିଲ୍ଲୀସ୍ଥିତ ଇନ୍ଦିରା ଗାନ୍ଧୀ ରାଷ୍ଟ୍ରୀୟ କଳାକେନ୍ଦ୍ରକୁ କେନ୍ଦ୍ରୀୟ ସଂସ୍ଥା ଭାବରେ ଦାୟିତ୍ୱ ଦିଆଯାଇଥିବାବେଳେ ସମଗ୍ର ଭାରତବର୍ଷରେ ୨୪ ଗୋଟି ପାଣ୍ଡୁଲିପି ସମ୍ଭାର କେନ୍ଦ୍ର ଚିହ୍ନଟ କରାଯାଇଛି । ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ତନ୍ମଧ୍ୟରୁ ଅନ୍ୟତମ । ଏହା ଓଡ଼ିଶାରେ ତାଳପତ୍ର ପୋଥିର ସର୍ବେକ୍ଷଣ, ପଞ୍ଜିକରଣ ଓ ରକ୍ଷଣାବେକ୍ଷଣ ପାଇଁ କାର୍ଯ୍ୟରତ । ଏପର୍ଯ୍ୟନ୍ତ ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ୧୦,୦୦୦ ପୋଥିର ସଂରକ୍ଷଣ କରିଅଛି । ନଭେମ୍ବର ୨୨ ତାରିଖରୁ ୨୬ ତାରିଖ, ୨୦୦୪ ମସିହା ସମଗ୍ର ଓଡ଼ିଶାରେ ଏକ ସର୍ବେକ୍ଷଣ କରାଯାଇ ଲକ୍ଷାଧିକ ନୂଆ ପୋଥିର ସନ୍ଧାନ କରାଯାଇଛି । ପରବର୍ତ୍ତୀ ସମୟରେ ଏହାର ପଞ୍ଜିକରଣ ଓ ପର୍ଯ୍ୟାୟକ୍ରମେ ସଂରକ୍ଷଣ କରାଯିବ । ଭାରତବର୍ଷରେ ପଞ୍ଜିକରଣ, ସର୍ବେକ୍ଷଣ କ୍ଷେତ୍ରରେ ଓଡ଼ିଶା ସମସ୍ତ ରାଜ୍ୟଠାରୁ ବହୁ ଆଗରେ ଅଛି । ଏହି କାର୍ଯ୍ୟକ୍ରମର ସଫଳ ରୂପାୟନ ନିମନ୍ତେ ସରକାରୀ, ବେସରକାରୀ ସଂସ୍ଥା ଓ ବ୍ୟକ୍ତିବିଶେଷମାନଙ୍କର ସହଯୋଗ ଏକାନ୍ତ କାମ୍ୟ । ବର୍ତ୍ତମାନର ମୁଖ୍ୟ ସମସ୍ୟା ହେଉଛି ପୋଥି ରକ୍ଷଣାବେକ୍ଷଣ । ଓଡ଼ିଶାରେ ଥିବା କଳା ସଂରକ୍ଷଣ କେନ୍ଦ୍ରକୁ ଏହି ଗୁରୁଦାୟିତ୍ୱ ଦିଆଯାଇଛି । ନିକଟରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗକୁ ମଧ୍ୟ ସଂରକ୍ଷଣ ଦାୟିତ୍ୱ ଦିଆଯାଇଛି । ଏହି ସର୍ବେକ୍ଷଣ ଓ ପଞ୍ଜିକରଣ ଦ୍ୱାରା ଲୋକମାନଙ୍କ ମଧ୍ୟରେ ଏକ ନୂତନ ଜାଗରଣ ସୃଷ୍ଟି ହୋଇଛି, ଯାହାଦ୍ୱାରା ବ୍ୟକ୍ତିବିଶେଷମାନଙ୍କ ପାଖରେ ଥିବା ପୋଥି ପାଣ୍ଡୁଲିପିର ସଂରକ୍ଷଣ ସେମାନେ ନିଜେ ମଧ୍ୟ କରୁଛନ୍ତି । ଏହି ପୋଥି ପାଣ୍ଡୁଲିପିର ପଞ୍ଜିକରଣ ପରେ ଏହାର ପ୍ରକାଶନ ଓ ଏଥି ମଧ୍ୟରେ ଥିବା ଲୁକ୍କାୟିତ ଜ୍ଞାନ ଜନସାଧାରଣମାନଙ୍କ ବ୍ୟବହାରରେ ଲଗାଇବା ବର୍ତ୍ତମାନ ଅଭିଯାନର ଏକ ମୁଖ୍ୟ ଉଦ୍ଦେଶ୍ୟ । ଉଦାହରଣ ସ୍ୱରୂପ ରାଜ୍ୟ ସଂଗ୍ରହାଳୟରେ ଗଚ୍ଛିତ ଥିବା ଆୟୁର୍ବେଦିକ ପୋଥିର ପ୍ରକାଶନ ସହିତ ଏହାଦ୍ୱାରା କି କି ରୋଗର ନିରାକରଣ ହୋଇପାରିବ ତାହାର ଗବେଷଣା ଏବେ ଭାରତ ସରକାରଙ୍କ ଆୟୁର୍ବେଦିୟ ସଂସ୍ଥାଦ୍ୱାରା ଚାଲିଅଛି । ତେଣୁ କେବଳ ପ୍ରକାଶନ କରି ଦେଲେ ଯେ, କାର୍ଯ୍ୟ ଶେଷ ହୋଇଯିବ ତାହା ନୁହେଁ, ବରଂ ଏହା କିପରି ଲୋକମାନଙ୍କ ହିତରେ ଲାଗିପାରିବ ତାହା ବର୍ତ୍ତମାନ ମୁଖ୍ୟ ଉଦ୍ଦେଶ୍ୟ ହେବା ଉଚିତ । ସାରା ଓଡ଼ିଶାରେ ସର୍ବେକ୍ଷଣ ପରେ ପଶ୍ଚିମାଞ୍ଚଳର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଥିବା ପୋଥିଗୁଡ଼ିକର ପଞ୍ଜିକରଣ ଓ ସଂରକ୍ଷଣକୁ ପ୍ରାଥମିକତା ଦିଆଯାଇଛି ।

ଇତିମଧ୍ୟରେ ଉତ୍କଳ ବିଶ୍ୱ ବିଦ୍ୟାଳୟର ସଂସ୍କୃତ ବିଭାଗରେ ଏକ ପୋଥି ସଂରକ୍ଷଣ କେନ୍ଦ୍ର ଖୋଲା ଯିବାର ପ୍ରସ୍ତାବ ରହିଛି । ରାଜ୍ୟ ସଂଗ୍ରହାଳୟର ପୋଥି ସଂରକ୍ଷକ ଦଳ, ପୋଥି ଜନସଚେତନତା ଶିବିର ମାନଙ୍କରେ ବ୍ୟକ୍ତି ବିଶେଷଙ୍କ ବିଭିନ୍ନ ପୋଥି ସବୁକୁ ସଂରକ୍ଷିତ କରୁଛନ୍ତି ।

ଲୋକମାନେ କିପରି ନିଜର ପୋଥି ସବୁକୁ ପ୍ରାଥମିକ ସ୍ତରରେ ସଂରକ୍ଷଣ ଓ ମରାମତି କରିପାରିବେ ସେଥିପାଇଁ ପ୍ରଶିକ୍ଷଣ ଶିବିରମାନ ଆୟୋଜନ କରାଯାଉଛି । ଏହାର ଫଳସ୍ୱରୂପ ଗାଁଗଣ୍ଡାର ଅନେକ ଅମୂଲ୍ୟ ପୋଥି ସଂରକ୍ଷଣ ହୋଇ ସାରିଲାଣି । ଖାଲି ପୋଥି ସଂରକ୍ଷଣ ନୁହେଁ, ବରଂ ପୋଥି ଉପରେ ନୂଆ ଗବେଷଣା ଓ ପୋଥି ପଢ଼ିବା ପାଇଁ ମଧ୍ୟ କର୍ମଶାଳା ସବୁର ଆୟୋଜନ ରାଜ୍ୟ ସଂଗ୍ରହାଳୟ ଜରିଆରେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ କରାଯାଉଛି । ପୋଥି ସାଧାରଣତଃ ଉଇ, ଅସରପା, ଉକୁଣିଆ-ପୋକ, ବିଣ୍ଡା ବାନ୍ଧିବା, ଖରାରେ ଅଧିକ ସମୟ ପକେଇବା, କାଠପଟାରେ ଠିକ୍ ଭାବରେ ନରଖିବା ଓ ପାଠକ ବା ସଂଗ୍ରହାଧ୍ୟକ୍ଷଙ୍କ ଅସାବଧାନତା ପାଇଁ ନଷ୍ଟ ହୁଏ । ଆମେ କିଛି ସାବଧାନତାମୂଳକ ପଦକ୍ଷେପ (Preventive Measures) ନେଲେ ଅନେକ ଅମୂଲ୍ୟ ପୋଥି ସଂରକ୍ଷିତ କରିପାରିବା ।

ପରିଶେଷରେ ଆମେ ଆମର ପାଣ୍ଡୁଲିପିଗୁଡ଼ିକ ସହିତ ସଂପୃକ୍ତ ହେଲେ, ସମ୍ଭବତଃ ସେଗୁଡ଼ିକର ଉତ୍ତମ ରୂପେ ଯତ୍ନ ନେବାକୁ ସକ୍ଷମ ହୋଇପାରିବୁ । ଘରେ ଥିବା ପାଣ୍ଡୁଲିପିଗୁଡ଼ିକ ଅନେକ ସମୟରେ ଅତି ଭଲ ଅବସ୍ଥାରେ ଥାଏ । କାରଣ, ସେଗୁଡ଼ିକ ଏକ ବ୍ୟକ୍ତିଗତ ତତ୍ତ୍ୱାବଧାନରେ ଥାଏ । ହଜାର ହଜାର ସଂଖ୍ୟାରେ ପାଣ୍ଡୁଲିପି ସଂଗ୍ରହ କରିଥିବା ଅନୁଷ୍ଠାନମାନଙ୍କରେ ସେଗୁଡ଼ିକୁ ରକ୍ଷଣାବେକ୍ଷଣ କରିବା ତାଙ୍କ ପକ୍ଷେ ଏକ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ । ଜନସାଧାରଣ, କଳା ସଂରକ୍ଷଣକଗଣ, ବିଦ୍ୟାର୍ଥୀଗଣ ଏବଂ ନୀତିଜ୍ଞମାନେ ଏହି ଅନୁଷ୍ଠାନମାନଙ୍କୁ ସମର୍ଥନ ଦେଲେ ପାଣ୍ଡୁଲିପିଗୁଡ଼ିକର ଉପଯୁକ୍ତ ଯତ୍ନ ନିଆଯାଇପାରିବ ।

ଅଧ୍ୟକ୍ଷ
ରାଜ୍ୟସଂଗ୍ରହାଳୟ, ଭୁବନେଶ୍ୱର

# ମିଶନ ଶକ୍ତିର ସଫଳତା

ସୌରଜିତ ଦାସ

**ବ**ହୁ ପୁରାଣ ଯୁଗରୁ ମହିଳାମାନଙ୍କୁ ଅବଳା-ଦୁର୍ବଳା କହି ଆସୁଥିବା ବେଳେ ବିଂଶଶତାବ୍ଦୀରେ ଏହାର ବିରାଟ ପରିବର୍ତ୍ତନ ଘଟିଛି । ମହିଳାମାନେ ଆଜି ଏକ ଏପରି ମୋଡ଼ରେ ଆସି ପହଞ୍ଚିଛନ୍ତି, ଯେଉଁଠାରୁ ଆଉ ପଛକୁ ଫେରି ଚାହିଁବାର ଅବକାଶ ନାହିଁ । ମହିଳାମାନେ ଆଜି ନିଜକୁ ଆଉ ଅସହାୟ ମଣୁ ନାହାନ୍ତି, ଅଧିକନ୍ତୁ ସେମାନେ ଆଜି ପୁରୁଷଙ୍କ ସହିତ ସବୁ କ୍ଷେତ୍ରରେ ସମକକ୍ଷ ହେଲେଣି । ଏହା ସରକାରଙ୍କ ବହୁମୁଖୀ କାର୍ଯ୍ୟକ୍ରମ ମଧ୍ୟରେ ପରିସ୍ଫୁଟ ହୋଇପାରିଛି । ଏହାର ମୂଳରେ ରହିଛି 'ମିଶନ ଶକ୍ତି' ।

୨୦୦୧ ମସିହା ଆନ୍ତର୍ଜାତିକ ମହିଳା ଦିବସ ଅବସରରେ ମିଶନ ଶକ୍ତି ନାମକ ସ୍ୱୟଂ ସହାୟକ ଗୋଷ୍ଠୀ ଯୋଜନା ଆରମ୍ଭ କରାଯାଇଥିଲା ଏବଂ ଏହି ବର୍ଷଟିକୁ 'ମହିଳା କ୍ଷମତାପନ୍ନ' ବର୍ଷ ଭାବେ ରାଜ୍ୟ ସରକାରଙ୍କ ପକ୍ଷରୁ ଘୋଷଣା କରାଯାଇଥିଲା । ବର୍ତ୍ତମାନ ରାଜ୍ୟରେ ମହିଳାମାନଙ୍କ ଆର୍ଥିକ ଅଭିବୃଦ୍ଧି ସହିତ ସେମାନଙ୍କୁ ସବୁ କ୍ଷେତ୍ରରେ ଉନ୍ନତ ଓ ଆତ୍ମନିର୍ଭରଶୀଳ କରିବା ପାଇଁ ସ୍ୱୟଂ ସହାୟକ ଗୋଷ୍ଠୀଗୁଡ଼ିକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିପାରିଛି । ମିଶନ୍ ଶକ୍ତି କାର୍ଯ୍ୟକ୍ରମ ମାଧ୍ୟମରେ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀର ସଦସ୍ୟମାନଙ୍କ ଆର୍ଥିକ ଅଭିବୃଦ୍ଧି ପାଇଁ ସେମାନଙ୍କୁ ଛେଳି ପାଳନ, ଗୋ-ପାଳନ, କୁକୁଡ଼ା ପାଳନ, ଫଳଚାଷ, ମତ୍ସ୍ୟ ଚାଷ ତଥା ଶ୍ରମଭିତ୍ତିକ କାର୍ଯ୍ୟକ୍ରମ ସହିତ କିରୋସିନି ଓ ରନ୍ଧନଗ୍ୟାସ ବିକ୍ରୟ ନିମନ୍ତେ ସକ୍ଷମ କରାଇବା ପାଇଁ ରାଜ୍ୟ ସରକାର ପଦକ୍ଷେପ ନେଇଥିବାବେଳେ ସ୍ୱୟଂ ସହାୟକ ଗୋଷ୍ଠୀଗୁଡ଼ିକୁ ଆର୍ଥିକ କ୍ରିୟାଶୀଳ କରିବା ପାଇଁ ବିଭିନ୍ନ ବ୍ୟାଙ୍କମାନଙ୍କ ସହିତ ଆର୍ଥିକ ସହାୟତା ପାଇଁ ପଦକ୍ଷେପ ନିଆଯାଉଛି । ବିଗତ ୪ ବର୍ଷ ମଧ୍ୟରେ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀଗୁଡ଼ିକଠାରୁ ୯୬ କୋଟି ଟଙ୍କା ସଞ୍ଚୟ ଆକାରରେ ସଂଗୃହିତ ହୋଇଥିବାବେଳେ ସେମାନଙ୍କ ମଧ୍ୟରୁ ୯୭ ହଜାର ୩୯୮ଟି ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ୨୧୨ କୋଟି ଟଙ୍କା ପ୍ରଦାନ କରାଯାଇଥିବା ସମୀକ୍ଷା ସୂତ୍ରରୁ ପ୍ରକାଶ ।

ମିଶନ ଶକ୍ତି ଆରମ୍ଭର ପ୍ରାଥମିକ ସ୍ତରରେ ୩୦ ହଜାର ସଂଖ୍ୟକ ସ୍ୱୟଂ ସହାୟକ ଗୋଷ୍ଠୀକୁ ପଞ୍ଜିକୃତ କରାଯାଇଥିବାବେଳେ,



ବର୍ତ୍ତମାନ ଏହା ବୃଦ୍ଧିପାଇ ଏବେ ୧ ଲକ୍ଷ ୪୨ ହଜାରରେ ପହଞ୍ଚିଛି । ଏଥିରେ ୧୮ ଲକ୍ଷ ସଦସ୍ୟା ଅଛନ୍ତି । ଏହି ଯୋଜନା ମାଧ୍ୟମରେ ମହିଳାମାନଙ୍କୁ କମ୍ପ୍ୟୁଟର ଶିକ୍ଷାଦାନ ପାଇଁ ୧୦୮୦ ଜଣଙ୍କୁ ଚିହ୍ନଟ କରାଯାଇଛି । ଆନ୍ଧ୍ରପ୍ରଦେଶରେ ଖୋଲା ଯାଇଥିବା ଶିକ୍ଷା ପ୍ରତିଷ୍ଠାନ ଢାଞ୍ଚାରେ ଓଡ଼ିଶାରେ ଏକ ଶିକ୍ଷା ପ୍ରତିଷ୍ଠାନ ଖୋଲାଯିବ ବୋଲି ରାଜ୍ୟ ସରକାର ସ୍ଥିର କରିଥିବା ଜଣାପଡ଼ିଛି । ରାଜ୍ୟର ବିଭିନ୍ନ ସ୍ୱୟଂ ସହାୟକ ଗୋଷ୍ଠୀ ପଞ୍ଚାୟତିରାଜ ଓ କୃଷି ଉଦ୍ୟାନ ବିଭାଗରୁ ସହାୟତା ନେଇ ମାଛଚାଷ ଏବଂ କୃଷି ଉଦ୍ୟାନ ପ୍ରକ୍ରିୟାରେ ସଂଶ୍ଳିଷ୍ଟ ହୋଇ ଯେଉଁ ସଫଳତା ଲାଭ କରିଛି, ତାହା ରାଜ୍ୟ ସରକାରଙ୍କ ପାଇଁ ଏକ ବଳିଷ୍ଠ ପଦକ୍ଷେପ । ସେହିଭଳି ସ୍ୱୟଂ ସହାୟକ ଗୋଷ୍ଠୀ ଦ୍ୱାରା ପ୍ରସ୍ତୁତ ଫିନାଇଲ୍ ଓ କୀଟନାଶକ ଔଷଧଗୁଡ଼ିକ କିଣିବା ପାଇଁ ସ୍ୱାସ୍ଥ୍ୟ ବିଭାଗ ଓ ନଗର ଉନ୍ନୟନ ବିଭାଗକୁ ସରକାର ନିର୍ଦ୍ଦେଶ ଦେବା ସହିତ ଏହାର ଉତ୍ପାଦନ ଅଧିକରୁ ଅଧିକ ପାଇଁ ପରାମର୍ଶ ଦେଇଛନ୍ତି । ସ୍ୱୟଂ ସହାୟକ ଗୋଷ୍ଠୀଗୁଡ଼ିକୁ ସମ୍ପୃକ୍ତ ବିଭାଗ ପକ୍ଷରୁ ଋଣ ପ୍ରଦାନ କରିବା ପାଇଁ ନିର୍ଦ୍ଦିଷ୍ଟ ପଦକ୍ଷେପ ନେବା ନିମନ୍ତେ ସରକାରଙ୍କ ପକ୍ଷରୁ ପରାମର୍ଶ ଦିଆଯାଇଛି ।

ମହିଳାମାନଙ୍କର ମତ୍ସ୍ୟ ବିକାଶ ପ୍ରତି ଆଗ୍ରହ ଓ ସଫଳତା ଉପଲବ୍ଧି କରି ଗଞ୍ଜାମ ଜିଲ୍ଲାର ଜିଲ୍ଲା ଅଧିକାରୀଙ୍କ ଦ୍ୱାରା ମତ୍ସ୍ୟ ଉତ୍ପାଦନ

ବୃଦ୍ଧି ନିମନ୍ତେ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ ପାଇଁ ଉତ୍ସାହିତ କରାଯାଉଛି । ମତ୍ସ୍ୟ ବିକାଶ ନିମନ୍ତେ ୧୧ ଗୋଟି ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ମାଧ୍ୟମରେ ୧୬୫ ଜଣ ସଦସ୍ୟାଙ୍କୁ ନେଇ ମା' ଗଙ୍ଗାଦେବୀ ମହିଳା ସାମୁଦ୍ରିକ ମତ୍ସ୍ୟ ସମବାୟ ସମିତି ଗଠନ କରାଯାଇଛି । ଏହି ସମିତିର ସଭ୍ୟାମାନେ ମାଛରୁ ଶୁଖୁଆ ପ୍ରସ୍ତୁତ କରି ବିକ୍ରୟ ମାଧ୍ୟମରେ ନିଜର ଜୀବିକା ନିର୍ବାହ, ଉପାର୍ଜନ ଓ ଆର୍ଥିକ ମାନଦଣ୍ଡ ବୃଦ୍ଧିରେ ସହାୟକ ହୋଇପାରିଛନ୍ତି । ଏହାଛଡ଼ା ସ୍ୱର୍ଣ୍ଣଜୟନ୍ତୀ ଗ୍ରାମ୍ୟ ସ୍ୱରୋଜଗାର ଯୋଜନା ମାଧ୍ୟମରେ ମତ୍ସ୍ୟଚାଷର ବିକାଶ ନିମନ୍ତେ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀମାନଙ୍କୁ ଅଗ୍ରାଧିକାର ଦିଆଯାଉଛି । ପଞ୍ଚାୟତ ପୋଖରୀଗୁଡ଼ିକୁ ସ୍ୱୟଂ ସହାୟକ ଗୋଷ୍ଠୀଗୁଡ଼ିକ ଦୀର୍ଘମିଆଦୀ ସୂତ୍ରରେ ନିଲାମ ଦିଆଯାଇ ମତ୍ସ୍ୟଚାଷ ପାଇଁ ଉତ୍ସାହିତ କରାଯାଉଛି ।

କେନ୍ଦୁଝର ଜିଲ୍ଲାରେ ସ୍ୱୟଂ ସହାୟକ ଗୋଷ୍ଠୀ ସଭ୍ୟାମାନଙ୍କର ପ୍ରବଳ ଆଗ୍ରହ ଓ ଉଦ୍ଦୀପନା ଥିବାର ପରିଲକ୍ଷିତ ହୋଇଛି । ମା' ବୃନ୍ଦାବତୀ ମହିଳା ସଂଘ ନାମକ ଏକ ସ୍ୱୟଂ ସହାୟକ ଗୋଷ୍ଠୀ ଚଳିତ ବର୍ଷ କେନ୍ଦୁଝର ଜିଲ୍ଲାର ଶ୍ରେଷ୍ଠ ସ୍ୱୟଂ ସହାୟକ ଗୋଷ୍ଠୀ ଭାବେ ଯୋଗ୍ୟ ବିବେଚିତ ହୋଇ କେନ୍ଦୁଝରଠାରେ ଆୟୋଜିତ ଜିଲ୍ଲାସ୍ତରୀୟ, ସାଧାରଣତନ୍ତ୍ର ଦିବସ ଉତ୍ସବ ପାଳନ ଅବସରରେ ସୂଚନା ଓ ଲୋକ ସଂପର୍କ, କ୍ରୀଡ଼ା ଓ ଯୁବସେବା ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକଙ୍କ ଦ୍ୱାରା ପୁରସ୍କୃତ ହୋଇଛନ୍ତି । ଉକ୍ତ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ୧୯୯୯ ମସିହାରେ ୧୧ ଜଣ ଗ୍ରାମୀଣ ମହିଳାଙ୍କୁ ନେଇ ବାଲିଯୋଡ଼ି ଗ୍ରାମଠାରେ କନକଲତା ଖଣ୍ଡା ଓ କାଦମ୍ବିନୀ ନାୟକଙ୍କ ନେତୃତ୍ୱରେ ଆରମ୍ଭ କରାଯାଇଥିଲା । ସଞ୍ଚୟ ଓ ଋଣ ପ୍ରଦାନ ତଥା ଋଣ ମାଧ୍ୟମରେ ସଦସ୍ୟାମାନଙ୍କର ପାରିବାରିକ ବିକାଶ ସଂଗେସଂଗେ ଗ୍ରାମର ବିଭିନ୍ନ ସାମାଜିକ କାର୍ଯ୍ୟ କରିବା, ବିପର୍ଯ୍ୟୟ ସମୟରେ ଜନସାଧାରଣଙ୍କୁ ରିଲିଫ୍ କାର୍ଯ୍ୟରେ ସାହାଯ୍ୟ କରିବା ପ୍ରଭୃତି କାର୍ଯ୍ୟରେ ନିଜକୁ ନିୟୋଜିତ କରିଥାନ୍ତି । ଏହାଛଡ଼ା ହାତୀ ଉପଦ୍ରବରୁ ବାଲିଯୋଡ଼ି ଗ୍ରାମବାସୀଙ୍କୁ ରକ୍ଷା କରିବା ସହିତ ଗ୍ରାମର ସର୍ବାଙ୍ଗୀନ ଉନ୍ନତି କରିବାରେ ସହାୟକ ହୋଇପାରୁଛନ୍ତି । ମହିଳା ସଦସ୍ୟାମାନଙ୍କ ସଞ୍ଚୟ ଓ ଋଣ ମାଧ୍ୟମରେ ବିକାଶର କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବା ସହିତ ଆୟ ସୃଷ୍ଟିକାରୀ କାର୍ଯ୍ୟକ୍ରମକୁ ଆଗେଇ ନେବା ପାଇଁ ନିଜକୁ ନିୟୋଜିତ କରିପାରିଛନ୍ତି । ସ୍ୱୟଂ ସହାୟକ ଗୋଷ୍ଠୀର ଏହି କାର୍ଯ୍ୟକ୍ରମକୁ ଘଟଗାଁ ବ୍ଲକ୍ ପ୍ରଶାସକ ପ୍ରଶଂସା କରିବା ସଂଗେସଂଗେ, ସେମାନଙ୍କୁ ସ୍ୱର୍ଣ୍ଣ ଜୟନ୍ତୀ ଗ୍ରାମ୍ୟ ସ୍ୱରୋଜଗାର ଯୋଜନାରେ ସାମିଲ କରାଇ ବିଭିନ୍ନ ବ୍ୟାଙ୍କ ମାଧ୍ୟମରେ ଛେଳି ପାଳନ କରିବା ପାଇଁ ରିହାତି ସହ ଋଣ ଯୋଗାଇ ଦେବାର ବ୍ୟବସ୍ଥା କରିଛନ୍ତି । ସ୍ୱୟଂ ସହାୟକ ଗୋଷ୍ଠୀର ମହିଳା ସଦସ୍ୟାମାନେ ଉକ୍ତ ଋଣର ସୁବିନିଯୋଗ କରି ବିକାଶ ଦିଗରେ ସହାୟକ ହୋଇପାରିଛନ୍ତି । ଏ ଦିଗରେ କେନ୍ଦୁଝର ଜିଲ୍ଲାର ଗ୍ରାମ୍ୟ ଉନ୍ନୟନ ସଂସ୍ଥା ଓ ବ୍ୟାଙ୍କ ଅଫ୍ ଇଣ୍ଡିଆ ସହଯୋଗରେ ସଫଳ ରୂପାୟନ ନେଇପାରିଛି ।

ସ୍ୱାବଲମ୍ୱନଶୀଳ ସମାଜ ଗଠନ ଲକ୍ଷ୍ୟରେ ସରକାର ମହିଳାମାନଙ୍କର ସାମଗ୍ରିକ ବିକାଶ ଓ ମହିଳା ସଶକ୍ତିକରଣ ଉପରେ ସର୍ବାଧିକ ଗୁରୁତ୍ୱ ଆରୋପ କରୁଛନ୍ତି । ରାଜ୍ୟରେ ମିଶନ୍ ଶକ୍ତିର ସଫଳତା ପାଇଁ ମହିଳାମାନଙ୍କର ପ୍ରତ୍ୟକ୍ଷ ଅଂଶ ଗ୍ରହଣକୁ ପ୍ରୋତ୍ସାହନ ଦିଆଯାଇ ସଞ୍ଚୟ ଓ ଅନ୍ୟାନ୍ୟ ଆୟବୃଦ୍ଧିକାରୀ କାର୍ଯ୍ୟରେ ସେମାନଙ୍କୁ ସଂଶ୍ଳିଷ୍ଟ କରାଯିବା ପାଇଁ ପ୍ରୟାସ ଜାରି ରହିଛି ।

ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀ
ଭୁବନେଶ୍ୱର

---

# ଓଡ଼ିଶା ରେଫରେନ୍ସ ଆନୁଆଲ - ୨୦୦୪

ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସଂପର୍କ ବିଭାଗ ପକ୍ଷରୁ 'ଓଡ଼ିଶା ରେଫରେନ୍ସ ଆନୁଆଲ୍ - ୨୦୦୪ ପ୍ରକାଶ ପାଇଛି । ଗତ ଅପ୍ରେଲ ଏକ ତାରିଖ ଦିନ ପବିତ୍ର ଉତ୍କଳ ଦିବସ ପାଳନ ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଏହାକୁ ଆନୁଷ୍ଠାନିକଭାବେ ଉନ୍ମୋଚନ କରିଥିଲେ । ୬୦୦ ପୃଷ୍ଠାର ଏହି ପୁସ୍ତକରେ ଓଡ଼ିଶା ସାହିତ୍ୟ, ସଂସ୍କୃତି, କଳା, ଭାସ୍କର୍ଯ୍ୟ, ଜନଜୀବନ ଏବଂ ବରପୁତ୍ରମାନଙ୍କ ଜୀବନୀ ସମେତ ୪୧ଟି ବିଷୟ ଏବଂ ଅନୁଚ୍ଛେଦରେ ରାଜନୈତିକ, ପ୍ରଶାସନିକ, ସଂପ୍ରଦାୟ, ବିଧାନସଭା, ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ, ମନ୍ତ୍ରିମଣ୍ଡଳ, ଶିକ୍ଷାନୁଷ୍ଠାନ, ଗଣମାଧ୍ୟମ, ସରକାରୀ ବିଭାଗ, ସମ୍ବାଦପତ୍ର, ଅର୍ଥନୀତି ଓ ପ୍ରଗତି ଆଦି ୭୧ଟି ବିଷୟ ସ୍ଥାନ ପାଇଛି । ସୂଚନା ଓ ଲୋକ ସଂପର୍କ ବିଭାଗର କମିଶନର ତଥା ଶାସନ ସଚିବ ଶ୍ରୀ ଦିଗମ୍ବର ମହାନ୍ତି ଓ ନିର୍ଦ୍ଦେଶକ ଶ୍ରୀ ବୈଷ୍ଣବ ପ୍ରସାଦ ମହାନ୍ତିଙ୍କ ଦିଗଦର୍ଶନରେ, ଉପନିର୍ଦ୍ଦେଶକ ତଥା ଉପଶାସନ ସଚିବ ଶ୍ରୀ ତାରାକାନ୍ତ ମହାନ୍ତିଙ୍କ ବଳିଷ୍ଠ ସଂପାଦନାରେ ପ୍ରକାଶିତ ଏହି ପୁସ୍ତକ ଛାତ୍ର, ଛାତ୍ରୀ, ବୁଦ୍ଧିଜୀବୀ ଓ ଗବେଷକମାନଙ୍କ ନିମନ୍ତେ ଅତ୍ୟନ୍ତ ଉପାଦେୟ ହୋଇପାରିବ ଏବଂ ଓଡ଼ିଶା ସଂପର୍କରେ ଅନେକ କିଛି ତଥ୍ୟ ମିଳିପାରିବ । ସୂଚନା ଓ ଲୋକ ସଂପର୍କ ବିଭାଗର ଏହା ଏକ ଉଲ୍ଲେଖନୀୟ ପ୍ରକାଶନ ।

# ପ୍ରାଗୈତିହାସିକ ରାୟଗଡ଼

ପ୍ରଫେସର ପ୍ରସନ୍ନ କୁମାର ଛୋଟରାୟ

ଦିବସର ବିଳମ୍ବିତ ପ୍ରହର । ଅନୁସନ୍ଧାନ ପ୍ରାୟ ଶେଷ ହେବାକୁ ଯାଉଛି, ଦୃଷ୍ଟିଗୋଚର ହେଲା ଗୋଟିଏ ଭିନ୍ନ ଶ୍ରେଣୀର ପ୍ରସ୍ତର ଖଣ୍ଡ । ଝରଣାର ଜଳସ୍ରୋତ ନିକଟରେ ପଡ଼ିଥିବା ଯୋଗୁଁ କାଦୁଅ ଲାଗିଥାଏ । ଲକ୍ଷ୍ୟ କଲାଭଳି କୌଣସି ସଙ୍କେତ ଦେଖାଯାଉ ନଥିଲା ତଥାପି ଦୀର୍ଘ ପ୍ରତୀକ୍ଷାର ଅବସନ୍ନତାକୁ ଭଙ୍ଗ କରି ମନରେ ସଞ୍ଚାରିତ ହେଲା କ୍ଷୀଣ ଆଶା । ମନେହେଲା ପରିଶ୍ରମ ନିଷ୍ଫଳ ହେବ ନାହିଁ । ସନ୍ଧ୍ୟା ପ୍ରାୟ ଆସନ୍ନ । ତେଣୁ ସ୍ଥାନ ତ୍ୟାଗ କରିବାକୁ ପଡ଼ିଲା । ପରୀକ୍ଷା ନିରୀକ୍ଷା କଲାପରେ ଜଣାଗଲା ଉକ୍ତ ଶିଳାଖଣ୍ଡଟି ଏକ ପ୍ରାଗୈତିହାସିକ ପ୍ରସ୍ତର ଉପକରଣର ମୂଳ ପିଣ୍ଡ ବା ମଞ୍ଜି (Core) । ଶିଳାଖଣ୍ଡଟି ଭାରି ଶକ୍ତ । ବର୍ଣ୍ଣ ପୀତରୁ, ପୀତ ମିଶ୍ରିତ ଲାଲ । ଗୋଟିଏ ଅଂଶରେ କୃଷ୍ଣ ବର୍ଣ୍ଣର ଛଉ ଭଳି ଦାଗ । ଦେହରେ କେତେଗୋଟି ଛୋଟ ଛୋଟ ଛିଦ୍ର ରହିଛି । ନମୁନା ଖଣ୍ଡଟି ଚର୍ଟ ଜାତୀୟ ଶିଳା ହେବ ବୋଲି ଅନୁମାନ । ଝରଣାର ଜଳସ୍ରୋତରେ ଗଡ଼ି ଗଡ଼ି ଆସିଥିବା ଯୋଗୁଁ ପ୍ରସ୍ତର ଖଣ୍ଡର ଧାର ଘୋରି ହୋଇ ଯାଇଛି । ବର୍ଣ୍ଣରେ ମଳିନତା ସହ ରାସାୟନିକ ପ୍ରକ୍ରିୟାର ଛାପ । ବୋଧହୁଏ ଝରଣାର ଉପର ମୁଣ୍ଡରୁ ଗଡ଼ି ଗଡ଼ି ଆସିଛି, ରାୟଗଡ଼ ସହର ଉପକଣ୍ଠସ୍ଥ ସାଙ୍କେଶ ପର୍ଯ୍ୟନ୍ତ । ମଞ୍ଜିଟିକୁ ତନ୍ନ ତନ୍ନ କରି ନିରୀକ୍ଷଣ କଲାପରେ ଜଣାଗଲା ତା ଦେହରୁ କ୍ଷୁଦ୍ରାକାର ଶଲକନ୍ ବା ଛାଲି ବାହାର କରାଯାଇଛି । ଗୋଟିଏ ଅଂଶରୁ ପତ୍ରାକାର ଶଲକନ୍ ଉତ୍କୀର୍ଣ୍ଣ କରାଯାଇଛି । ମଞ୍ଜି ଦେହରେ ତା'ର ସ୍ପଷ୍ଟ ଛାପ ରହିଛି । ଉକ୍ତ ଛାପ ମଧ୍ୟରେ ଅବନତ ସଂଘାତ ଅର୍ଦ୍ଧଶଙ୍କୁ (Negative bulb of percussion) ନାମରେ ପରିଚିତ ଖାଲୁଆ ଅଂଶ ଦୃଷ୍ଟିଗୋଚର ହେଉଛି । ଶଲକନ୍‌ର ଆକାର ଗୋଟିଏ ବଡ଼ରୋହି ମାଛର କାତି ସଦୃଶ୍ୟ । ଏହାର ଗୋଟିଏ ପାର୍ଶ୍ୱ ମୁନିଆ ଏବଂ ଅପର ପାର୍ଶ୍ୱଟି ଗୋଲାକାର । ଶିଙ୍ଗ, ଅସ୍ଥି କିମ୍ବା କାଷ୍ଠରେ ନାଳ ସଦୃଶ୍ୟ ଗର୍ତ୍ତ ଖନନ କରି ଉକ୍ତ ଶଲକନ୍‌ଗୁଡ଼ିକୁ ଧାଡ଼ିକ୍ରମରେ ବସାଇ ଦିଆଯାଏ । ମୁନିଆ ଅଂଶଗୁଡ଼ିକ ଉପରକୁ ବାହାରି ଥିବା ଯୋଗୁଁ ତାହା କରତ ବା ଦାଆର କାର୍ଯ୍ୟ କରୁଥିଲା । ଏହା ସାହାଯ୍ୟରେ ବନ୍ୟ ଶସ୍ୟ କର୍ତ୍ତନ କରାଯାଉ ଥିଲା । ଶଲକନ୍ ଓ ବେଣ୍ଟର ସଂଯୋଗରେ ନିର୍ମିତ ହୋଇଥିବା ଯୋଗୁଁ ଏହାକୁ ଯୌଗିକ ଉପକରଣ ଶ୍ରେଣୀରେ ଅନ୍ତର୍ଭୁକ୍ତ କରାଯାଏ । ମଞ୍ଜିର ଅନ୍ୟ ଏକ ପାର୍ଶ୍ୱରୁ ଛୋଟ କଳସ ଆକୃତିର ଅଳ୍ପ ସ୍ଥୂଳ ତଥା କ୍ଷୁଦ୍ର ଶଲକନ୍ ବାହାର କରାଯାଇଛି । ଏହାବ୍ୟତୀତ ଦୁଇ ଗୋଟି ସ୍ଥୂଳ, ଗୋଟିଏ ଦନ୍ତ ସଦୃଶ୍ୟ ସୂକ୍ଷ୍ମ ମୁନିଆ ଏବଂ ଗୋଟିଏ ଅର୍ଦ୍ଧ ଚନ୍ଦ୍ରାକାର ଶଲକନ୍ ବା ଛାଲି ମଞ୍ଜି ଦେହରୁ ଉତ୍କୀର୍ଣ୍ଣ କରାଯାଇଛି । ଶିଳାଖଣ୍ଡଟିରେ ଅତି ନିଖୁଣ ଭାବରେ କେଉଁ ୨୫ରୁ ୫୦ ହଜାର ବର୍ଷ ପୂର୍ବସ୍ଥ ମଧ୍ୟପ୍ରସ୍ତର ଯୁଗର ଉପକରଣ ନିର୍ମାଣ ଶୈଳୀ ସଂରକ୍ଷିତ ହୋଇ ରହିଛି । ପୂର୍ଣ୍ଣାଙ୍ଗ ଉପକରଣର ଅନୁସନ୍ଧାନ ଉଦ୍ଦେଶ୍ୟରେ ଆରମ୍ଭ କରାଗଲା ଦ୍ୱିତୀୟ କାର୍ଯ୍ୟକ୍ରମ । ଦୀର୍ଘ ସମୟର ଅନୁସନ୍ଧାନ ପରେ ଗୋଟିଏ ଉପକରଣ ସଦୃଶ୍ୟ ପ୍ରସ୍ତର ଖଣ୍ଡ ସଂଗ୍ରହ କରାଗଲା । ଉକ୍ତ ଉପକରଣଟି କୋରଣା-ଫୋଡ଼ଣୀ ବା ଛିଦ୍ରକ ଶ୍ରେଣୀୟ ଉପକରଣ ହେବାର ସମ୍ଭାବନା ଦେଖାଗଲା । ଅଗ୍ରାଂଶରୁ ଅଳ୍ପଭାଗ ବୋଧହୁଏ ଭାଙ୍ଗି ଯାଇଛି । ମୁନିଆ ପତ୍ର ସଦୃଶ୍ୟ କ୍ରମଶଃ ପରିବର୍ଦ୍ଧିତ ହୋଇ ପରିଶେଷରେ ଡେଙ୍ଫ ସଦୃଶ୍ୟ ପୁଚ୍ଛ ଧାରଣ କଲା ପରି ଦେଖାଯାଉଛି । ଉପକରଣଟିରେ କରମଙ୍ଗା ଫଳର ଖୁଆ ସଦୃଶ୍ୟ ତିନିଗୋଟି ଉନ୍ନତ ଧାର ରହିଛି । ଧାର ସମୂହରୁ ଶଲକନ୍ ବାହାର କରାଯାଇଛି । ସମଗ୍ର ଉପକରଣଟି ବୋଧହୁଏ କୋରଣା-ଫୋଡଣୀ ବା ଛିଦ୍ରକ ରୂପେ ବ୍ୟବହୃତ କରାଯାଇଛି । କୋରଣା-ଫୋଡଣୀ ସାହାଯ୍ୟରେ ଆପାତତଃ ବଡ଼ ଆକାରର ରନ୍ଧ୍ର କରାଯାଏ । ପ୍ରସ୍ତର ଗୋଲକ, କାଷ୍ଠ, ଶିଙ୍ଗ ଓ ଅସ୍ଥିରେ ବଡ଼ ଆକାରର ରନ୍ଧ୍ର କରାଯାଇ ବେଣ୍ଟ କିମ୍ବା ଅନ୍ୟ ଉପକରଣ ସଂଯୁକ୍ତ କରାଯାଏ । ରନ୍ଧ୍ରରେ ଗୋଟିଏ ଦଣ୍ଡ ଲଗାଯାଇ କ୍ଷେପଣାସ୍ତ୍ର ପ୍ରେରିତ କରାଯାଇପାରେ । କୌଣସି ବକ୍ର ଦଣ୍ଡକୁ ସିଧା କରିବା ପାଇଁ ବଡ଼ରନ୍ଧ୍ରର ଉପଯୋଗ କରାଯାଏ । ପ୍ରସ୍ତର ଗୋଲକରେ ଶକ୍ତ ବେଣ୍ଟ ଲଗାଇ ଗଦା କିମ୍ବା ହାତୁଡ଼ି ରୂପେ ବ୍ୟବହାର କରାଯାଏ । ଧାର ଯୁକ୍ତ ମୁନିଆ ଶିଳା କିମ୍ବା ଅସ୍ଥିକୁ କାଷ୍ଠ କିମ୍ବା ଶିଙ୍ଗର ରନ୍ଧ୍ରରେ ସଂଯୁକ୍ତ କରି ଖନନ ଓ କର୍ତ୍ତନ କାର୍ଯ୍ୟ କରାଯାଇ ପାରୁଥିଲା । ଶିଳ୍ପୀର ମୁନିଆଁ ଛାଲି ବା ଶଲକନ୍ ପ୍ରତି ବିଶେଷ ଆଗ୍ରହ ଥିବା ଯୋଗୁଁ, ଉକ୍ତ କୋରଣା-ଫୋଡଣୀରୁ ବିରାଡ଼ିର ଛାମୁ ଦନ୍ତ ସଦୃଶ୍ୟ ଏକ ଛୋଟ ଛାଲି ଉତ୍କୀର୍ଣ୍ଣ କରିଛି । ମଞ୍ଜି ଦେହରେ ଅର୍ଦ୍ଧ ବଂଶୀ ନାଳର (Fluting technique) ଛାପ ରହିଛି ।

ପ୍ରତ୍ନତତ୍ତ୍ୱବିତ୍‌ମାନେ ବଂଶଧାରା କୂଳସ୍ଥ ଗୁଣପୁର ନିକଟସ୍ଥ ଚାଲକମ୍ବା ଗ୍ରାମ ସନ୍ନିକଟ ନଦୀତଟରୁ ମଧ୍ୟ ପ୍ରସ୍ତର ଯୁଗର ଅସ୍ତ୍ରଶସ୍ତ୍ର ଆଦି ଉପକରଣର ସନ୍ଧାନ ପାଇଛନ୍ତି । ଯାହାର ଆନୁମାନିକ ସମୟ ୨୫ ହଜାରରୁ ୫୦ ହଜାର ବର୍ଷ ମଧ୍ୟରେ । ଲେଖକ ଉକ୍ତ ଅଞ୍ଚଳରୁ

ପଶୁର ପ୍ରସ୍ତରୀକୃତ ଅସ୍ଥି (Fossilised bone) ସଂଗ୍ରହ କରିଛନ୍ତି । ସଂଗୃହିତ ଅସ୍ଥି ମଧ୍ୟରେ ଆଗ ଗୋଡ଼ର ଲମ୍ବ ଅସ୍ଥିର ଗୋଟିଏ ଫାଳ ଏବଂ ଗୋଟିଏ ଅକ୍ଷତ ଗଣ୍ଠି । ଲମ୍ବ ଅସ୍ଥିଟିକୁ ଦୁଇ ଫାଳ କରାଯାଇଛି । ବୋଧହୁଏ ଅସ୍ଥି ଭିତରୁ ମଜ୍ଜା ବାହାର କରିବା ପାଇଁ ଲମ୍ବ ଭାବରେ ଫାଳ କରାଯାଇଥିଲା । ମଧ୍ୟ ପ୍ରସ୍ତର ଯୁଗର ଆଦିମ ମାନବ ଅସ୍ଥି ମଧ୍ୟସ୍ଥ ମଜ୍ଜା ଖାଇବା ପାଇଁ ଭଲ ପାଉଥିଲା । ଅନ୍ୟତ୍ର ତା'ର ବସତି ନିକଟରୁ ଫାଳ କରାଯାଇଥିବା ପ୍ରସ୍ତରୀକୃତ ଅସ୍ଥି ବହୁ ପରିମାଣରେ ଆବିଷ୍କୃତ ହୋଇଛି । ଚାଲକମ୍ପା ନିକଟସ୍ଥ ବଂଶଧାରା ନଦୀ କୂଳରେ ଅତୀତରେ ଘଞ୍ଚ ଅରଣ୍ୟ ଥିବା ବିଷୟ ସ୍ଥାନୀୟ ଆଦିବାସୀ ଲୋକକଥାରେ ସଂରକ୍ଷିତ ହୋଇ ରହିଛି । ଉକ୍ତ ଲୋକକଥା ଅନୁଯାୟୀ ସେଠାରେ ଅତି ଘଞ୍ଚ ଅରଣ୍ୟ ଥିଲା । ବୃକ୍ଷଲତାଗୁଡ଼ିକ ଏପରି ଭାବରେ ବଢ଼ିଥାନ୍ତି ଯେ ଭୂମିରେ ସୂର୍ଯ୍ୟ କିରଣ ପଡ଼ିପାରୁ ନଥିଲା । ଫଳରେ ଅରଣ୍ୟଟି ଦିନର ଦ୍ୱି-ପହରରେ ମଧ୍ୟ ଅନ୍ଧକାରରେ ପରିପୂର୍ଣ୍ଣ ଥିଲା । ତେଣୁ ତାହା ଅନ୍ଧାରୀ ବନ ନାମରେ ପରିଚିତ ଥିଲା । ସେଠାରୁ ନଦୀକୂଳ ପର୍ଯ୍ୟନ୍ତ ଏକ ବିରାଟ ଅଞ୍ଚଳରେ କିଆ ଗଛର ଜଙ୍ଗଲ ଥିଲା । ସମଗ୍ର ଅଞ୍ଚଳଟି କିଆ ଫୁଲର ମହକରେ ଭରପୂର ଥିଲା । ତେଣୁ ତାହା ଦେବତାମାନଙ୍କର ବିହାର ସ୍ଥଳୀ ଥିଲା । ସେଠାରେ ରହୁଥିବା ଦେବତାମାନଙ୍କ ମଧ୍ୟରେ କିଆଫୁଲବର ନାମକ ଏକ ଦେବତା ଥିଲେ । ଉକ୍ତ କିଆଫୁଲ ବର ସହିତ  କିଛି ଦୂରରେ ଥିବା ନଣ୍ଡା ପରବତର ଦେବକନ୍ୟାର ବିବାହ ହେଲା । ବିବାହର କିଛି ଦିନ ପରେ ବର କନ୍ୟା ଦୁହେଁ ନଣ୍ଡା ପରବତକୁ ଗଲେ । ସେଠାରେ କିଛି ଦିନ ହସ ଖୁସିରେ କଟାଇଲେ । ଫେରିବା ଦିନ କନ୍ୟା କ୍ରନ୍ଦନ କରିବାକୁ ଲାଗିଲା । କନ୍ୟାର ପିତା ନଣ୍ଡା ପରବତର ବଡ଼ ଶକ୍ତିଶାଳୀ ଦେବତା ସେ ଭାରି ବ୍ୟସ୍ତ ହୋଇ କନ୍ୟାକୁ କାନ୍ଦିବାର କାରଣ ପଚାରିଲେ । କନ୍ୟା କହିଲା ବଂଶଧାରା ନଦୀର ଜଳ ପାନୀୟ ଉପଯୋଗୀ ନୁହେଁ । ବନ୍ୟ ପଶୁମାନେ ନଦୀ ଜଳକୁ ଅପରିଷ୍କାର ଓ ଅଇଁଠା କରୁଛନ୍ତି । ତେଣୁ ସେଠାରେ ତା'ର ଭାରି କଷ୍ଟ ହେଉଛି । ନଣ୍ଡା ପରବତର ଦେବତାଙ୍କ ଆଦେଶରେ କିଆବନରେ ଗୋଟିଏ ଉଷ୍ଣ ପ୍ରସବଣ ସୃଷ୍ଟି ହେଲା । ବଂଶଧାରା ନଦୀକୂଳର ସମତଳ ଭୂମିର ଏକ ଗର୍ତ୍ତରୁ ଜଳ ନିର୍ଗତ ହୋଇ ବଂଶଧାରା ନଦୀ ସ୍ରୋତରେ ମିଶୁଛି । ଏହା ବ୍ରାହ୍ମଣୀ ନିକଟସ୍ଥ ଉଷ୍ଣ ପ୍ରସବଣର ସୃଷ୍ଟି ସମ୍ପର୍କୀୟ ଆଦିବାସୀ ଲୋକ କଥା । ଏହା ଚାଲକମ୍ପା ଅଞ୍ଚଳର ଅତୀତ କାଳର ଘଞ୍ଚ ଅରଣ୍ୟ ଓ ବନ୍ୟ ପଶୁ ସମ୍ପଦର ପ୍ରାଚୁର୍ଯ୍ୟତାର ସୂଚନା ଦିଏ । ତେଣୁ ଉକ୍ତ ଅଞ୍ଚଳରେ ମଧ୍ୟ ପ୍ରସ୍ତର ଯୁଗର ଆଦିମ ମାନବର ଅସ୍ଥାୟୀ ବସତି ଓ ଶିକାର କ୍ଷେତ୍ର ରହିବା ସମ୍ଭାବନା ଅଛି । ପ୍ରସ୍ତର ସହିତ ଅସ୍ଥି ମଧ୍ୟ ଆଦିମାନବର ଉପକରଣ ନିର୍ମାଣରେ ବ୍ୟବହାର କରାଯାଉଥିଲା । ଅସ୍ଥିକୁ ପଥର ପ୍ରହାର କରି ଭାଙ୍ଗିଲା ବେଳେ କେତେକ କ୍ଷେତ୍ରରେ ଗୋଟିଏ ମୁଣ୍ଡରେ ମୁନିଆ ଓ ଧାର ଅଂଶ ସୃଷ୍ଟି ହେଉଥିଲା । ତାକୁ ସେ ବର୍ଚ୍ଛା ବା ଛୁଞ୍ଚ ରୂପେ ବ୍ୟବହାର କରୁଥିଲା ।

ସାଙ୍କେଶର ଝରଣା ପରିଶେଷରେ ନାଗାବଳୀ ନଦୀରେ ମିଳିତ ହୋଇଛି । ଝରଣା କୂଳରୁ ସଂଗୃହିତ ଉପକରଣ ସମୂହ ରାଙ୍ଗୁକଣା କିମ୍ବା ଲକ୍ଷ୍ମୀପୁର ଅଞ୍ଚଳରୁ ଗଡ଼ି ଗଡ଼ି ଆସିଥିବା ସମ୍ଭାବନା ରହିଛି । ଉତ୍କୀର୍ଣ୍ଣ କରାଯାଇଥିବା କ୍ଷୁଦ୍ର ଶଲକନ୍ ବା ଛାଲିର ଆକୃତି ଏବଂ ଏହାକୁ ଉତ୍କୀର୍ଣ୍ଣ କରିବା ପାଇଁ ନିୟୋଜିତ ପଦ୍ଧତିର ଶୈଳୀ ଅନୁଯାୟୀ ଏହାକୁ ମଧ୍ୟ ପ୍ରସ୍ତର ଯୁଗୀୟ ଉପକରଣ ଶ୍ରେଣୀରେ ଅନ୍ତର୍ଭୁକ୍ତ କରାଯାଇପାରେ । ଏହା ଚାଲକମ୍ପା ପ୍ରସ୍ତର ଉପକରଣର ସମସାମୟିକ ହେବ ବୋଲି ବିଶ୍ୱାସ । ଏଥିରୁ ବଂଶଧାରା ନଦୀ ଓ ନାଗାବଳୀ ନଦୀର ଅବବାହିକା ମଧ୍ୟରେ ପ୍ରସ୍ତର ଯୁଗୀୟ ସାଂସ୍କୃତିକ ସମ୍ପର୍କର ସୂଚନା ମିଳେ । ମଧ୍ୟ ପ୍ରସ୍ତର ଯୁଗର ମାନବ ଗୋଷ୍ଠୀ ଖୁବ୍ କ୍ଷୀପ୍ର ଭାବରେ ଚଳପ୍ରଚଳ ହେଉଥିଲେ ଏବଂ ଗୋଟିଏ ସ୍ଥାନରେ ଖାଦ୍ୟ ଶେଷ ହେବା ପର୍ଯ୍ୟନ୍ତ ରହୁଥିଲେ ।

ଓଡ଼ିଶାରୁ ସଂଗୃହିତ ହୋଇଥିବା ମଧ୍ୟ ପ୍ରସ୍ତର ପ୍ରମାଣମାନ ପଡ଼ୋଶୀ ପ୍ରଦେଶ ଆନ୍ଧ୍ର ସହିତ ସାମଞ୍ଜସ୍ୟ ଥିବା ଦେଖାଯାଏ । ଡକ୍ଟର ଗୋପାଳ ଚନ୍ଦ୍ର ମହାପାତ୍ର ଓ ଡକ୍ଟର କୃଷ୍ଣଚନ୍ଦ୍ର ତ୍ରିପାଠୀ ଯଥାକ୍ରମେ ଓଡ଼ିଶାର ଉତ୍ତର ଓ ଦକ୍ଷିଣ ପଶ୍ଚିମାଞ୍ଚଳମାନଙ୍କରେ ଗବେଷଣା କରି ବହୁଳ ପ୍ରମାଣମାନ ସଂଗ୍ରହ କରିଥିବା ଜଣାଯାଏ । ମଧ୍ୟ ପ୍ରସ୍ତର ଯୁଗର ଉପକରଣ ବ୍ୟବହୃତ କ୍ଷୁଦ୍ର ଶଲକନ୍, ବିଭିନ୍ନ ପ୍ରକାର କୋରଣା ବା କ୍ଷୁରକ, ଫୋଡଣୀ ଯୁକ୍ତ କୋରଣା, ଫୋଡଣୀ, ପୁଚ୍ଛଯୁକ୍ତ ଏକମୁଖୀ ଅସ୍ତ୍ରାଗ୍ର ଓ ଯୌଗିକ ଉପକରଣ ପ୍ରଧାନ ।

ବଂଶଧାରା ଓ ନାଗାବଳୀ ନଦୀ ଦ୍ୱୟର ଅବବାହିକା ପ୍ରାଗୈତିହାସିକ ମାନବ, ତା'ର ବସତି ଓ ଉପକରଣର ଅନୁସନ୍ଧାନ ଓ ଆବିଷ୍କାର ନିମନ୍ତେ ଉପଯୁକ୍ତ କ୍ଷେତ୍ର । ବଂଶଧାରା ନଦୀର ବନ୍ୟାର ପ୍ରକୋପ ଓ କୂଳର ମୃତ୍ତିକା କ୍ଷୟ ଯୋଗୁଁ ଅନେକ ପ୍ରତ୍ନ ସଂପଦ ପୋତି ହୋଇ ପଡ଼ିଥିବା ପରି ମନେ ହୁଏ । ନାଗାବଳୀ ନଦୀର ହାତୀ ପଥର ଅଞ୍ଚଳରେ ଏତାଦୃଶ୍ୟ ପରିସ୍ଥିତି ଲକ୍ଷ୍ୟ କରାଯାଏ । ସାଙ୍କେଶ ଝରଣା କୂଳ ଓ ତା'ର ଉପରି ମୁଣ୍ଡସ୍ଥ ରାଙ୍ଗୁକଣା ଓ ଲକ୍ଷ୍ମୀପୁର ଅଞ୍ଚଳରେ ଅଧିକ ପରିମାଣର ପ୍ରସ୍ତର ଉପକରଣ ସଂଗୃହିତ ହୋଇପାରିବ । ବଂଶଧାରା ନଦୀର ସୁଦୂର ନିମ୍ନ ଅବବାହିକାସ୍ଥ ଟେକାଲୀ ଅଞ୍ଚଳର ଆକାବରମ୍ଭରୁ ଲେଖକ ନୂତନ ପ୍ରସ୍ତର ଯୁଗୀୟ ମସୃଣ ପ୍ରସ୍ତର ଟାଙ୍ଗିଆ ଏବଂ ଗଦା କିମ୍ବା ହାତୁଡ଼ିର ପ୍ରସ୍ତର ଗୋଲକ ସଂଗ୍ରହ କରିଛନ୍ତି । ଏହା ପ୍ରାଗୈତିହାସିକ ସଭ୍ୟତାର କ୍ରମ ବିକାଶ ସମ୍ବନ୍ଧରେ ଆଲୋକପାତ କରୁଛି । ଆଦିମ ମାନବ କ୍ରମଶଃ ଗିରିଗୁହା, ପର୍ବତ କନ୍ଦର ଓ ଝରଣା କୂଳରୁ ନଦୀ କୂଳ ଅଭିମୁଖେ ଗତି କରିଛି ।

ଏହା ମାନବ ସଭ୍ୟତାର କ୍ରମ ବିକାଶ ସମ୍ବନ୍ଧରେ ଆଲୋକପାତ କରୁଛି । ମାନବ ସଭ୍ୟତା କ୍ରମଶଃ ଗିରିଗୁହା, ପାହାଡ଼ ପର୍ବତ ଉପକଣ୍ଠସ୍ଥ ଉଚ୍ଚଭୂମି, ଝରଣା କୂଳ, ନଦୀ କୂଳ ଓ ନଦୀ ମୁହାଣରେ ପ୍ରସାରିତ ହେଲାବେଳେ ତାହା ଶିକାର ଓ ସଂଗ୍ରହକାରୀ, ଗ୍ରାମ୍ୟକୃଷି ଓ ପଶୁପାଳନ ଏବଂ ନଗର ନିର୍ମାଣ ଓ ନୌବାଣିଜ୍ୟ ମାଧ୍ୟମରେ ବିକାଶ ଲାଭ କରିଥିଲା ।

ରାମ ନଗର
ଛତ୍ରପୁର - ୭୬୧୦୨୦, ଗଂଜାମ

# ପାଣିପଞ୍ଚାୟତର ସଫଳତା

ସତ୍ୟସୁନ୍ଦର ମିଶ୍ର

ରାଜ୍ୟରେ କୃଷି କ୍ଷେତ୍ରରେ ପାଣିପଞ୍ଚାୟତର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ୨୦୦୦ ମସିହାରେ ସରକାରଙ୍କ ଜଳ ସମ୍ପଦ ବିଭାଗ ପକ୍ଷରୁ ଜାରି ଚିଠି ନଂ-୮୮୭୧୧ (ତା.୨୬.୯.୨୦୦୦) ଅନୁଯାୟୀ ରାଜ୍ୟର ସମସ୍ତ ବୃହତ୍, ମଧ୍ୟମ ଓ କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ଅଧୀନରେ ପାଣିପଞ୍ଚାୟତ ଗଠନ କରିବାକୁ ସ୍ଥିର କରାଯାଇଥିଲା । ପୁନଶ୍ଚ ବିଜୁ କୃଷକ ବିକାଶ ଯୋଜନା ଅଧୀନରେ କେତେକ ନୂଆ ପ୍ରକଳ୍ପ ପ୍ରତିଷ୍ଠା ଓ ବିଶେଷ କରି କ୍ଷୁଦ୍ର ଜଳସେଚନ ଅନ୍ତର୍ଗତ ଅଚଳ ପ୍ରକଳ୍ପଗୁଡ଼ିକୁ ଚାଲୁ କରିବା ପାଇଁ ମଧ୍ୟ ସ୍ଥିର ହୋଇଥିଲା । ଏହିସବୁ ପ୍ରକଳ୍ପଗୁଡ଼ିକର କାର୍ଯ୍ୟକାରିତା ଉପରେ ଜିଲ୍ଲାପାଳମାନେ ଧ୍ୟାନ ଦେଉଛନ୍ତି ।

ପାଣିପଞ୍ଚାୟତଗୁଡ଼ିକର ସଫଳ ରୂପାୟନ ନିମନ୍ତେ ସରକାର ଜିଲ୍ଲାସ୍ତରୀୟ ପରାମର୍ଶଦାତା କମିଟିମାନ ଗଢ଼ିଛନ୍ତି । ଏହିସବୁ କମିଟିଗୁଡ଼ିକରେ ସଂପୃକ୍ତ ଜିଲ୍ଲାର ଜିଲ୍ଲାପାଳମାନେ ଅଧକ୍ଷ ଅଛନ୍ତି । ଜଳ ସମ୍ପଦ ବିଭାଗର ଇଞ୍ଜିନିୟରମାନଙ୍କୁ ନୋଡାଲ ଅଫିସର ଭାବେ ନିଯୁକ୍ତି ଦିଆଯାଇଛି । ସେମାନେ ପାଣିପଞ୍ଚାୟତ ସମ୍ପର୍କିତ କାର୍ଯ୍ୟରେ ସଂଯୋଜକ ଭାବେ କାର୍ଯ୍ୟ କରୁଛନ୍ତି ।

ସରକାରୀ ରିପୋର୍ଟ ଅନୁଯାୟୀ ଗତ ବର୍ଷ ଅକ୍ଟୋବର ମାସ ଶେଷ ସୁଦ୍ଧା ବୃହତ୍ ଓ ମଧ୍ୟମ ଜଳସେଚନ ପ୍ରକଳ୍ପ ଅଧୀନରେ ୧୧୫୫ଟି ପାଣିପଞ୍ଚାୟତ ଗଠନ ହୋଇ ପଞ୍ଜିକୃତ ହୋଇସାରିଛି । ଏହା ଦ୍ୱାରା ୫.୧୮ ଲକ୍ଷ ହେକ୍ଟର ଜମିରେ ଜଳସେଚନ ହୋଇପାରିବ । ସେହିପରି ଏହି ଜଳସେଚନ ପ୍ରକଳ୍ପ ଅଧୀନରେ ଆହୁରି ୭୩୪ଟି ପାଣିପଞ୍ଚାୟତ କାର୍ଯ୍ୟ କରିବାକୁ ଚୁକ୍ତିବଦ୍ଧ ହୋଇଛନ୍ତି । ଘୋଡାହାଡ଼, ଉଁଳି, ଡେରଜଙ୍ଗ, ରୁଷିକୁଲ୍ୟା -୨, କାଲୋ, ବାଲଦିହା, ଉଡେଇ, ଭାସକେଲ, ଧନେଇ, ସାଳିଆ, ବୁଢ଼ାବୁଢ଼ିଆଣୀ, ପିତମହଲ, ପିଲାସଲବି, ସାଳନ୍ଦୀ, ଉପର ଜୋଙ୍କ, ଦାଦରଘାଟି, ମହାନଦୀ ଡେଲ୍‌ଟା, ସାକ୍ଷୀଗୋପାଳ ବ୍ରାଞ୍ଚ କେନାଲ, ଗୋପ, ଫୁଲନଖରା, ହୀରାକୁଦ, ଭୀମତିକରା, ବାଘୁଆ, ବୈତରଣୀ ଏଚ୍.ଏଲ୍.ସି. (ରେଞ୍ଜ-୩), ହୀରାଧାରବାଟି, ଜୟମଙ୍ଗଳ, ସରଫଗଡ଼, ତାଳସରା, ବାଘଲଟି, କୁଁରିଆ, ଡାହୁକ, କାଞ୍ଜରୀ, ଚିପିଲିମା, ସୁନ୍ଦର ଆଦି ଜଳସେଚନ ପ୍ରକଳ୍ପ ଅନ୍ତର୍ଗତ ପ୍ରାୟ ୩.୪୨ ଲକ୍ଷ ହେକ୍ଟର ଜମିରେ ପାଣିପଞ୍ଚାୟତଗୁଡ଼ିକର କାର୍ଯ୍ୟକାରିତା ଓ ରକ୍ଷଣାବେକ୍ଷଣ ପାଇଁ ଏହି ଚୁକ୍ତି ହୋଇଛି । ଏହାଦ୍ୱାରା ସେସବୁ ଅଞ୍ଚଳର ଚାଷୀମାନେ ବେଶ୍ ଉପକୃତ ହେବା ଆଶା କରାଯାଏ ।

ସେହିପରି କ୍ଷୁଦ୍ର ଓ ଉଠାଜଳସେଚନ ପ୍ରକଳ୍ପ ଅଧୀନରେ ଯଥାକ୍ରମେ ୧୧୯୭ ଓ ୯୫୮୫ଟି ପାଣିପଞ୍ଚାୟତ ଗଠନ କରାଯାଇ ପଞ୍ଜିକରଣ କରାଯାଇଛି । କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ଅନ୍ତର୍ଗତ ପାଣିପଞ୍ଚାୟତ ଦ୍ୱାରା ୨.୦୩ ଲକ୍ଷ ହେକ୍ଟର ପରିମିତ ଚାଷ ଜମିରେ ଜଳସେଚନ ବ୍ୟବସ୍ଥା ହୋଇପାରିବ । ଉଠାଜଳସେଚନ ପ୍ରକଳ୍ପ ଅଧୀନରେ ଥିବା ପାଣିପଞ୍ଚାୟତ ୨.୧୭ ଲକ୍ଷ ହେକ୍ଟର ଜମିରେ ଜଳସେଚନ କରିବାକୁ ସକ୍ଷମ । କ୍ଷୁଦ୍ର ଜଳସେଚନ ପ୍ରକଳ୍ପରେ ୭୭୦ ପାଣିପଞ୍ଚାୟତକୁ ୧.୨ ଲକ୍ଷ ହେକ୍ଟର ଜମି ହସ୍ତାନ୍ତର କରାଯାଇଥିବାବେଳେ ଉଠାଜଳସେଚନ ପ୍ରକଳ୍ପରେ ୮୪୭୩ ପାଣିପଞ୍ଚାୟତକୁ ୧.୯୩ ଲକ୍ଷ ହେକ୍ଟର ଜମି ଜଳସେଚନ ପାଇଁ ହସ୍ତାନ୍ତର କରାଯାଇଛି ।

କୃଷକମାନଙ୍କୁ ପାଣିପଞ୍ଚାୟତ ପ୍ରତି ଆକର୍ଷିତ କରିବା ଓ ପାଣିପଞ୍ଚାୟତର କାର୍ଯ୍ୟ ପରିଧିକୁ ବିସ୍ତାର କରିବାକୁ କୃଷକ ସଂଘଗୁଡ଼ିକ ସରକାରଙ୍କୁ କେତେକ ପ୍ରସ୍ତାବ ଦେଇଛନ୍ତି । ପାଣିପଞ୍ଚାୟତ ଜରିଆରେ ଚାଷୀମାନଙ୍କଠାରୁ ଧାନ କିଣିବା ହେଉଛି ମୁଖ୍ୟ ପ୍ରସ୍ତାବ । କେନାଲ ପାଖ ଜମିରୁ ଜବରଦଖଲକାରୀମାନଙ୍କୁ ଉଚ୍ଛେଦ କରିବା ସହ ଏହି ଜମିକୁ ପାଣିପଞ୍ଚାୟତକୁ ହସ୍ତାନ୍ତର କରିବା ଲାଗି ପ୍ରସ୍ତାବ ଦିଆଯାଇଛି । ଏହାଦ୍ୱାରା ସଂପୃକ୍ତ ଜମିରେ ପାଣିପଞ୍ଚାୟତ ଦ୍ୱାରା ଉନ୍ନତିମୂଳକ କାର୍ଯ୍ୟ ହୋଇପାରିବ । ପାଣିପଞ୍ଚାୟତ ପାଇଁ ନିଜସ୍ୱ ଗୃହ ନିର୍ମାଣ, ମତ୍ସ୍ୟ ଚାଷ ପାଇଁ ପାଣିପଞ୍ଚାୟତ ଅଞ୍ଚଳରେ ଥିବା ପୋଖରୀ ହସ୍ତାନ୍ତର ଆଦି ଅନେକଗୁଡ଼ିଏ ପ୍ରସ୍ତାବ ସରକାରଙ୍କ ବିଚାରାଧୀନ ଅଛି । ଏଗୁଡ଼ିକ କାର୍ଯ୍ୟକାରୀ ହୋଇପାରିଲେ ପାଣିପଞ୍ଚାୟତ ଅଧିକ ସଫଳ ହେବ ।

## ପାଣିପଞ୍ଚାୟତର ବିବରଣୀ (୩୧.୧୦.୦୪) ସୁଦ୍ଧା

(ଜମି ପରିମାଣ ଲକ୍ଷ ହେକ୍ଟରରେ)

| | ବୃହତ୍ ଓ ମଧ୍ୟମ ଜଳସେଚନ | | ଉଠାଜଳସେଚନ | | ମଧ୍ୟମ ଜଳସେଚନ | | ସହାୟତାପ୍ରାପ୍ତ ମଧ୍ୟମ ଉଠାଜଳସେଚନ | | ମୋଟ | |
|---|---|---|---|---|---|---|---|---|---|---|
| | ସଂଖ୍ୟା | ଜମି | ସଂଖ୍ୟା | ଜମି | ସଂଖ୍ୟା | ଜମି | ସଂଖ୍ୟା | ଜମି | ସଂଖ୍ୟା | ଜମି |
| ପଞ୍ଜିକୃତ ପାଣିପଞ୍ଚାୟତ | ୧୧୫୫ | ୫.୧୮ | ୯୫୮୫ | ୨.୧୭ | ୧୧୯୭ | ୨.୦୩ | ୫୧ | ୦.୦୯ | ୧୧୯୮୮ | ୯.୪୭ |
| ଚୁକ୍ତିବଦ୍ଧ ପାଣିପଞ୍ଚାୟତ | ୭୩୪ | ୩.୪୨ | ୮୪୭୩ | ୧.୯୩ | ୭୭୦ | ୧.୨ | ୧୭ | ୦.୦୩ | ୯୯୯୪ | ୬.୫୮ |

ସାମ୍ବାଦିକ, 'ଓଡ଼ିଶା ଭାସ୍କର'
ଓ.ୟୁ.ଜେ. ଭବନ, ୟୁନିଟ୍-୨
ଅଶୋକନଗର, ଭୁବନେଶ୍ୱର - ୭୫୧୦୦୯

---

# ଆମ ରାଜଧାନୀ ଭୁବନେଶ୍ୱର

କାଞ୍ଚନ ମିଶ୍ର

ଆମ ରାଜଧାନୀ ଭୁବନେଶ୍ୱର
ମନ୍ଦିର ମାଳିନୀ ଏହି ସହର
ରାଜଧାନୀ ପାଇଁ ଖ୍ୟାତି ଏହାର
ଲୋକ ରହିଛନ୍ତି ନାନା ରାଜ୍ୟର ।

ମନ୍ତ୍ରୀ ଅଫିସର କିରାଣୀ ତା'ର
ଶାସନ କରନ୍ତି ରାଜ୍ୟ ଆମର
ସାମ୍ବାଦିକ ଦିଏ ନୂଆ ଖବର
ନିତି ଛପା ହୁଏ  କେତେ ପେପର ।

ଅର୍ଦ୍ଧ ଶତାବ୍ଦୀର ଭୁବନେଶ୍ୱର
ସଚିବାଳୟଟି ଶୋଭା ତାହାର
ତାରା ପୁଞ୍ଜ ପରି ଆଲୋକ ତା'ର
ଉଜ୍ଜ୍ୱଳ କରଇ ରାଜଧାନୀର ।

ରାଜଧାନୀ ରାସ୍ତା ବଡ଼ ଓସାର
ଅବିରାମ ଚାଲେ ଗାଡ଼ି ମଟର
ରାଜ୍ୟ ସରକାର ରାଜଧାନୀର
ଯତ୍ନ ନେଇଥାନ୍ତି ସବୁ ପ୍ରକାର ।

ପୁଣ୍ୟ ତୀର୍ଥସ୍ଥଳୀ ଭୁବନେଶ୍ୱର
ଲିଙ୍ଗରାଜ ବିଜେ ବଡ଼ଠାକୁର
ଅଭଡ଼ା ତାଙ୍କର ବଡ଼ ମଧୁର
ଭରି ନିଏ ତୃପ୍ତି ସବୁ ମନର ।

ଉଚ୍ଚଶିକ୍ଷା ପାଇଁ ବାଣୀ ବିହାର
ନାଆଁ ରଖିଅଛି ଆମ ରାଜ୍ୟର
ଜୀବିକା ଅର୍ଜନ ରଖି ଆଶାର
ଅନେକ ଆସନ୍ତି ଏହି ସହର ।

ସବୁଜ ସୁନ୍ଦର ଭୁବନେଶ୍ୱର
ଅଫୁରନ୍ତ ଶୋଭା ଅଟେ ତାହାର
ଜଳବାୟୁ ଲାଗି ଆମ ସହର
ରାଇଜ ମଧ୍ୟରେ ଅଟଇ ସାର ।

ଉତ୍କଳ କେଶରୀ ଆମ ରାଜ୍ୟର
ତାଙ୍କରି ଉଦ୍ୟମେ ଏହି ସହର
ସବୁଠୁ ସୁନ୍ଦର ବଡ଼ ସହର
ଆମ ରାଜଧାନୀ ଭୁବନେଶ୍ୱର ।

ୟୁନିଟ୍-୯, ଭୁବନେଶ୍ୱର-୨୨

# ଆମ ଆଞ୍ଚଳିକ ପ୍ରାକୃତିକ ବିଜ୍ଞାନ ସଂଗ୍ରହାଳୟ

ବସନ୍ତ କୁମାର ଦାସ

ବଡ଼ ସୌଭାଗ୍ୟର କଥା ଆମ ରାଜଧାନୀ ଭୁବନେଶ୍ୱରରେ ଦେଶର ତୃତୀୟ ଆଞ୍ଚଳିକ ପ୍ରାକୃତିକ ବିଜ୍ଞାନ ସଂଗ୍ରହାଳୟ (Regional Museum of Natural History) ଗତ ଅଗଷ୍ଟ ମାସ ୧୦ ତାରିଖ ଦିନ ଉଦ୍‌ଘାଟିତ ହୋଇଯାଇଛି । ଏହାକୁ ଭାରତ ସରକାରଙ୍କ ଜଙ୍ଗଲ ଓ ପରିବେଶ ବିଭାଗ ମନ୍ତ୍ରଣାଳୟର ରାଷ୍ଟ୍ରମନ୍ତ୍ରୀ ଶ୍ରୀଯୁକ୍ତ ନମୋ ନାରାୟଣ ମୀନା ଉଦ୍‌ଘାଟନ କରିଥିଲେ । ଦେଶର ପ୍ରାକୃତିକ ଐତିହ୍ୟକୁ ଜନସାଧାରଣଙ୍କ ନିକଟରେ ପରିଚିତ କରାଇବା ନିମିତ୍ତ ଏହି ସଂଗ୍ରହାଳୟ କାର୍ଯ୍ୟ କରିବ । ଭୁବନେଶ୍ୱରଠାରେ ପ୍ରତିଷ୍ଠିତ ଏହି ସଂଗ୍ରହାଳୟ ପୂର୍ବାଞ୍ଚଳ ଓ ଉତ୍ତର ପୂର୍ବାଞ୍ଚଳ ରାଜ୍ୟ ତଥା ଆଣ୍ଡାମାନ୍ ଓ ନିକୋବର ଭଳି ଭରପୂର ରହିଥିବା ଜୈବ ବିବିଧତା ଭରା ଅଞ୍ଚଳ ସଂପର୍କରେ ବିସ୍ତୃତ ଚିତ୍ର ପ୍ରଦାନ କରିବ । ଏହି ସଂଗ୍ରହାଳୟର ଭିତ୍ତିପ୍ରସ୍ତର ୧୯୯୪ ମସିହା ନଭେମ୍ବର ମାସରେ ରାଜ୍ୟର ପୂର୍ବତନ ମୁଖ୍ୟମନ୍ତ୍ରୀ ତଥା କଳିଙ୍ଗ ପୁରସ୍କାରର ପ୍ରତିଷ୍ଠାତା ସ୍ୱର୍ଗତଃ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ଦିଆଯାଇଥିଲା । ଦେଶର ଉନ୍ନତ ଜୈବ ବିବିଧତା, ବିଭିନ୍ନ ସ୍ଥାନର ପରିବେଶ, ଉଦ୍ଭିଦ ଓ ପ୍ରାଣୀ ସଂପଦ ସଂପର୍କରେ ସମ୍ୟକ୍ ଚିତ୍ର ପ୍ରଦାନ ଲାଗି ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟ ଏହି ବିଜ୍ଞାନ ସଂଗ୍ରହାଳୟ ମାଧ୍ୟମରେ ଉଦ୍ୟମ ଆରମ୍ଭ କରିଛି । ସଂଗ୍ରହାଳୟ ଏପରି ଏକ ସ୍ଥାନ ଯାହା ଲୋକମାନଙ୍କର ଭାବନା ଓ ଅନୁଭୂତିକୁ ବଦଳାଇପାରେ, ସେମାନଙ୍କର ମନୋଭାବ ଓ ମୂଲ୍ୟବୋଧକୁ ପ୍ରଭାବିତ କରିପାରେ ।

ଭୋପାଳ ଓ ମହୀଶୂର ପରେ ଭୁବନେଶ୍ୱର ଜାତୀୟ ପ୍ରାକୃତିକ ବିଜ୍ଞାନ ସଂଗ୍ରହାଳୟ ଦେଶର ତୃତୀୟ ତଥା ପୂର୍ବାଞ୍ଚଳ କେନ୍ଦ୍ର ଅଟେ । ଏହା ପଠାଣିସାମନ୍ତ ପ୍ଲାନେଟୋରିୟମ୍ ନିକଟରେ ନନ୍ଦନକାନନ ଯିବା ରାସ୍ତାକଡ଼ରେ ଶାନ୍ତ ପରିବେଶ ମଧ୍ୟରେ ଆବାଳ-ବୃଦ୍ଧ-ବନିତା ସମସ୍ତଙ୍କ ପାଇଁ ଏକ ଦର୍ଶନୀୟ ସ୍ଥାନ ଅଟେ । ଆଚାର୍ଯ୍ୟ ବିହାର ଛକରେ ଓହ୍ଲାଇ ପଡ଼ିଲେ ଅଳ୍ପ ଦୂରରେ ଆଞ୍ଚଳିକ ବିଜ୍ଞାନ କେନ୍ଦ୍ର, ବିଜ୍ଞାନ ପାର୍କ ମଧ୍ୟ ଜଣେ ଦେଖି ବିଜ୍ଞାନର ଜଟିଳ ତଥ୍ୟକୁ ସରଳ ଭାବରେ ବୁଝିପାରିବ । ପଠାଣିସାମନ୍ତ ପ୍ଲାନେଟୋରିୟମ୍‌କୁ ଯାଇ ଜଣେ ଗ୍ରହ, ନକ୍ଷତ୍ର, ସୌରଜଗତ, ଧୂମକେତୁ ଓ ଉପଗ୍ରହ ସମ୍ବନ୍ଧରେ ସମ୍ୟକ୍ ଜ୍ଞାନ ଆହରଣ କରି ନିଜର ବୈଜ୍ଞାନିକ ଦୃଷ୍ଟିକୋଣକୁ ବୃଦ୍ଧି କରିପାରିବ ।

ହେଲେ ଆଞ୍ଚଳିକ ପ୍ରାକୃତିକ ବିଜ୍ଞାନ ସଂଗ୍ରହାଳୟ ପରିସର ମଧ୍ୟକୁ ବୁଲିଗଲେ ଯେ କେହି ନିଶ୍ଚିତ ଭାବେ ଭାବବିହ୍ୱଳିତ ହୋଇପଡ଼ିବ । ସାଧାରଣ ଲୋକ ତଥା ଛାତ୍ରଛାତ୍ରୀମାନଙ୍କୁ ଅନୌପଚାରିକ ପରିବେଶ ଶିକ୍ଷା ଦେବା ହେଉଛି ଏହାର ମୁଖ୍ୟଲକ୍ଷ୍ୟ । ସ୍ଥାନୀୟ ଉଦ୍ଭିଦ, ପ୍ରାଣୀ ଓ ଭୂ-ସମ୍ପଦ ଆଦିକୁ ବର୍ଣ୍ଣନା କରି ପ୍ରଦର୍ଶନୀ ପ୍ରସ୍ତୁତ, ପରିବେଶ ବିଜ୍ଞାନ ବିଷୟରେ ସ୍ୱତନ୍ତ୍ର ପ୍ରଦର୍ଶନୀ ଓ ପରଖ ପ୍ରସ୍ତୁତ, ପରିବେଶ ସଚେତନତା ସୃଷ୍ଟି କରିବା ନିମନ୍ତେ ଉପଯୁକ୍ତ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବା, ପରିବେଶ ଶିକ୍ଷା ପାଇଁ ଆବଶ୍ୟକୀୟ ଜନପ୍ରିୟ ଶିକ୍ଷଣ ସାମଗ୍ରୀ ପ୍ରକାଶ କରିବା, ଜିଲ୍ଲାସ୍ତରରୁ ଆରମ୍ଭ କରି ରାଜ୍ୟସ୍ତରୀୟ ପରିବେଶ ଶିକ୍ଷା କାର୍ଯ୍ୟକ୍ରମ ପ୍ରସ୍ତୁତ କରିବା, ବିଭିନ୍ନ ଅନୁଷ୍ଠାନ ସହ ପରିବେଶ ଶିକ୍ଷା ନିମିତ୍ତ ସହବନ୍ଧନ ସୃଷ୍ଟି କରିବା, ଉଦ୍ଭିଦ, ପ୍ରାଣୀ ଓ ମଣିଷ ଭିତରେ ଥିବା ପରିବେଶୀୟ ସଂପର୍କ ଓ ତାହାର ସଂରକ୍ଷଣର ଗୁରୁତ୍ୱ ଦର୍ଶାଇ ପ୍ରଦର୍ଶନୀ ଓ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବା । ସଂଗ୍ରହାଳୟର ପ୍ରଦର୍ଶନ ପ୍ରକୋଷ୍ଠ ଓ ଶିକ୍ଷା କାର୍ଯ୍ୟକ୍ରମର ମୁଖ୍ୟ କାମ ହେଉଛି ଜୈବ ବିବିଧତା, ପରିସଂସ୍ଥା ଓ ପରିବେଶ ସଂରକ୍ଷଣ ଉପରେ ସୂଚନା ପ୍ରଦାନ କରିବା ।

ବର୍ତ୍ତମାନ ସଂଗ୍ରହାଳୟରେ ବିଭିନ୍ନ ବିଷୟରେ ପ୍ରଦର୍ଶନୀ ସହିତ ତିନୋଟି ପ୍ରଦର୍ଶନ ପ୍ରକୋଷ୍ଠ ଯଥା- ଜୈବ ବିବିଧତା ପ୍ରଦର୍ଶନ ପ୍ରକୋଷ୍ଠ ଓ ପରିସଂସ୍ଥା ଥିଏଟର, ଆବିଷ୍କାର ଓ ଜୀବବିଜ୍ଞାନ କମ୍ପ୍ୟୁଟର କେନ୍ଦ୍ର ଓ ଅସ୍ଥାୟୀ ପ୍ରଦର୍ଶନ ପ୍ରକୋଷ୍ଠ । ଏହି ପ୍ରଦର୍ଶନ ପ୍ରକୋଷ୍ଠ ପ୍ରସ୍ତୁତ କରିବାର ମୁଖ୍ୟ ଆଭିମୁଖ୍ୟ ହେଉଛି ବିଭିନ୍ନ ପରିସଂସ୍ଥା, ସେଥିରେ ଥିବା ଜୈବ ବିବିଧତା ଓ ପରିବେଶ ସହ ସେମାନଙ୍କର ସଂପର୍କ ବିଷୟରେ ଦର୍ଶକମାନଙ୍କୁ ସୂଚନା ଦେବା ।

ଓଡ଼ିଶାର ପ୍ରାକୃତିକ ସମ୍ପଦର ପ୍ରାଚୁର୍ଯ୍ୟ ପ୍ରଦର୍ଶିତ ଏପରି ଭାବେ ଏଠାରେ ହୋଇଛି, ଯଦ୍ଦ୍ୱାରା କି ଲୋକଙ୍କ ମନରେ ଗର୍ବ ଓ ଖୁସି ଆଣି ଦେବ । ଖାଲି ସେତିକି ନୁହେଁ, ଏହାକୁ ଦେଖିଲେ ଯେକୌଣସି ଓଡ଼ିଆ ଲୋକ ତା' ଓଡ଼ିଶାର ପ୍ରାକୃତିକ ସଂପଦର ରକ୍ଷଣାବେକ୍ଷଣ ଓ ସଂରକ୍ଷଣ କରିବା ଦିଗରେ ସଚେତନ ହେବ ଏଥିରେ ସନ୍ଦେହ ନାହିଁ । ବରେଇ ପାଣି ଜଳପ୍ରପାତ, ଶିମିଳିପାଳର ବାଘ ଓ ହାତୀ ସଂରକ୍ଷଣ ଅଞ୍ଚଳ, ଭିତରକନିକା, ସନ୍ତସନ୍ତିଆ ହେନ୍ତାଳବନ, ବଉଳା କୁମ୍ଭୀର, ଗୋମୁହାଁ

କୁମ୍ଭୀର, ଘଡ଼ିଆଳ କୁମ୍ଭୀର, ଅଲିଭ୍ ରିଡ୍‌ଲେ କଇଁଛ, ଚିଲିକା ହ୍ରଦ ନଳବଣ ଦ୍ୱୀପ/ପକ୍ଷୀ ଅଭୟାରଣ୍ୟ ଓ ଇରାୱାଡ଼ି ଶିଶୁମାର (ଚିଲିକାର ଗୋଳିଆ ପାଣିରେ ରହେ) ସମେତ ଅନେକ ବିଷୟରେ ଗୁରୁତ୍ୱପୂର୍ଣ୍ଣ ସୂଚନା ମିଳିବ ଯାହାକି ଦର୍ଶକମାନଙ୍କ ମନରେ ପରିବେଶ ପ୍ରତି ସଚେତନତା ଓ କୌତୂହଳ ସୃଷ୍ଟି କରିବ । ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜ ଉପରେ ଅନେକ ଦୃଶ୍ୟାବଳୀ ରହିଛି । ଉତ୍ତର-ପୂର୍ବ ଭାରତର ବିସ୍ତୃତ ଦୃଶ୍ୟାବଳୀ ଓ ଏକ ଶିଙ୍ଗିଆ ଗଣ୍ଡା ସମେତ ଅନେକ ଜୀବଜନ୍ତୁ ବିଷୟରେ ତଥ୍ୟାବଳୀ ଦର୍ଶକମାନଙ୍କ ମନକୁ ବିମୋହିତ କରେ । 'ପରିବେଶ ଥିଏଟର' ଜରିଆରେ ବିଭିନ୍ନ କୀଟ ଓ ଛୋଟ ପ୍ରାଣୀଙ୍କର ଶରୀର ଗଠନ ଓ ବିଶେଷ ଗୁଣଧର୍ମ ଆଦି ଉପରେ ସଚିତ୍ର ପ୍ରଦର୍ଶନ ପାଇଁ ମୁଖ୍ୟ ପ୍ରକୋଷ୍ଠ ଭିତରେ ଆଧୁନିକ ଉପକରଣ ଥିବା ଏକ ଛୋଟ ଅଞ୍ଚଳ ରହିଛି । ପିଲାମାନଙ୍କ ନିମନ୍ତେ 'ଆବିଷ୍କାର କେନ୍ଦ୍ର' ରହିଛି ଯେଉଁଠି କି ସେମାନେ ପ୍ରାଣୀ ଓ ଉଦ୍ଭିଦଙ୍କ ବିଷୟରେ କିଛି ପ୍ରଶ୍ନ ଓ ମଜାଦାର ତଥ୍ୟଗୁଡ଼ିକୁ ସହଜରେ ଜାଣିପାରିବେ । 'ଜୀବ ବିଜ୍ଞାନ କମ୍ପ୍ୟୁଟର କୋଠରୀ - ସାଇବର କେଫ୍' ମଧ୍ୟ ଅନ୍ୟ ଏକ ଆକର୍ଷଣର କେନ୍ଦ୍ରବିନ୍ଦୁ । ବିଭିନ୍ନ ବୟସର ପିଲାଙ୍କ ନିମନ୍ତେ ଏହା ହେଉଛି ଏକ ଶିକ୍ଷଣୀୟ ସ୍ଥାନ । ଏଠାରେ ସେମାନେ କେତେକ ଶିକ୍ଷା ସଫ୍‌ଟୱେର ମାଧ୍ୟମରେ ଆଭାସୀ ଦୁନିଆ ବିଷୟରେ ସବୁ ପ୍ରକାରର ତଥ୍ୟ ପାଇପାରିବେ ଏବଂ ପରିବେଶ ଓ ପରିସଂସ୍ଥା ବିଷୟରେ ସେମାନଙ୍କର ଜ୍ଞାନ ବଢ଼ାଇ ପାରିବେ । ଅନ୍ୟ ଏକ କୋଠରୀରେ ପ୍ରଦର୍ଶନୀଗୁଡ଼ିକ ଅସ୍ଥାୟୀ ସମୟସୀମା ପର୍ଯ୍ୟନ୍ତ ରଖାଯାଇଛି । ପ୍ରକୃତି, ପରିସଂସ୍ଥା ଓ ସାଂପ୍ରତିକ ସମସ୍ୟା ବିଷୟରେ ସ୍ୱଳ୍ପ ସମୟ ପାଇଁ ପ୍ରଦର୍ଶନୀଗୁଡ଼ିକ ରହିବାର ବନ୍ଦୋବସ୍ତ କରାଯାଇଥିବାରୁ ଏହାକୁ 'ଅସ୍ଥାୟୀ ପ୍ରଦର୍ଶନ କୋଠରୀ' କୁହାଯାଉଛି । କିନ୍ତୁ ଯେଉଁମାନେ ସଂଗ୍ରହାଳୟ ଆସିପାରିବେ ନାହିଁ, ସେମାନଙ୍କ ନିମନ୍ତେ ଏକ ଚଳନ୍ତା ସଂଗ୍ରହାଳୟ ଗାଡ଼ିରେ ଖଞ୍ଜା ଯାଇଛି । ଏହାକୁ ଚଳଲଗା ପ୍ରଦର୍ଶନୀ କୁହାଯାଉଛି । ବିଭିନ୍ନ ଗ୍ରାମାଞ୍ଚଳକୁ ଯାଇ ପ୍ରକୃତି ସଂରକ୍ଷଣ ବିଷୟରେ ଜନସାଧାରଣ ତଥା ଛାତ୍ରଛାତ୍ରୀଙ୍କୁ ଉତ୍ସାହିତ କରିବା ହେଉଛି ଏହି ଚଳନ୍ତା ସଂଗ୍ରହାଳୟର ଲକ୍ଷ୍ୟ । ଆଜିର ଭାରତୀୟ ଗାଁ ସାମନା କରୁଥିବା କିଛି ମୁଖ୍ୟ ସମସ୍ୟା ଉପରେ ଲୋକଙ୍କର ଜ୍ଞାନ ଏବଂ ସଚେତନତା ବଢ଼ାଇବା ଏହି ପ୍ରଦର୍ଶନୀର ଲକ୍ଷ୍ୟ । ସଂଗ୍ରହାଳୟ ମଧ୍ୟରେ ଏକ ସୁନ୍ଦର ପ୍ରେକ୍ଷାଳୟ ରହିଛି ଯେଉଁଠି କି ମାଗଣାରେ ଦର୍ଶକମାନେ ପ୍ରକୃତି, ବନ୍ୟଜନ୍ତୁ, ଜୀବମଣ୍ଡଳ ଓ ଜୀବବିଜ୍ଞାନ ଉପରେ ବିଭିନ୍ନ କାର୍ଯ୍ୟକ୍ରମ ଦେଖିପାରିବେ । ଭାଷଣ, ପ୍ରଦର୍ଶନ ଓ ଭିନ୍ନ ଭିନ୍ନ ଶିକ୍ଷାଭିତ୍ତିକ କାର୍ଯ୍ୟକ୍ରମ ପାଇଁ ଏହା ଏକ ସୁନ୍ଦର ପ୍ଲାଟଫର୍ମ ରୂପେ କ୍ଷେତ୍ର ଯୋଗାଇ ଦେଉଛି । ସଂଗ୍ରହାଳୟରେ ଏକ ସୁନ୍ଦର ଲାଇବ୍ରେରୀ ରହିଛି, ଯେଉଁଥିରେ କି ଜୀବବିଜ୍ଞାନ, ଭୌତିକ ବିଜ୍ଞାନ, ଇତିହାସ, ଭୂଗୋଳ, ସୃଜନାତ୍ମକ କଳା ଓ ଜୀବଜନ୍ତୁ ଜ୍ଞାନମଣ୍ଡଳ ଭଳି ବିଭିନ୍ନ ବିଷୟରେ ପୁସ୍ତକଗୁଡ଼ିକ ରଖାଯାଇଛି । ଶିକ୍ଷା ସମ୍ବନ୍ଧୀୟ ବିଭିନ୍ନ କାର୍ଯ୍ୟକ୍ରମ ସଂଗ୍ରହାଳୟ ତରଫରୁ ଆୟୋଜନ କରାଯାଇଥାଏ । ଶିକ୍ଷକ ପ୍ରଶିକ୍ଷଣ, ପ୍ରକୃତି ଶିକ୍ଷା, କୁଇଜ୍, ପ୍ରବନ୍ଧ, ତର୍କ, ପ୍ରକୃତି ଚିତ୍ରଣ, ପୋଷ୍ଟର ପ୍ରସ୍ତୁତି, ବକ୍ତୃତା, ଆଲୋଚନାଚକ୍ର, ସମ୍ମାନ ଓ ଲୋକପ୍ରିୟ ବିଜ୍ଞାନ ଲେଖା ପ୍ରକାଶନ ଭଳି କାର୍ଯ୍ୟକ୍ରମମାନ ଆୟୋଜନ କରିବାର ଲକ୍ଷ୍ୟ ନେଇ ଏହା ସ୍ଥାପନ କରାଯାଇଛି । ଗତ ଗ୍ରୀଷ୍ମ ଅବକାଶରେ 'ଜୈବ ସମ୍ପଦ' ଉପରେ ଏକ ତାଲିମ କାର୍ଯ୍ୟକ୍ରମ ସ୍କୁଲ ପିଲାମାନଙ୍କ ନିମନ୍ତେ ଆୟୋଜନ କରାଯାଇ ଥିଲା । ଏଥିପାଇଁ ଗତ ଏପ୍ରିଲ ମାସ (୨୮.୪.୦୪)ରେ ଏକ ଲିଖିତ ପରୀକ୍ଷା କରାଯାଇ, ଓଡ଼ିଶାର ବିଭିନ୍ନ ବିଦ୍ୟାଳୟରୁ କୃତକାର୍ଯ୍ୟ ହୋଇଥିବା ପ୍ରାୟ ୩୦ ଜଣ ଛାତ୍ରଛାତ୍ରୀଙ୍କୁ ଗ୍ରୀଷ୍ମ ଅବକାଶରେ ଜୈବ ସମ୍ପଦ ଉପରେ ମାଗଣା ତାଲିମ ଦେବା, ଭିତରକନିକା, ଚିଲିକା ଓ ନନ୍ଦନକାନନ ଭଳି ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ପ୍ରାକୃତିକ ସ୍ଥାନକୁ ବୁଲାଇ ପ୍ରତ୍ୟକ୍ଷ ଜ୍ଞାନ ପ୍ରଦାନ କରିବା ନିମନ୍ତେ କରାଯାଇଥିବା ପ୍ରଚେଷ୍ଟା ବେଶ୍ ସ୍ୱାଗତଯୋଗ୍ୟ । ଏହାଦ୍ୱାରା ଛାତ୍ରଛାତ୍ରୀଙ୍କର ପ୍ରତ୍ୟକ୍ଷ ଜ୍ଞାନ ବଢ଼ିବା ସଂଗେସଂଗେ ଜୀବନ ବିଜ୍ଞାନ ପଢ଼ିବା ନିମନ୍ତେ ଆଗ୍ରହ, ଉତ୍ସାହ, ଉତ୍କଣ୍ଠା ଓ କୌତୂହଳ ବଢ଼ିବ । ଏହି ସଂଗ୍ରହାଳୟର ଭବିଷ୍ୟତ ଯୋଜନା ସବୁ ଫଳବତୀ ହୋଇପାରିଲେ ସଂଗ୍ରହାଳୟ ପ୍ରତିଷ୍ଠାର ବାସ୍ତବିକ୍ ଲକ୍ଷ୍ୟ ପୂରଣ ହୋଇପାରିବ । ଭବିଷ୍ୟତ ଯୋଜନାଗୁଡ଼ିକ ମଧ୍ୟରେ ରହିଛି -

- ବିଶିଷ୍ଟ ବୈଜ୍ଞାନିକ ଓ ଛାତ୍ରଙ୍କ ମଧ୍ୟରେ ଦୂରତା କମାଇବା ପାଇଁ ପ୍ରତ୍ୟକ୍ଷ ସମ୍ପର୍କ ପ୍ରତିଷ୍ଠା ।
- ଗବେଷଣା ଓ ସଂରକ୍ଷଣ ଜାତିର ସଫଳତାର ଚାବିକାଠି - ଏହି କଥାକୁ ଏକ ସାଧାରଣ ଉକ୍ତିରେ ପରିଣତ କରିବା ଏବଂ ପିଲାମାନଙ୍କ ମନରେ ବିଜ୍ଞାନୀ ଅନୁସନ୍ଧିତ୍ସା ବିକାଶ କରାଇବା ।
- ବିଜ୍ଞ ଓ ସଚେତନ ମଣିଷକୁ କେନ୍ଦ୍ରରେ ରଖି ପ୍ରକୃତି ଓ ପ୍ରାକୃତିକ ସମ୍ପଦର ସଂରକ୍ଷଣ ଉପରେ ତଥ୍ୟ ପ୍ରଦାନ କରିବା ।
- ଗଣ୍ଡା ସାଧନ କେନ୍ଦ୍ର ସ୍ଥାପନ । ଏଥିରେ ଆଧୁନିକ ଇଲେକ୍‌ଟ୍ରୋନିକ୍ ମାଧ୍ୟମରେ ଗଣ୍ଡା ବିଷୟରେ ସମସ୍ତ ତଥ୍ୟ ମିଳିପାରିବ ।
- ପ୍ରାଗ୍‌ଐତିହାସିକ କାଳର ବିଲୁପ୍ତ ପ୍ରାଣୀ, ଉଦ୍ଭିଦ ଓ ଜୀବନ୍ତ - ଜୀବାଶ୍ମ, ଜୀବନର ସୃଷ୍ଟି, ବିସ୍ମୟକର ବିଶ୍ୱରେ ଘୂରି ବୁଲୁଥିବା ଅଙ୍ଗାର ପରମାଣୁ ସମୂହ ଆଦିର ବର୍ଣ୍ଣନା କରି ଗୋଟିଏ ବିବର୍ତ୍ତନ କୋଠରୀ ପ୍ରସ୍ତୁତ କରାଯିବ ।
- ଏକ ଆଧୁନିକ ଶୀତାତାପ ନିୟନ୍ତ୍ରିତ ସଂରକ୍ଷିତ ସଂଗ୍ରହ କୋଠରୀ ପ୍ରସ୍ତୁତି । ଏଥିରେ ଦର୍ଶକଙ୍କୁ ଅଣୁଜୀବ ଦୁନିଆର ମୌଳିକ ତଥ୍ୟ ସହିତ ଜୈବ ପ୍ରଯୁକ୍ତି ବିଦ୍ୟା ଓ ଆନୁବଂଶିକ ଇଞ୍ଜିନିୟରିଂ କ୍ଷେତ୍ରରେ ଚାଲୁଥିବା ଆଧୁନିକ ଗବେଷଣା ସଂପର୍କରେ ପରିଚିତ କରାଇବା ।
- ପ୍ରାଣୀ ସମ୍ପର୍କିତ ବିଭିନ୍ନ ଖେଳନା, ଟି-ସାର୍ଟ, ବ୍ୟାଜ୍, ସୂଚନାପତ୍ର ଓ ଅନୁଷ୍ଠାନର ସାମୟିକ ପ୍ରକାଶନ ନିମନ୍ତେ ଏକ ବିକ୍ରୟ କେନ୍ଦ୍ର ପ୍ରତିଷ୍ଠା କରାଯିବ ।

ବି-୧୧୩, ସେକ୍ଟର-୧
ନାଲ୍‌କୋ ଟାଉନ୍‌ସିପ୍
ଦାମନଯୋଡ଼ି - ୭୬୩୦୦୮, କୋରାପୁଟ

# ସାତ୍ ବହେନ୍

ଡଃ ପବିତ୍ର ମୋହନ ନାୟକ

**ସୋ**ନପୁର ସହର ଦକ୍ଷିଣରେ ସାତ ବନ୍ଧ । ସାତୋଟି ପୋଖରୀ । ମଝିରେ ମଝିରେ ବିରାଟ ମାଟିହୁଡ଼ା । ଲୋକ ବିଶ୍ୱାସ, ଏ ସାତ ବନ୍ଧରେ ସାତ୍ ବହେନ୍ ରହନ୍ତି ପାଣି ଭିତରେ । କଳାହାଣ୍ଡିରେ ଏମାନଙ୍କୁ 'ଝଲ୍ ବହେନ୍' ବା 'ଜଳ ଭଉଣୀ' କୁହାଯାଏ । ୟୁରୋପୀୟ ସାହିତ୍ୟର 'ୱାଟର ନିମ୍ଫସ୍' ବା ଜଳପରୀ ଭଳି ଏମାନଙ୍କ ଘର ସମୁଦ୍ର କିବା ନଦୀ କିବା ସରୋବର ।

ଏହି ସାତ୍ ବହେନ୍ ସୋନପୁର-କଳାହାଣ୍ଡି ଅଂଚଳରେ ବହୁବର୍ଷ ଧରି ପୂଜା ପାଇ ଆସୁଛନ୍ତି । ବିନିକାର ମହାନଦୀ ଶଯ୍ୟାରେ, ଚମ୍ପାମାଳରେ, ରାଜଉଆସ ନିକଟ ଟିକିରିପଡ଼ାରେ । ସାତୋଟି ପଥର ଦେହରେ ମନ୍ଦାର ଫୁଲ ଓ ସିନ୍ଦୂର । ତନ୍ତ୍ରଯୁଗର ସାତ ଭଉଣୀ । ଏମାନଙ୍କୁ ଆବାହନ କରାଯାଏ ଧୁନ୍କୁଲି ଓଷାରେ, ବଳିଯାତ୍ରାରେ ।[୧]

କଳାହାଣ୍ଡି-ସୋନପୁର ଅଂଚଳରେ ସାତ୍ ବହେନ୍‌ଙ୍କ ସହିତ ଲଙ୍କେଶ୍ୱରୀଙ୍କୁ ମଧ୍ୟ ଉପାସନା କରାଯାଏ । ଟିକିରିପଡ଼ାର ଅନତିଦୂରରେ ମହାନଦୀ ଗର୍ଭରେ ଲଙ୍କେଶ୍ୱରୀ ଦରହ । ପଥରକୁଦରେ ଦେବୀ ଲଙ୍କେଶ୍ୱରୀ । ଚାରିକଡ଼େ ଅକାତକାତ ପାଣି, କଳା ଝାଇଁଝାଇଁ । କୁଦର ଦକ୍ଷିଣକୁ କ୍ରମାବନତ ବିଶାଳ ଶିଳାଖଣ୍ଡ । ମସୃଣ, ପିଚ୍ଛିଳ । ଗୋଡ଼ ଖସିଗଲେ ପଡ଼ିବ ଗଭୀର ଗଣ୍ଡରେ । ଏଇଠି କୈବର୍ତ୍ତ ପୂଜକ ଫୁଲ ଦିଏ । ଦୀପ ଜାଳେ । ଲୋକେ କୁହନ୍ତି, ଏ ପଥରକୁଦ ତଳେ କୁଆଡ଼େ ମନ୍ଦିରଟିଏ ଅଛି । ସେଇଠି ପୂଜକ ପୂର୍ବେ ପୂଜା କରୁଥିଲା । ଦିନେ ପୂଜା ସାରି ଆସୁ ଆସୁ ଗଡୁଟି ଭୁଲିଗଲା । ଫେରିଲା । ପାଣି ଭିତରକୁ ପଶି ଦେଖିଲା କବାଟ ଫାଙ୍କରେ । ଚଟାଣରେ ସାତୋଟି ଦେବୀ ମୂର୍ତ୍ତି । ମୁହଁରେ ସିନ୍ଦୂର ମଣ୍ଡଳା । ବାଳ ମୁକୁଳା । କୈବର୍ତ୍ତର ଦେହ ଶୀତେଇ ଉଠିଲା । ଲମ୍ବ ହୋଇ ପଡ଼ିଗଲା । ସାତ ଭଉଣୀ ଗଡୁଟି ଫିଙ୍ଗି ଦେଲେ । କହିଲେ, ଯେଉଁଠି ପଡ଼ିବ, ସେଇଠି ପୂଜା କରିବୁ । ଗଡୁଟି ପଡ଼ିଲା ସେଇଠି, ସେଇ ମସୃଣ, ପିଚ୍ଛିଳ, କ୍ରମନିମ୍ନଗାମୀ ପାଷାଣ ଦେହରେ ।

ଏହି ସାତ ଭଉଣୀଙ୍କୁ ଶଶିସେନା କାବ୍ୟ (୧୯୨୮)ର ସାତ ମାୟାକୁମାରୀଙ୍କ ସହ ଚିହ୍ନିତ କରାଯାଇପାରେ :

ତାଳ ମୃଦଙ୍ଗ ବେଣୁ ବୀଣା ମର୍ଦ୍ଦଳ ରବ ତମ୍ବୁର ସେ ଘେନି
ଶଶିସେନାର ସଂଗତରେ ସାତେ ହେଁ ହୋଇଲେ ଅନୁଗାମିନୀ ।
ବିଚିତ୍ର ବେଶ ଅନୁରୂପ ପାମର ମାୟାବେଶ ମନୋହାରୀ
ତାଣ୍ଡବ ଆରମ୍ଭ କରିବା ନିମନ୍ତେ ଚଳିଲେ ପାତାଳପୁରୀ । (ପୃ.୩୪)

ଏ ମାୟାକାମିନୀଙ୍କ କୁହୁକ ବଳରେ ପତିପ୍ରାଣା ଶଶିସେଣା ଫେରି ପାଇଥିଲା ତା' ମନର ମଣିଷ ଅହିମାଣିକକୁ । ପାତାଳପୁରୀରୁ ମର୍ତ୍ତ୍ୟଲୋକକୁ ବାଟ କଢ଼ାଇ ଆଣିଲା ।

କେଦାରନାଥ ମହାପାତ୍ର ଖୋଜି ଖୋଜି ଏମାନଙ୍କୁ ଠାବ କରିଛନ୍ତି ପୁରୀ ମୁକ୍ତେଶ୍ୱର ମନ୍ଦିର ସପ୍ତମାତୃକା ମୂର୍ତ୍ତି ଭିତରେ ।[୩] କାଳକ୍ରମେ ସପ୍ତ ଭଗିନୀ ସପ୍ତ ଜନନୀ ହୋଇଯାଇଥିବେ । ମତ୍ସ୍ୟ, କୂର୍ମ, ବରାହ, ବାମନ, ଅଗ୍ନି, ମାର୍କଣ୍ଡେୟ ପୁରାଣମାନଙ୍କରେ ସପ୍ତମାତୃକା ପୂଜାର ଉଲ୍ଲେଖ ରହିଛି ।[୪] କିନ୍ତୁ ଓଡ଼ିଶାରେ ସପ୍ତମ-ଅଷ୍ଟମ ଶତକରେ ସପ୍ତମାତୃକା ଉପାସନା ଆରମ୍ଭ ହେଲା ।[୫] ଦଶମରୁ ତ୍ରୟୋଦଶ ଶତାବ୍ଦୀ ମଧ୍ୟରେ ସୋମବଂଶୀଙ୍କ ସମୟରେ ଏମାନଙ୍କ ଲାଗି ସ୍ୱତନ୍ତ୍ର ମନ୍ଦିର ପ୍ରତିଷ୍ଠିତ ହେଲା ।[୬] ଭୁବନେଶ୍ୱର ପରଶୁରାମେଶ୍ୱର ଓ ବୋଇତାଳ ମନ୍ଦିର, ଯାଜପୁର ଦଶାଶ୍ୱମେଧ ଘାଟ, ପୁରୀ ମୁକ୍ତେଶ୍ୱର ମନ୍ଦିରରେ ସପ୍ତମାତୃକା ପୂଜା ପାଇଲେ । ଭୀମ ରଥ (୯୫୫-୮୦) ମାର୍କଣ୍ଡେଶ୍ୱର ପୋଖରୀ କୂଳରେ ମୁକ୍ତେଶ୍ୱର ମନ୍ଦିରରେ ସପ୍ତମାତୃକାଙ୍କୁ ନେଇ ପ୍ରତିଷ୍ଠା କଲେ । ମାଦଳାପାଂଜି ଭାଷାରେ 'ଭୀମକେଶରୀ ... ମାର୍କଣ୍ଡେଶ୍ୱର ପୂର୍ବ ବାହିରେ ସାତ ଭଉଣୀଙ୍କୁ ବସାଇଲେ ।[୭] ବୀରଭଦ୍ର (ଯମ) ଓ ଗଣେଶ ବିଗ୍ରହ ମଧ୍ୟରେ ହଂସ ଉପରେ ବ୍ରାହ୍ମୀ, ଷଣ୍ଢ ଉପରେ ମାହେଶ୍ୱରୀ (ଶିବାନୀ), ମୟୂର ଉପରେ କୌମାରୀ, ଗରୁଡ଼ ଉପରେ ବୈଷ୍ଣବୀ, ମହିଷ ଉପରେ ବାରାହୀ, ହସ୍ତୀ ଉପରେ ଇନ୍ଦ୍ରାଣୀ ଓ ଶବ ଉପରେ ଚାମୁଣ୍ଡା ଶୋଭା ପାଇଲେ ।[୮] ମାତୃମୂର୍ତ୍ତି ଏମାନେ । କୋଳରେ ଶିଶୁସନ୍ତାନ ଧରି ବରଦ ମୁଦ୍ରାରେ ଉଭା ହେଲେ । ଉପକୂଳ ଓଡ଼ିଶା ଭଳି ପଶ୍ଚିମ ଓଡ଼ିଶାରେ ବେଲଖଣ୍ଡିରୁ ବଉଦ ପର୍ଯ୍ୟନ୍ତ । ଚଉଷଠି ଯୋଗିନୀ ମନ୍ଦିରରୁ ଆରମ୍ଭ କରି ଚଣ୍ଡୀତାଳ (ଚଣ୍ଡିହାର ପ୍ରତିଷ୍ଠିତ) ମନ୍ଦିର ପର୍ଯ୍ୟନ୍ତ ଏକ ବିସ୍ତୃତ ଅଂଚଳରେ ସପ୍ତମାତୃକା ପୂଜା ପ୍ରସାର ଲାଭ କରିଥିଲା । କିନ୍ତୁ ଏମାନଙ୍କ ମଧ୍ୟରେ ସୋନପୁର ସୋମଲେଇ

ମନ୍ଦିର ଜଗମୋହନ କାନ୍ଥର ସପ୍ତମାତୃକା ଦର୍ଶକର ସ୍ୱତନ୍ତ୍ର ଦୃଷ୍ଟି ଆକର୍ଷଣ କରେ । ମୁକ୍ତେଶ୍ୱର ମନ୍ଦିରରେ ଶିବାନୀଙ୍କ ସ୍ଥାନରେ ମାହେଶ୍ୱରୀ ଭଳି ଏଇଠି ନାରସିଂହୀ ଅଷ୍ଟମାତୃକାର ଅଷ୍ଟମ ସ୍ଥାନରୁ ବାହାରି ଆସି ବ୍ରାହ୍ମୀଙ୍କ ସ୍ଥାନ ଅଧିକାର କରିଛନ୍ତି । ଅଷ୍ଟମ ସ୍ଥାନରେ ରହିଛନ୍ତି ଦକ୍ଷିଣ କାଳିକା । ଏଇଠି ସପ୍ତମାତୃକାର ଅନ୍ୟତମ ବିଶେଷତ୍ୱ ହେଲା, ଏମାନେ ସମସ୍ତେ ଉଗ୍ରରୂପା । ଏଇଠି ନାରସିଂହୀ ଓଠରେ ଶଙ୍ଖ ତ ବାରାହୀ ମୁହଁରେ ରାକ୍ଷସ ।

ଏହି ପ୍ରସଙ୍ଗରେ ପଣ୍ଡିତ ଗୋପୀନାଥ ପାଣିଗ୍ରାହୀ, ବିଦ୍ୟାରତ୍ନଙ୍କ ମନ୍ତବ୍ୟ ମନେପଡ଼େ । ଶଶିସେନା କାବ୍ୟ (୧୯୨୮)ର ମୁଖବନ୍ଧରେ ବିଦ୍ୟାରତ୍ନ କୁହନ୍ତି :

ପୂର୍ବ ସମୟରେ ସ୍ୱର୍ଣ୍ଣପୁରରେ ନେତାଇ ଧୋବଣୀ ଆଦି ସାତ ଜଣ ସିଦ୍ଧ ଯୋଗିନୀ କୁମାରୀ ଥିଲେ । ସେମାନେ ମନ୍ତ୍ରସିଦ୍ଧା । ଯେଉଁ ସବୁ ମନ୍ତ୍ର ରଚନା କରି ଦେଇଛନ୍ତି ଅଥବା ସେମାନଙ୍କ ନାମ ରାଣ ଦେଇ ଯେଉଁ ସବୁ ମନ୍ତ୍ର ରଚିତ ହୋଇଅଛି, ତାହା ପ୍ରତ୍ୟକ୍ଷ ଫଳପ୍ରଦ ହେଉଅଛି ବୋଲି ବହୁଲୋକଙ୍କର ବିଶ୍ୱାସ ।

ଯୋଗିନୀମାନଙ୍କ ନାମ ନେତାଇ ଧୋବଣୀ, ମଦନା ମାଲୁଣୀ, ଶୁକ୍ତି ଚମରାଣୀ, ଲୋହକୁଟି ଲୁହୁରାଣୀ, ଗାଙ୍ଗୀ ଗଉଡୁଣୀ, ପତ୍ରପିନ୍ଧି ସଉରାଣୀ ଓ ଶୁଆ ତେଲୁଣୀ । ସେମାନେ ମନ୍ତ୍ରସିଦ୍ଧା । ସମସ୍ତେ କୁମାରୀ ଅବସ୍ଥାରେ ଥିଲେ । ସେମାନେ ଏକ ସମୟରେ ଥିଲେ କି ଭିନ୍ନ ଭିନ୍ନ ସମୟରେ ସମ୍ପ୍ରଦାୟ ପରମ୍ପରାରେ ଥିଲେ, ତାହା ଜାଣିବା ଉପାୟ ନାହିଁ । ସମୟ ମଧ ଠିକ୍ ସିଦ୍ଧାନ୍ତ କରିବାର ସୁବିଧା ନାହିଁ ।

କେହି କେହି କହନ୍ତି, ଏହି ଯୋଗିନୀମାନେ ପାଟଣାର ପୁରାତନ ରାଜଧାନୀ ପାଟଣାରେ ଏକ ସମୟରେ ଥିଲେ । ସେମାନେ ଯେଉଁ ଠାକୁରାଣୀଙ୍କୁ ପୂଜା କରୁଥିଲେ, ସେ ପାଟଣାରେ ଅଛନ୍ତି । ତାଙ୍କୁ କୁମାରୀ କାମଚଣ୍ଡୀ ବା କାଉଁରୀ କାମଚଣ୍ଡୀ କୁହନ୍ତି । ପାଟଣାର ଅଂଶ ବିଶେଷକୁ କାଉଁରୀ ପାଟଣା ବା କୁମାରୀ ପାଟଣା କହନ୍ତି । ଗୋଟିଏ ସ୍ଥାନକୁ ମଦନାର ଫୁଲବାଡ଼ୀ ବୋଲି ନିର୍ଦ୍ଦେଶ କରୁଅଛନ୍ତି । ତେବେ ଏମାନେ କେହି କେହି ସ୍ୱର୍ଣ୍ଣପୁରରେ କେହି କେହି ପାଟଣା ରାଜଧାନୀରେ ରହୁଥିବା ଅଥବା ଗତାୟାତ କରି ଉଭୟ ସ୍ଥାନରେ ରହୁଥିବାର ଅନୁମାନ ହୁଏ । କୁମାରୀମାନଙ୍କ ନାମଯୁକ୍ତ ଅନେକ ମନ୍ତ୍ର ପାଟଣା ରାଜ୍ୟର ଗୁଣିମାନଙ୍କଠାରେ ଥିବା ଦେଖାଯାଏ । କେହି କେହି କହନ୍ତି, ମଦନା ମାଲୁଣୀ ଓ ନେତାଇ ଧୋବଣୀ ସ୍ୱର୍ଣ୍ଣପୁର ବାସିନୀ । ଏଠାରେ ଧୋବାମାନେ ନେତାଇକି, ମାଳୀମାନେ ମଦନାକୁ ଓ ଲୁହୁରାମାନେ ଶକ୍ତିକୁ କୁଳଦେବତା ରୂପେ ଅଦ୍ୟାପି ପୂଜା କରୁଥିବା ଦେଖାଯାଏ । ବର୍ତ୍ତମାନ ଯେଉଁଠାରେ ରାଜଭବନ ଅଛି, ତା'ର ପଶ୍ଚିମକୁ ମଦନାର ଘର ଓ ଫୁଲବାଡ଼ୀ ଥିଲା ବୋଲି ରାମଚନ୍ଦ୍ର ପାଣିଗ୍ରାହୀ ନାମକ ଜଣେ ବୃଦ୍ଧ ବ୍ରାହ୍ମଣ ଲୋକ ପରମ୍ପରାରେ ଶୁଣିଥିବାର କହୁଥିଲେ ।[୯]

ବୀର ମିତ୍ରୋଦୟଙ୍କ ଦ୍ୱାରା ପ୍ରକାଶିତ ଶଶିସେନା କାବ୍ୟର ଏହି ମୁଖବନ୍ଧ ଏକ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ଦଲିଲ । ବିଦ୍ୟାରତ୍ନଙ୍କ ଉପରୋକ୍ତ ମନ୍ତବ୍ୟ ସୋନପୁର-ପାଟଣା ଅଂଚଳର ତାନ୍ତ୍ରିକ ପରମ୍ପରାର ଏକ ଅନାଲୋଚିତ ଅଧ୍ୟାୟ ଉପରେ ଆଲୋକପାତ କରେ । ତାଳପତ୍ର ପୋଥିକୁ ଛାଡ଼ି ଦେଲେ ଏ ସାତ ଭଉଣୀଙ୍କ ନାମ ସର୍ବ ପ୍ରଥମେ ସାହିତ୍ୟ ପୃଷ୍ଠାକୁ ଆଣିବାର କୃତିତ୍ୱ ଗୋପୀନାଥଙ୍କର ।

ଏମାନେ ବିଭିନ୍ନ ସଂପ୍ରଦାୟର କୁଳଦେବତାର ମାନ୍ୟତା ପାଇଥିଲେ । ନିତାଇ ଧୋବଣୀ, ମଦନା (ଶଶିସେନା କାବ୍ୟର ଜ୍ଞାନଦେଇ) ମାଲୁଣୀ, ସୁକୁଟି ଚମାରୁଣୀ, ଲୁହୁକୁଟି ଲୁହୁରାଣୀ, ଗାଙ୍ଗୀ ଗଉଡୁଣୀ, ପତ୍ରପିନ୍ଧି ସଉରାଣୀ ଓ ଶୁଆ ତେଲୁଣୀ ଯଥାକ୍ରମେ- ଧୋବା, ମାଳୀ, ଚମାର, ଲୁହୁରା, ଗଉଡ଼, ସଅରା ବା ଶବର ଓ ତେଲୀମାନଙ୍କର ଥିଲେ ମୁଖ୍ୟ ଗୃହଦେବତା । ଏହା ସାତ୍ ବହେନ୍ ମନ୍ତ୍ରସିଦ୍ଧା ଥିଲେ । କୁମାରୀ ଥିଲେ । ସିଦ୍ଧିବଳରେ ଯୋଗିନୀ ହୋଇଗଲେ । ଦେବତା ପାଲଟିଗଲେ । ମନ୍ତ୍ର ଲେଖିଲେ । ଅଥବା ତାଙ୍କ ନାମରେ ମନ୍ତ୍ର ରଚିତ ହେଲା । ଏ ଲେଖକ ଦ୍ୱାରା ପ୍ରାପ୍ତ ତାଳପତ୍ର ପୋଥିରେ ଉତ୍କୀର୍ଣ୍ଣ ମନ୍ତ୍ରଟିଏ ଏହିପରି । ବାଘ ଭେଲକି ମନ୍ତ୍ର :

ଏ ମନ୍ତ୍ର ଭେଲକିରେ ଭେଲକି । ଡୋକାମୁଖୀ ବ୍ୟାଘ୍ର ତେଲ ମୁହେଁ ମାଖି ଚାହିଁବ ଯାକୁ । ବ୍ୟାଘ୍ର ଭେଲକି ଲାଗିବ ତାକୁ । ତା'ର ଚକ୍ଷୁ ବାନ୍ଧଇ, ବକ୍ତ୍ର ବାନ୍ଧଇ । ତା'ର ବାହା ବାନ୍ଧଇ । ତା'ର ପାଦ ବାନ୍ଧଇ । ଘୋଡାଶାଳ ଘୋଡା ବାନ୍ଧଇ । ରାଣୀପୁରେ ରାଣୀ ବାନ୍ଧଇ । ମର୍ତ୍ତ୍ୟପୁରେ ମର୍ତ୍ତ୍ୟ ବାନ୍ଧଇ । ସଭାରେ ସଭାଜନକୁ ବାନ୍ଧଇ । ସିଂହାସନେ ରାଜା ବାନ୍ଧଇ । ରାଜା ପରଜା ବାନ୍ଧଇ । ଦଳବଳ ବାନ୍ଧଇ । ନ ବାନ୍ଧୁ ବୋଲି କାହାର ଆଜ୍ଞା । ଈଶ୍ୱର ପାର୍ବତୀଙ୍କ, କାଉଁରୀ କାମଚଣ୍ଡୀ, ନିତାଇ ଧୋବଣୀ, ପତ୍ରପିନ୍ଧି ସଉରାଣୀଙ୍କର, ଗାଙ୍ଗୀ ଗଉଡୁଣୀଙ୍କର, ମଦନା ମାଲୁଣୀଙ୍କର । ସୁକୁଟି ଚମାରୁଣୀଙ୍କର, ମୋହିନୀ ଦଣ୍ଡୀଙ୍କର କୋଟି କୋଟି ଆଜ୍ଞା ଲାଗରେ ଭେଲକି ଲାଗ । ମୋତେ ଛାଡ଼ି ଲାଗ । ଜଗତ ସଂସାରକୁ ଲାଗ । ଘରେ ଛାଡ଼ି ବାହାରେ ଲାଗ । ଲାଗ ଭେଲକି ଲାଗ । ଏ ଯେତେ ଦେବୀଙ୍କର ଆଜ୍ଞାରେ ଲାଗ ।

ସାତ୍ ବହେନ୍ ଏତେ ପ୍ରଭାବଶାଳୀ, ଶକ୍ତିଶାଳୀ ଥିଲେ ଯେ ତାଙ୍କ ନାମରେ ସୁଦ୍ଧା ଏକଦା ଏ ମନ୍ତ୍ର ଉଚ୍ଚାରିତ ହେଉଥିଲା । ପୂର୍ବେ ସୋନପୁର-ପାଟଣା ଅଂଚଳ ଏକ ଓ ଅଭିନ୍ନ ଥିଲା । ପାଟଣାର ପୂର୍ବ ଦ୍ୱାରକୁ 'ସୋନପୁର ଗେଟ୍' କୁହାଯାଉଥିଲା । ଏ ଅଂଚଳର ନାମ ଥିଲା କୁମାରୀ ପାଟଣା ବା କୁଆଁରୀ ପାଟଣା । ସାତ୍ ବହେନ୍‌ଙ୍କ ଚାରଣ ଭୂମି । ଏ କାଉଁରୀ ପାଟଣା ।

ଜଗବନ୍ଧୁ ସିଂହ ତାଙ୍କ ପ୍ରାଚୀନ ଉତ୍କଳ (୧୯୨୯) ପୁସ୍ତକରେ ଚୋଡ଼ଗଂଗଦେବଙ୍କ ଜୀବନର ଗୋଟିଏ ଅବିଦିତ ଅଧ୍ୟାୟର ଉଲ୍ଲେଖ କରିଛନ୍ତି ।[୧୦] ଏହା ଥିଲା ତାଙ୍କ ଉତ୍କଳ ଅଭିଯାନର ପ୍ରଥମ ପର୍ବ ।

ରାସ୍ତା ପଡ଼ିଥିଲା ସୋନପୁର ଦେଇ । ସୋନପୁରରେ ଥିଲେ ନିତାଇ ଧୋବଣୀ । ଚୋଡ଼ଗଂଗଙ୍କ ମାଉସୀ । ଆସିଲାବେଳେ ମା' କହିଥିଲେ, ମାଉସୀର ଆଶୀର୍ବାଦ ନେବୁ । ଚୋଡ଼ଗଙ୍ଗ ଦେଖିଲେ, ମାଉସୀ ଚୁଲିମୁଣ୍ଡରେ ବସିଛି । ଗୋଡ଼ଟିଏ ଚୁଲିରେ ପୂରାଇଛି । ଚୁଲି ଜଳୁଛି । କଡ଼େଇରେ ତେଲ ଟକମକ ଫୁଟୁଛି । ଛୁଆଟିଏ ପହଁରୁଛି ତତଲା ତେଲରେ । ପୁତୁରାକୁ ଦେଖି ମାଉସୀ କହିଲେ, ପୁଅ ଯା' ବାଡ଼ିରୁ ଦୁଇଟି ପାଚିଲା କଦଳୀ ଖାଇ ଦେଇ ଯା' । ଚୋଡ଼ଗଂଗଦେବ ମାଉସୀର ପାଦ ଛୁଇଁଲେ । ଉତ୍କଳ ଅଭିଯାନରେ ଆଗେଇଲେ । ଗଙ୍ଗବଂଶର ଭିତ୍ତିପ୍ରସ୍ତର ପକାଇଲେ ।

ଚୋଡ଼ଗଂଗଙ୍କ ସମୟ ଦ୍ୱାଦଶ ଶତାବ୍ଦୀର ଶେଷ ପର୍ଯ୍ୟାୟ । ଛତିଆରେ ଅମରାବତୀ କଟକ ବସାଇଥିଲେ ।[୧୧] ଏଇ ଅମରାବତୀ କଟକରୁ ଅହିମାଣିକ ତା' ପ୍ରେମର ଜୈତ୍ରଯାତ୍ରା ଆରମ୍ଭ କରିଥିଲା । ସାରିଥିଲା କାମନ୍ତାପୁରରେ । କାଲିର କାମନ୍ତାପୁର ଆଜିର ସୋନପୁର । ଏଇଠି ଜ୍ଞାନଦେଇ ମାଲୁଣୀ ମନ୍ତ୍ର ପଢ଼ି, ଫୁଲ ଶୁଂଘାଇ ଭେଣ୍ଡାକୁ ମେଣ୍ଢା କରି ଦେଇଥିଲା ।

**ପାଦଟୀକା**


୧. PM Nayak - The Voice of Silence (Bhubaneswar : Orissa Sahitya Academy, 2001), p.54.

୨. ପ୍ରତାପ ରାଏ - ଶଶିସେନା କାବ୍ୟ (ସମ୍ବଲପୁର : ଫ୍ରେଜର୍ ପ୍ରିଣ୍ଟିଂ କମ୍ପାନୀ, ୧୯୨୮), ପୃ.୩୪ ।

୩. କେଦାରନାଥ ମହାପାତ୍ର - ଝଙ୍କାର, ପୂଜା ସଂଖ୍ୟା, ୧୯୭୬, ପୃ.୬୨୬-୨୭ ।

୪. TAG RAO - Elements of Hindu Iconography, vol.-I, Pt.ii, Second Edition (Varanasi : Indological Book House, 1971), pp.379-83; Agni Purana (Tr.) M.N. Dutta (Calcutta : 1903-04); Markandeya Purana (ed.) K.M. Banerjee (Cal : 1862).

୫. T.E. Donaldson - Tantra and Sakta Art of Orissa, Vol.I (New Delhi : 2002), p.326; Hindu Temple Art of Orissa, Vol.III (Leiden : 1987), pp.1301-2.

୬. Orissa Review, Govt. of Orissa Publication, Sept.-Oct. Issue, p.90.

୭. ମାଦଳା ପାଂଜି (ସଂ.) ଆର୍ତ୍ତବଲ୍ଲଭ ମହାନ୍ତି (କଟକ : ପ୍ରାଚୀ, ୨୦୦୧), ପୃ.୧୪ ।

୮. R.L. Mitra - The Antiquities of Orissa, vol.II (New Delhi : 1984), p.231.

୯. ପ୍ରତାପ ରାଏ - ମୁଖବନ୍ଧ ।

୧୦. ଜଗବନ୍ଧୁ ସିଂହ । ପ୍ରାଚୀନ ଉତ୍କଳ (ପୁରୀ : ଶକ୍ତି ପ୍ରେସ୍, ୧୯୨୯), ପୃ.୨୯୮ ।

୧୧. କୃଷ୍ଣଚନ୍ଦ୍ର ପାଣିଗ୍ରାହୀ - ଇତିହାସ ଓ କିମ୍ବଦନ୍ତୀ ।



ଅବସରପ୍ରାପ୍ତ କୁଳସଚିବ
ଭି.ଆଇ.ଏମ୍.- ୬୮୯, ଶୈଳଶ୍ରୀ ବିହାର
ଭୁବନେଶ୍ୱର





ପୁରୀ ଜିଲ୍ଲାର ଗଙ୍ଗାଧରପୁରଠାରେ ମହାମାନ୍ୟ ରାଜ୍ୟପାଳ ଶ୍ରୀ ରାମେଶ୍ୱର ଠାକୁର ବାତ୍ୟା ଆଶ୍ରୟସ୍ଥଳୀ ଗୃହ ଉଦ୍‌ଘାଟନ କରୁଛନ୍ତି । (୧୧.୦୪.୦୫)

# ମାଆ, ଛୁଆ ଓ ଆଗାମୀ ଦୁନିଆ

ଡକ୍ଟର ଶୁଭ୍ରାଂଶୁବାଳା ମହାନ୍ତି

## ସୃଷ୍ଟି ଓ ସମ୍ପର୍କ

ପ୍ରଜନନ ଉଦ୍ଭିଦ ଓ ପ୍ରାଣୀମାନଙ୍କର ଏକ ବୈଶିଷ୍ଟ୍ୟ । ଏ ପୃଥିବୀରେ ଅନେକ ପ୍ରକାର ଉଦ୍ଭିଦ ଓ ପ୍ରାଣୀ ଭରି ରହିଛନ୍ତି । ସେମାନଙ୍କର ସଂଖ୍ୟା ବି ବୃଦ୍ଧି ପାଉଛି । ଅବଶ୍ୟ ମାନବ ଅତ୍ୟାଚାର ଯୋଗୁଁ ଅନେକ ଜୀବନ ବିପନ୍ନ ଓ ବିଲୋପ ହେବାକୁ ଯାଉଛି । ତେବେ ଏ ପୃଥିବୀର ଜୀବଜନ୍ତୁମାନଙ୍କ ମଧ୍ୟରେ ତାଙ୍କ ଛୁଆମାନଙ୍କୁ ନେଇ ମାଆମାନଙ୍କର ସମ୍ପର୍କ ବି ବିଚିତ୍ର । ଆଉ ମାଆ ଓ ଛୁଆ ମଧ୍ୟରେ ସମ୍ପର୍କ ସବୁଠାରୁ ଅଧିକ ମଣିଷଠାରେ । ଛୁଆଟି ଜନ୍ମ ହେଉ ହେଉ ମାଆ ସ୍ତନରୁ କ୍ଷୀର ଶୋଷି ଖାଇବାକୁ ଆରମ୍ଭ କରେ । ମାତୃତ୍ୱ ଓ ନାରୀତ୍ୱ ସୃଷ୍ଟିର ଶ୍ରେଷ୍ଠତମ ଓ ସୁନ୍ଦରତମ ସୃଷ୍ଟି । ଆମ ସଂସାରରେ ମାଆଟିଏ ସନ୍ତାନ ପାଇଁ ବେଶ୍ ବ୍ୟାକୁଳ ହୋଇଥାଏ । ଜନନୀ ହୋଇ ନପାରିଲେ ସମାଜ ଚକ୍ଷୁରେ ସେ ସଫଳ ନାରୀ ନୁହେଁ । ଶୁଣିବାକୁ ପଡ଼େ ଅନେକ ଅକୁହା କଥା । ସତେକି ସେ ଯେମିତି ସମାଜର ଏକ ଘୃଣ୍ୟ ଅବହେଳିତ ମହିଳା । ଆଉ ଛୁଆଟିକୁ ଜନ୍ମ ଦେଲେ ଘରଟି ପୂରି ଉଠେ ଆନନ୍ଦ ଉଲ୍ଲାସରେ । ତା'ପରେ ଆରମ୍ଭ ହୋଇଯାଏ ଅନାବିଳ ପ୍ରେମ, ସ୍ନେହ, ମମତା ଓ ଅତୁଟ ବନ୍ଧନ । ଏହାର ମୂଳରେ ରହିଛି ଶିଶୁକୁ ନିଜ ବକ୍ଷରୁ କ୍ଷୀର ଖୁଆଇ ବଡ଼ କରିବା ପାଇଁ ଦୃଢ଼ ମନୋବଳ । ସ୍ତନ୍ୟପାନ ଶିଶୁର ଜନ୍ମଗତ ଅଧିକାର ଏବଂ ଏହା ତାକୁ ଈଶ୍ୱରଙ୍କ ବରଦାନ ରୂପରେ ମିଳିଥାଏ । ବଂଚିବା ପାଇଁ ଶିଶୁ ସଂଗ୍ରାମ ନକରି ମାଆ ପାଖେ ଲାଗିରହି ସ୍ତନଯୁଗଳରୁ ନିସୃତ ଅମୃତର ଧାର ପାନ କରି ଧୀରେ ଧୀରେ ବଡ଼ ହୋଇଯାଏ । ସତରେ କି ଅଦ୍ଭୁତ ନିବିଡ଼ ସମ୍ପର୍କ । ସେ ସମ୍ପର୍କ ଜଣେ ଅନୁଭବୀ ହିଁ ହୃଦୟଙ୍ଗମ କରିଥାଏ । ଜନ୍ମରୁ ସମ୍ପର୍କ ବଢ଼ି ଓ ଗଢ଼ି ଉଠିଥିବାରୁ ଛୁଆ ସବୁବେଳେ ମାଆ ସହିତ ବେଶୀ ମିଶିବାକୁ ଭଲ ପାଇଥାଏ ।

## ସମାଜ ଓ ଆଜିର ନାରୀ

ଆଜିର ନାରୀ ସୌନ୍ଦର୍ଯ୍ୟ ପିପାସୁ ପରି ମନେହୁଏ । ନିଜର ସୌନ୍ଦର୍ଯ୍ୟ ଯେପରି କ୍ଷୁଣ୍ଣ ନହୁଏ ସେଥିପ୍ରତି ସେ ବେଶ୍ ସଚେତନ ଓ ସମ୍ବେଦନଶୀଳ । ସୌନ୍ଦର୍ଯ୍ୟହାନି ଭୟରେ ଅନେକ ମାଆ ଶିଶୁକୁ କ୍ଷୀର ଖୁଆଇବାକୁ ବଂଚିତ କରାନ୍ତି । ଏହା ଏକ ଭ୍ରମାତ୍ମକ ଧାରଣା । କେବଳ ମାଆଟି ପୃଥୁଳାକାୟ ହୋଇଥିଲେ ବା ମେଦ ଅଧିକ ଥିଲେ ମାଆର ସ୍ତନ ଯୁଗଳରେ ପରିବର୍ତ୍ତନ ଦେଖାଦେଇଥାଏ । ତେବେ ସେଥିପ୍ରତି ମାଆମାନେ ଭ୍ରୂକ୍ଷେପ କରିବା କଥା ନୁହେଁ । ସ୍ତନ ଯୁଗଳର କାର୍ଯ୍ୟ ହେଉଛି ଅମୃତ ଧାରା ସୃଷ୍ଟି କରିବା ଯାହାକି କେବଳ ସନ୍ତାନମାନଙ୍କ ପାଇଁ ପ୍ରଯୁଜ୍ୟ । ପ୍ରତ୍ୟେକ ସ୍ତନ୍ୟପାୟୀ ପ୍ରାଣୀ (Mammal)ର ବିଶେଷତ୍ୱ ହେଉଛି ଜନ୍ମ ହେବା ପରେ ମାଆଠାରୁ କ୍ଷୀର ପିଇ ବଂଚିବା । ମାଆର କର୍ତ୍ତବ୍ୟ ହେଉଛି ଛୁଆ ଜନ୍ମ ହେବାର କିଛି ସମୟ ମଧ୍ୟରେ ବରଂ କ୍ଷୀର ଖୁଆଇବା । କୌଣସି ସ୍ତନ୍ୟପାୟୀ ପ୍ରାଣୀ ଜନ୍ମନେବା ପରେ କ୍ଷୀର ଖାଇବାକୁ ଗଲାବେଳେ ମାଆ କଦାପି ଦୂରେଇ ଯାଏ ନାହିଁ । ମାଆ ଖୁସିରେ ଖାଇବାକୁ ଦେଇଥାଏ କ୍ଷୀର ବା କ୍ଷୀର ପାନ କଲାବେଳେ ମାଆ ହୋଇଥାଏ ବେଶ୍ ଆନନ୍ଦିତ । କିନ୍ତୁ ବର୍ତ୍ତମାନ ମଣିଷଠାରେ କେତେକ ମାତ୍ରାରେ ଦେଖା ଦେଉଛି ବିଚ୍ୟୁତି । ନାରୀ ଆଗ୍ରହ ପ୍ରକାଶ କରି ନଥାଆନ୍ତି ତାଙ୍କ ଛୁଆକୁ କ୍ଷୀର ଦେବାରେ । ଗୋଟିଏ କଥା କଦାପି ଭୁଲିବା କଥା ନୁହେଁ ଯେ ସ୍ତନ ଦ୍ୱୟର କାର୍ଯ୍ୟ ହେଉଛି ସ୍ତନ୍ୟ ସୃଷ୍ଟି କରିବା ଓ ଆଗାମୀ ସନ୍ତାନ ପାଇଁ ଖାଦ୍ୟ ପ୍ରସ୍ତୁତ କରି ବଂଚିବା ପାଇଁ ସୁଯୋଗ ଦେବା ।

## ସ୍ତନ୍ୟପାନର ମହତ୍ୱ

ସନ୍ତାନ ଜନ୍ମ ପରେ ତା' ପାଇଁ ସର୍ବୋତ୍କୃଷ୍ଟ ଖାଦ୍ୟ ହେଉଛି ମାଆ କ୍ଷୀର (Breast feeding is the best feeding for the child) । ଏ କଥା ମଧ୍ୟ ଡବା କ୍ଷୀରରେ ସୂଚିତ ହୋଇଛି । ଛୁଆ ପାଇଁ କ୍ଷୀର ହେଉଛି ସ୍ୱର୍ଣ୍ଣସମ । ସବୁଠାରୁ ବଡ଼ କଥା ହେଉଛି ମାଆ କ୍ଷୀର ନିରାପଦ, ନିର୍ଦ୍ଦୋଷ ତଥା ପୁଷ୍ଟିକର ପୋଷକ । ଏହାର ବିକଳ୍ପ ନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ । ଶିଶୁର ସ୍ୱାସ୍ଥ୍ୟ ବୃଦ୍ଧି ଓ ବିକାଶ ନିମନ୍ତେ ମାତୃ ସ୍ତନ୍ୟପାନ ଏକ ଅତୁଳନୀୟ ତଥା ଆଦର୍ଶ ପୁଷ୍ଟିକର ଖାଦ୍ୟ ଓ ପାନୀୟ । ମାଆ କ୍ଷୀରରେ ଶିଶୁ ପାଇଁ ପୂରି ରହିଛି ଆବଶ୍ୟକୀୟ ସମସ୍ତ ପୁଷ୍ଟି ସାଧନକାରୀ ଉପାଦାନ ।

ମାଆ କ୍ଷୀରର ମୁଖ୍ୟ ଉପାଦାନଗୁଡ଼ିକ ହେଉଛି ଚିନି ଅଂଶ, ପୁଷ୍ଟିସାର ଓ ସ୍ନେହସାର । ଏଗୁଡ଼ିକ ଏପରି ଭାବରେ ରହିଥାଆନ୍ତି

ଯାହା ଶିଶୁକୁ ହଜମ କରିବାରେ ସହଜ ହୋଇଥାଏ । ବିଶେଷ କରି ଏଥିରେ ଥିବା ଲାକ୍‌ଟୋଜ୍ (Lactose) ଓ ଫ୍ୟାଟିଅମ୍ଳ (Fatty Acid) ଶରୀର ବିକାଶରେ ବେଶ୍ ସହାୟକ । ମାଆ କ୍ଷୀର ଛୁଆର ଅନ୍ତନଳିରେ ଥିବା ଜୀବାଣୁଗୁଡ଼ିକୁ ମାରି ଦେଇଥାଏ । ଏହାଛଡ଼ା ଏଥିରେ ଇମ୍ୟୁନୋଗ୍ଲୋବୁଲିନ୍ (Immunoglobulin), ଜୀବନୀକା କ ଓ ଘ (Vitamin A & D) ପ୍ରଚୁର ପରିମାଣରେ ଭରି ରହିଥାଏ । ସନ୍ତାନ ଜନ୍ମ ହେବା ପରେ ପରେ ମାଆର କଷ କ୍ଷୀର ବା କଷାକ୍ଷୀର (Colostrum) ଦେଖିବାକୁ ଈଷତ୍ ହଳଦିଆ ଓ ସାମାନ୍ୟ ବହଳିଆ । ଅନେକ ମାଆ ତାକୁ ନିଗିଡ଼ାଇ ଫୋପାଡ଼ି ଦେଉଥାଆନ୍ତି । ଏକ୍ଷୀରରେ ରୋଗ ପ୍ରତିରୋଧକ ଶକ୍ତି ରହିଥାଏ । ତେଣୁ ତାକୁ ସେ ଶିଶୁକୁ ପିଆଇବା ଉଚିତ୍ । ତା'ଛଡ଼ା ଶିଶୁ ଯେତେବେଳେ ଚାହୁଁଥିବା ଖାଇବା ପାଇଁ (Demand feeding) ସେତେବେଳେ ଯେମିତି ହେଲେ ଖୁଆଇବା ଉଚିତ୍ । ମାଆ କ୍ଷୀର ଶୁଦ୍ଧ ବା ବିଶୁଦ୍ଧ ଓ ବିଭିନ୍ନ ଖାଦ୍ୟ ପ୍ରାଣଯୁକ୍ତ ହୋଇଥିବାରୁ ମାଆମାନେ ଏ ପ୍ରକାର ପ୍ରାକୃତିକ ଖାଦ୍ୟରୁ ବଂଚିତ କରିବା ଅନୁଚିତ । ମାଆ ସ୍ତନଯୁଗଳରେ କ୍ଷୀର ଅଧିକ ବାହାରିଲେ ମାଆ ତାହାକୁ କାଢ଼ି ଫ୍ରିଜ୍‌ରେ ରଖି ପରେ ଛୁଆକୁ ଦେଇପାରନ୍ତି, କିନ୍ତୁ ନିଗାଡ଼ି ଫୋପାଡ଼ି ଦେବା ଠିକ୍ ନୁହେଁ । କର୍ମରତ ମହିଳାମାନେ ଏପରି କରିପାରନ୍ତି ।

ସ୍ତନ୍ୟପାନର ନିୟମ

ଜନ୍ମ ପରେ ସନ୍ତାନକୁ କ୍ଷୀର ପିଆଇବା ପାଇଁ କେତେକ ନିୟମ ରହିଛି । ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥା (WHO) ଓ ୟୁନିସେଫ୍ (UNICEF) ଏଥିପାଇଁ ଦଶଟି ନିୟମ ପ୍ରଣୟନ କରିଛନ୍ତି । ସେଗୁଡ଼ିକ ନିମ୍ନରେ ଆଲୋଚନା କରାଗଲା -

୧. ସ୍ତନ୍ୟପାନର ନୀତି ଏକ ଲିଖିତ ନିୟମ ଭାବରେ ରହିବା ବିଧେୟ ।

୨. ସ୍ୱାସ୍ଥ୍ୟ କର୍ମୀମାନେ ଏହି ନୀତି ପାଇଁ ତାଲିମ (Training) ପାଇବା ଉଚିତ୍ ।

୩. ପ୍ରସୂତ ପରିଚର୍ଯ୍ୟାଗାରକୁ ଆସୁଥିବା ଗର୍ଭବତୀ ମହିଳାମାନେ ସ୍ତନ୍ୟପାନର ସୁବିଧା ବିଷୟରେ ଜାଣିବା ଉଚିତ୍ ।

୪. ପ୍ରସବର ଅଧଘଣ୍ଟା ମଧ୍ୟରେ ସଦ୍ୟ ପ୍ରସୂତିମାନେ ନିଜ ଶିଶୁକୁ ଯେପରି ସ୍ତନ୍ୟପାନ କରାଇପାରିବେ ସେଥିପାଇଁ ସାହାଯ୍ୟ କରିବା ଉଚିତ୍ ।

୫. ସ୍ୱାସ୍ଥ୍ୟକର୍ମୀମାନେ ମାଆମାନଙ୍କୁ ସ୍ତନ୍ୟପାନ ବେଳେ ଶିଶୁକୁ ଧରିବା ଓ ଖୁଆଇବା ପାଇଁ ଶିଖାଇ ଦେବା ଉଚିତ୍ ।

୬. କୌଣସି କାରଣ ନଥାଇ ଶିଶୁମାନଙ୍କୁ କୌଣସି ପ୍ରକାରେ ମାଆ କ୍ଷୀର ବ୍ୟତୀତ ବାହାର ପାଣି, ମହୁପାଣି, ଡବା କ୍ଷୀର ବା ଅନ୍ୟାନ୍ୟ ଜିନିଷ ଦେବା ଅନୁଚିତ୍ ।

୭. ଦିନର ୨୪ ଘଣ୍ଟା ମାଆ ପାଖରେ ଶିଶୁ ରହିବା ଉଚିତ୍ ।

୮. ଶିଶୁ କାନ୍ଦିବା ସମୟରେ ସଂଗେସଂଗେ ମାଆ କ୍ଷୀର ଖୁଆଇବା ଭଲ ।

୯. ଶିଶୁକୁ କୃତ୍ରିମ ନିପଲ (Artificial Nipple) ଦେବା ଠିକ୍ ନୁହେଁ ।

୧୦. ମାଆ ଓ ଶିଶୁକୁ ହସପିଟାଲରୁ ଯିବାକୁ ଅନୁମତି ଦେବା ବେଳେ ସ୍ତନ୍ୟପାନ କରାଇବା ସହଯୋଗୀ ଦଳ (Breast Feeding Support Group) ମାଆମାନଙ୍କୁ ସ୍ତନ୍ୟଦାନ ସମ୍ପର୍କରେ ପରାମର୍ଶ ଦେବା ଉଚିତ୍ ।

**ମାଆର କର୍ତ୍ତବ୍ୟ**

ଗର୍ଭ ସଂଚାର ପୂର୍ବରୁ, ଗର୍ଭ ସଂଚାର ସମୟରେ ଓ ସନ୍ତାନ ପ୍ରସବ ପରେ ମାଆମାନେ ତାଙ୍କର ଖାଦ୍ୟ ପାନୀୟ ପ୍ରତି ବେଶ୍ ସଚେତନଶୀଳ ହେବା ଆବଶ୍ୟକ । ମାଆମାନେ ଉପଯୁକ୍ତ ପୁଷ୍ଟିକର ଖାଦ୍ୟ ଖାଉଥିଲେ ବା ଖାଇଥିଲେ ସେଥିରୁ ମିଳୁଥିବା ଖାଦ୍ୟ ହିଁ ଶିଶୁମାନଙ୍କ ପାଇଁ ଉପଯୁକ୍ତ ଖାଦ୍ୟ ହେବ । ଅନେକ ସମୟରେ ଦେଖିବାକୁ ମିଳେ ଯେ ମାଆମାନଙ୍କର କ୍ଷୀର ହେଉନାହିଁ । ତା'ର କାରଣ ଅପପୁଷ୍ଟି ବା ଉପଯୁକ୍ତ ଖାଦ୍ୟର ଅଭାବ । ସେ ସ୍ଥଳରେ ଶିଶୁଟି ମାଆଠାରୁ ଉପଯୁକ୍ତ ପୋଷକ ନ ପାଇ ସେ ବି ବିକଳାଙ୍ଗ ବା ଅନୁପଯୁକ୍ତ ସ୍ୱାସ୍ଥ୍ୟର ସମ୍ମୁଖୀନ ହୋଇଥାଏ । ସାଧାରଣ ପ୍ରସବର ଅଧଘଣ୍ଟା ମଧ୍ୟରେ ମାଆ ଶିଶୁକୁ ନିଜ କୋଳରେ ଧରି କ୍ଷୀର ଖୁଆଇବା ଉଚିତ୍ । କ୍ଷୀର ପାନ କରାଇବା ସମୟରେ ନରମ ଭାବରେ ଶିଶୁର ପେଟକୁ ଚିପିଧରି କ୍ଷୀର ଖୁଆଇଲେ ପେଟରେ ପଵନ ରହିଯାଇନଥାଏ । ନ ଚିପି ଶିଶୁକୁ କ୍ଷୀର ପାନ କରାଇଲେ ଶିଶୁ ପେଟରେ ପଵନ ରହିବାର ସମ୍ଭାବନା ବେଶ୍ ଅଧିକ । ସେ ସ୍ଥଳରେ ସନ୍ତାନଟି ଅସୁସ୍ଥ ଅନୁଭବ କରିବ ଓ କାନ୍ଦିବ । ଏପରି କ୍ଷେତ୍ରରେ ଡାକ୍ତରଙ୍କ ସାହାଯ୍ୟ ନେବା ଉଚିତ୍ ବା ନିଜେ ପିଲାକୁ ପେଟମାଡ଼ି ଶୁଆଇ ଧୀରେ ଧୀରେ ପିଠିକୁ ବାଡେଇଲେ ପେଟରୁ ପଵନ ବାହାରି ଯାଇଥାଏ । ଗର୍ଭବତୀ ମାଆମାନେ ପରିବାପତ୍ର, ଟଟକା ଫଳ, ଲାଉ, ଶାଗ, କ୍ଷୀର ଇତ୍ୟାଦି ଖାଇବା ସହ ଯଥେଷ୍ଟ ପରିମାଣରେ ପାଣି ପିଇବା ଉଚିତ୍ । ଏ ସମୟରେ ଗଜାମୁଗ, ଗଜାବୁଟ ଓ ଗଜା ମଟର ଆଦି ଖାଇଲେ ବହୁତ ଭଲ । ମାଆମାନେ ଦୁଇବର୍ଷ ପର୍ଯ୍ୟନ୍ତ ଲଗାତର ଭାବରେ ଖୁସିରେ ନିଜ ସନ୍ତାନକୁ କ୍ଷୀର ପାନ କରାଇବା ଉଚିତ୍ । ଏଥିସହ ମାଆମାନଙ୍କର ସଠିକ୍ ଜ୍ଞାନ, ସହାୟକ ପରିବେଶ ଓ ବିଶ୍ୱାସ ହେଉଛି ପ୍ରଧାନ ବିଷୟ ।

ଏହା ହିଁ ମାଆମାନଙ୍କୁ ଶିଶୁକୁ ସ୍ତନ୍ୟପାନ କରିବାରେ ସମର୍ଥ କରାଇଥାଏ ।

**ସ୍ତନ୍ୟଦାନର ଅବଦାନ**

ପ୍ରଥମତଃ ମାଆର ସ୍ତନ୍ୟ ଶିଶୁ ପାନ କରିବା ଦ୍ୱାରା ଶିଶୁର ଶାରୀରିକ ଓ ମାନସିକ ବିକାଶ ସହ ଇନ୍ଦ୍ରିୟଗୁଡ଼ିକର ବିକାଶ ସମ୍ଭବ ହୋଇଥାଏ । ସର୍ବୋପରି ଶିଶୁର ଧୀଶକ୍ତି, ରୋଗ ନିରୋଧକ ଶକ୍ତି ବୃଦ୍ଧି ପାଇଥାଏ ଏବଂ ପ୍ରତ୍ୟୁତ୍ପନ୍ନମତିତା ବଢ଼ାଇ ଥାଏ । ଦ୍ୱିତୀୟତଃ ସ୍ତନ୍ୟପାନ ଦ୍ୱାରା ପାଞ୍ଚବର୍ଷରୁ କମ୍ ବୟସର ଶିଶୁ ମୃତ୍ୟୁହାର ହ୍ରାସ କରିବାରେ ସାହାଯ୍ୟ କରିଥାଏ । ଶିଶୁ ଉପକାର ପାଇବା ଛଡ଼ା ମାଆର ବେଶ୍ ଉପକାର ମଧ ଘଟିଥାଏ । ଜନ୍ମ ପରେ ଶିଶୁ ମାଆଠାରୁ ସ୍ତନ୍ୟପାନ କରିବା ଦ୍ୱାରା ମାଆମାନଙ୍କର ପ୍ରସୂତିପର ଅତ୍ୟଧିକ ରକ୍ତସ୍ରାବ ଓ ରକ୍ତହୀନତାର ଆଶଙ୍କା ଦୂର ହୋଇଥାଏ । ମାଆର ପରବର୍ତ୍ତୀ ଗର୍ଭ ସଂଚାରର ବ୍ୟବଧାନ ବୃଦ୍ଧି କରେ । ମାଆମାନଙ୍କର ସ୍ତନ ଓ ଜରାୟୁ କର୍କଟ ରୋଗର ସମ୍ଭାବନାକୁ ଦୂର କରିବାରେ ସାହାଯ୍ୟ କରିଥାଏ । ସର୍ବୋପରି ସ୍ତନ୍ୟପାନ ଦ୍ୱାରା ସ୍ତ୍ରୀଲୋକମାନଙ୍କର ଗର୍ଭଧାରଣ ସମୟରେ ବୃଦ୍ଧି ପାଇଥିବା ଅତ୍ୟଧିକ ଓଜନର ହ୍ରାସ ହୋଇଥାଏ ।

**ସରକାରଙ୍କ ପଦକ୍ଷେପ**

ସୁଖ ପ୍ରସବ, ଶିଶୁ ମୃତ୍ୟୁହାର ହ୍ରାସ, ଗର୍ଭସଂଚାର ସମୟରେ ଆବଶ୍ୟକୀୟ ଔଷଧର ଯୋଗାଣ । ସ୍ୱାସ୍ଥ୍ୟକର୍ମୀମାନଙ୍କର ସହଯୋଗ ତଥା ମହିଳାମାନଙ୍କୁ ସଚେତନ କରାଇବା ଆଦି ଆମ ସରକାରଙ୍କ ନିରନ୍ତର ଉଦ୍ୟମ ବେଶ୍ ପ୍ରଶଂସନୀୟ । ସେଥିପାଇଁ ଶିଶୁ ମୃତ୍ୟୁହାର ଆମର ବର୍ତ୍ତମାନ ବେଶ୍ କମ୍ । ଏ ଦିଗରେ ରାଜ୍ୟ ସରକାରଙ୍କ ସ୍ୱାସ୍ଥ୍ୟ ବିଭାଗ, ପରିବାର ନିୟୋଜନ ବିଭାଗ ଏବଂ କେନ୍ଦ୍ର ସରକାରଙ୍କ ମହିଳା ଓ ଶିଶୁ ବିକାଶ ବିଭାଗ (Women and Child Development Department), ଖାଦ୍ୟ ଓ ପୁଷ୍ଟିପୋଷକ ପରିଷଦ (Food and Nutrition Council) ଆଦି ବେଶ୍ ତତ୍ପର । ସବୁଠାରୁ ଖୁସିର ବିଷୟ ହେଉଛି ଗର୍ଭବତୀ ମହିଳାମାନଙ୍କୁ ସଚେତନ କରାଇବା ନିମନ୍ତେ ପ୍ରତ୍ୟେକ ବର୍ଷ ଅଗଷ୍ଟ ୧ରୁ ୭ ପର୍ଯ୍ୟନ୍ତ ବିଶ୍ୱ ସ୍ତନ୍ୟପାନ ସପ୍ତାହ (World Breast Feeding Week) ପାଳନ କରାଯାଉଛି । ଭାରତ ତଥା ଓଡ଼ିଶାର ସବୁ ଜିଲ୍ଲାମାନଙ୍କରେ ଏ ସପ୍ତାହ ପାଳନର ଆଭିମୁଖ୍ୟ ହେଉଛି ଯେ ଗର୍ଭବତୀ ମାଆମାନେ, ସନ୍ତାନ ପ୍ରସବ ପରେ ତାଙ୍କ ସନ୍ତାନମାନଙ୍କୁ କିପରି ଖୁସିରେ ସ୍ତନ୍ୟପାନ କରାଇବା । ଆମେ ସମସ୍ତେ ମିଳିମିଶି ଏ ଦିଗରେ ଚେଷ୍ଟାକଲେ, ମାଆମାନଙ୍କୁ ଅବଗତ କରାଇଲେ ତଥା ସମାଜର ସାଧାରଣ ମହିଳାମାନଙ୍କୁ ବୁଝାଇପାରିଲେ ଆମ ଦେଶ ତଥା ରାଜ୍ୟର ମାଆ ଓ ଶିଶୁମାନଙ୍କର ସମସ୍ୟା ଅନେକ ପରିମାଣରେ ଦୂରେଇ ଯିବ । ତାହାହେଲେ ଆମେ ସମସ୍ତେ ହାତ ମିଳାଇ ଏ ଦିଗରେ ସହଯୋଗ କରିବା ଠିକ୍ ହେବ ନାହିଁ କି ?

ଅର୍ଥନୀତି ବିଭାଗ
ପ୍ରାଣନାଥ ମହାବିଦ୍ୟାଳୟ
ଖୋର୍ଦ୍ଧା - ୭୫୨୦୫୫

---

# ରାଜ୍ୟର ୧୯ଟି ସେତୁ ପ୍ରକଳ୍ପ ପାଇଁ ନାବାର୍ଡ଼ର ଅର୍ଥ ମଞ୍ଜୁର

ରାଜ୍ୟର ଗ୍ରାମ୍ୟ ସଡ଼କ ଯୋଗାଯୋଗ କ୍ଷେତ୍ରରେ ଉଲ୍ଲେଖନୀୟ ପରିବର୍ତ୍ତନ ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ, ଗ୍ରାମ୍ୟ ଉନ୍ନୟନ, ଶିକ୍ଷ ଓ ଆଇନ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ, ମୁଖ୍ୟ ଶାସନ ସଚିବ ଡଃ ସୁବାସ ପାଣି ଓ ବିଭାଗୀୟ ସଚିବ ଶ୍ରୀ ଅରବିନ୍ଦ ବେହେରା ବିଶେଷ ଗୁରୁତ୍ୱ ଆରୋପ କରିବା ସହ ନାବାର୍ଡ଼ କର୍ତ୍ତୃପକ୍ଷଙ୍କ ଦ୍ୱାରା ରାଜ୍ୟର ୧୯ଟି ସେତୁ ପ୍ରକଳ୍ପ ପାଇଁ ଅର୍ଥ ସହାୟତା ଆଣିବାରେ ସକ୍ଷମ ହୋଇପାରିଛନ୍ତି ।

କୃଷି ଓ ଗ୍ରାମ୍ୟ ଉନ୍ନୟନ ବ୍ୟାଙ୍କ (ନାବାର୍ଡ଼) ଓଡ଼ିଶାର ଏହି ୧୯ ଗୋଟି ସେତୁ ପ୍ରକଳ୍ପ ପାଇଁ ୩୩ କୋଟି ୩୦ ଲକ୍ଷ ୬୫ ହଜାର ଟଙ୍କା ମଞ୍ଜୁର କରିଛନ୍ତି । ନାବାର୍ଡ଼ ଯୋଗାଇ ଦେଉଥିବା ଏହି ଅର୍ଥରେ, ଗ୍ରାମ୍ୟ ଉନ୍ନୟନ ବିଭାଗ ପକ୍ଷରୁ କେନ୍ଦ୍ରାପଡ଼ା ଜିଲ୍ଲାରେ ପାଞ୍ଚୋଟି, ଗଞ୍ଜାମ, ଫୁଲବାଣୀ, କୋରାପୁଟ ଓ କଟକ ଜିଲ୍ଲାରେ ଦୁଇଟି କରି ଏବଂ ସୋନପୁର, ପୁରୀ, ଖୋରଧା, କେନ୍ଦୁଝର, ବଲାଙ୍ଗୀର ଓ ଭଦ୍ରକ ଜିଲ୍ଲାରେ ଗୋଟିଏ ସେତୁ ବିଭିନ୍ନ ନଦୀ ନାଳ ଉପରେ ନିର୍ମାଣ କରାଯିବ । ଏହି ୧୯ ଗୋଟି ପ୍ରକଳ୍ପ ପାଇଁ ସମୁଦାୟ ୪୧ କୋଟି ୬୩ ଲକ୍ଷ ୩୨ ହଜାର ଟଙ୍କାର ଆବଶ୍ୟକତା ରହିଛି ।

ସୌଜନ୍ୟ - ଗବେଷଣା ଓ ତଥ୍ୟ ସୂଚନା ଶାଖା, ସୂଚନା ଓ ଲୋକ ସଂପର୍କ ବିଭାଗ

# ପ୍ରାକୃତିକ ବିପର୍ଯ୍ୟୟ ଓ ଅର୍ଥନୀତି

ପ୍ରଶାନ୍ତ ଷଡଙ୍ଗୀ

**ଜ**ଳ ହିଁ ଜୀବନ । ଜଳ ବହୁଳେ ସୃଷ୍ଟିନାଶ, ଜଳ ବିହୁନେ ସୃଷ୍ଟି ନାଶ । ଉକ୍ତ ଦୁଇଟି ଉକ୍ତି ଓଡ଼ିଶାରେ ବିଗତ ବର୍ଷଗୁଡ଼ିକରେ ଅର୍ଥନୈତିକ ମେରୁଦଣ୍ଡକୁ ଦୁର୍ବଳ କରି ଚାଲିଛି । ଯଥାର୍ଥରେ କହିବାକୁ ଗଲେ ଏକପକ୍ଷରେ ପ୍ରକୃତି ଓଡ଼ିଶାକୁ ଅପର୍ଯ୍ୟାପ୍ତ ପ୍ରାକୃତିକ ସମ୍ପଦରେ ଭରି ଦେଇଥିବା ବେଳେ ଅନ୍ୟପକ୍ଷରେ ବାରମ୍ବାର ପ୍ରାକୃତିକ ବିପର୍ଯ୍ୟୟ ରାଜ୍ୟର ଅର୍ଥନୀତିକୁ ବିପତ୍ତି ମଧ୍ୟକୁ ଠେଲିବାର କେତୋଟି ମୁଖ୍ୟ କାରଣଗୁଡ଼ିକ ମଧ୍ୟରୁ ପ୍ରମୁଖ କାରଣ । ପ୍ରାକୃତିକ ବିପର୍ଯ୍ୟୟ ସହିତ ରାଜ୍ୟ ତଥା ଦେଶରେ ରାଜନୈତିକ ଅସ୍ଥିରତା, ରାଜ୍ୟର ଭୌଗଳିକ ଅବସ୍ଥିତି, ଧାର୍ମିକ ଚିନ୍ତାଧାରା, ପାରମ୍ପରିକ ଜୀବନଶୈଳୀ, ନିରକ୍ଷରତା ଏବଂ ସର୍ବୋପରି ଆଗ୍ରହହୀନତା ପ୍ରଭୃତି ପଛୁଆ ଅର୍ଥନୀତି ପାଇଁ ଦାୟୀ । ତେବେ ବନ୍ୟା, ମରୁଡ଼ି, ବାତ୍ୟାଜନିତ ବିପର୍ଯ୍ୟୟ ଓଡ଼ିଶାର ଜନସାଧାରଣଙ୍କର ଚିର ସହଚର କହିଲେ ତ୍ରୁଟି ହେବ ନାହିଁ । ଗତ ପାଞ୍ଚବର୍ଷ ହେଲା ପ୍ରତିବର୍ଷ ଏହାର ମାତ୍ରା ବଢ଼ିବାରେ ଲାଗିଛି ।

ଗତ ଶହେବର୍ଷର ପରିସଂଖ୍ୟାନକୁ ବିଚାର କଲେ ଜଣାଯାଏ ଯେ ପ୍ରକୃତି ମାତ୍ର ଦଶବର୍ଷ ରାଜ୍ୟ ଉପରେ ଦୟା କରି ଦାଉ ସାଧି ନଥିବା ବେଳେ ଅବଶିଷ୍ଟ ନବେବର୍ଷ ଅଳ୍ପମାତ୍ରାରେ ହେଉ କିମ୍ବା ଅତିମାତ୍ରାରେ ହେଉ ରାଜ୍ୟବାସୀଙ୍କ ପାଇଁ ବିପଦ ସୃଷ୍ଟି କରିଛି । ବିଗତ ଶହେ ବର୍ଷ ମଧ୍ୟରେ ରାଜ୍ୟରେ ଅଣଚାଶଟି ବନ୍ୟା ଆସିଛି ଏବଂ ୧୯୬୭ ମସିହା ପରେ ବନ୍ୟାର ରୂପ କ୍ରମଶଃ ଭୟଙ୍କର ହୋଇ ଅନେକ ଧନଜୀବନ ନଷ୍ଟ କରିସାରିଛି । ୧୯୬୭ ମସିହାଠାରୁ ୨୦୦୩ ମସିହା ମଧ୍ୟରେ ରାଜ୍ୟରେ କ୍ରମଶଃ ୧୯୬୭-୭୫ ପ୍ରତିବର୍ଷ, ୧୯୭୭, ୧୯୮୦-୮୨ ପ୍ରତିବର୍ଷ, ୧୯୮୫, ୧୯୯୦, ୧୯୯୨, ୧୯୯୪, ୧୯୯୫, ୨୦୦୧, ୨୦୦୩ ପ୍ରଭୃତି ମସିହାଗୁଡ଼ିକରେ ସମୁଦାୟ କୋଡିଏ ଥର ବନ୍ୟା ଆସିଥିବାବେଳେ ମାତ୍ର ସାତବର୍ଷ ବନ୍ୟା ଆସିନାହିଁ । ଏହି କୋଡିଏ ଥରର ବନ୍ୟା ମଧ୍ୟରୁ ପାଞ୍ଚଥର ଅର୍ଥାତ୍- ୧୯୭୫, ୧୯୮୦, ୧୯୮୨, ୨୦୦୧ ଓ ୨୦୦୨ର ବନ୍ୟା ବିଭୀଷିକା ଅତ୍ୟନ୍ତ ଭୟାବହ ଥିବାବେଳେ, ସାତ ବର୍ଷ ଅର୍ଥାତ୍- ୧୯୬୯, ୧୯୭୦, ୧୯୭୧, ୧୯୭୪, ୧୯୮୫, ୧୯୯୦ ଓ ୧୯୯୪ ମସିହାଗୁଡ଼ିକର ବନ୍ୟା ଅନେକ ଧନଜୀବନ ନଷ୍ଟ କରିଥିଲା ଏବଂ ଅବଶିଷ୍ଟ ଆଠବର୍ଷର ବନ୍ୟା ସାମାନ୍ୟ କ୍ଷତି ଘଟାଇଥିଲା । ସେହିପରି ମରୁଡ଼ି ଓ ବାତ୍ୟା ଅନ୍ୟାନ୍ୟ ବର୍ଷଗୁଡ଼ିକରେ ରାଜ୍ୟର ଅଳ୍ପ ହେଉ କିମ୍ବା ଅଧିକ ହେଉ ନିଶ୍ଚିତ କ୍ଷତି ଘଟାଇଛି ।

**ଓଡ଼ିଶାର ଅର୍ଥନୈତିକ ଚିତ୍ର**

ସମଗ୍ର ଭାରତବର୍ଷରେ ଓଡ଼ିଶା ଏକ ଦରିଦ୍ର ତଥା ଅନଗ୍ରସର ରାଜ୍ୟ ଭାବେ ପରିଗଣିତ । ଆମ ଦେଶ ତଥା ଅନ୍ୟାନ୍ୟ ରାଜ୍ୟମାନଙ୍କର ମୁଣ୍ଡପିଛା ଆୟ ତୁଳନାରେ ଏହି ରାଜ୍ୟର ମୁଣ୍ଡପିଛା ଆୟ ବହୁତ କମ୍ । ଭାରତ ସରକାରଙ୍କ ଦ୍ୱାରା ପ୍ରକାଶିତ ଏକ ସର୍ଭେ ରିପୋର୍ଟ ଅନୁଯାୟୀ ୧୯୮୦-୮୧ ମସିହାରେ ସର୍ବଭାରତୀୟ ସ୍ତରରେ ମୁଣ୍ଡପିଛା ଆୟ ବାର୍ଷିକ ଟଙ୍କା ୧୬୩୦/- ଥିବାବେଳେ ଓଡ଼ିଶାରେ ଏହା ୧୩୧୪/- ଟଙ୍କା ଥିଲା । ସେହିପରି ୧୯୯୩-୯୪ ଓ ୨୦୦୧-୦୨ ମସିହା ଆକଳନ ଅନୁସାରେ ସର୍ବଭାରତୀୟ ସ୍ତରରେ ଏହି ଅଙ୍କ ଯଥାକ୍ରମେ ୭୬୯୦/- ଟଙ୍କା ଓ ୧୦୭୫୪/- ଟଙ୍କାରେ ପହଞ୍ଚିଥିବାବେଳେ ଆମ ରାଜ୍ୟରେ ଏହା ଯଥାକ୍ରମେ ୪୮୯୬/- ଟଙ୍କା ଓ ୬୧୦୫/-ଟଙ୍କାରେ ସୀମିତ ରହିଥିଲା । ଉପରୋକ୍ତ ମୁଣ୍ଡପିଛା ଆୟଗୁଡ଼ିକୁ ତୁଳନା କଲେ ଜଣାଯାଏ ଯେ ଦେଶ ଏବଂ ରାଜ୍ୟର ମୁଣ୍ଡପିଛା ଆୟ ମଧ୍ୟରେ ବ୍ୟବଧାନ ୧୯୮୦-୮୧ ମସିହାରେ ଶତକଡ଼ା ୧୯ ଭାଗ ଥିବାବେଳେ ୧୯୯୩-୯୪ ଓ ୨୦୦୧-୦୨ ମସିହାରେ ଏହା ବୃଦ୍ଧି ପାଇ ଶତକଡ଼ା ୩୬ ଭାଗ ଓ ୪୩ ଭାଗରେ ପହଞ୍ଚିଥିଲା ଯାହାକି ରାଜ୍ୟର ଅର୍ଥନୈତିକ ପ୍ରଗତି ବେଶ୍ ମନ୍ଥର ବୋଲି ସୂଚନା ଦେଉଛି ।

କୌଣସି ରାଜ୍ୟ ତଥା ଦେଶର ଅର୍ଥନୀତିର ସ୍ଥିତିକୁ ବିଚାର କଲାବେଳେ ସେହି ରାଜ୍ୟ ବା ଦେଶର ସାମଗ୍ରିକ ଘରୋଇ ଉତ୍ପାଦନ (Gross State Domestic Product)ର ସ୍ଥିତିକୁ ବିଚାରକୁ ନେବା ଆବଶ୍ୟକ । ଏହି ପରିପ୍ରେକ୍ଷୀରେ ଭାରତୀୟ ରିଜର୍ଭ ବ୍ୟାଙ୍କଙ୍କ ଦ୍ୱାରା ପ୍ରକାଶିତ ବୁଲେଟିନ୍‌କୁ ବିଚାର କଲେ ଜଣାଯାଏ ଯେ ୨୦୦୦-୦୧ ମସିହାରେ ରାଜ୍ୟର ସାମଗ୍ରିକ ଘରୋଇ ଉତ୍ପାଦନ (G.S.D.P.) ମୋଟ ୩୭,୭୭୯ କୋଟି ଟଙ୍କା ଥିବାବେଳେ ଅନ୍ୟ

ରାଜ୍ୟ ଯଥା- ଆନ୍ଧ୍ରପ୍ରଦେଶ, ତାମିଲନାଡୁ, ମହାରାଷ୍ଟ୍ର ଓ ପଶ୍ଚିମବଙ୍ଗରେ ଏହି ପରିମାଣ ଅଧିକ ।

ସେହିପରି ଦାରିଦ୍ର୍ୟ ସୀମାରେଖା ଦୃଷ୍ଟିରୁ ବିଚାର କଲେ ଆମ ରାଜ୍ୟର ମୋଟ ଜନସଂଖ୍ୟା ୩୬,୮୦୪,୬୬୦ (୨୦୦୧ ମସିହା ଜନଗଣନା ଅନୁଯାୟୀ) ଜଣଙ୍କ ମଧ୍ୟରୁ ଶତକଡ଼ା ୪୭.୨ ଭାଗ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ରହିଥିବାର ପଞ୍ଜିକୃତ ହୋଇଛି, ଯାହା ସର୍ବଭାରତୀୟ ସ୍ତରରେ ସର୍ବାଧିକ । ସୁତରାଂ ରାଜ୍ୟ ଜନସଂଖ୍ୟାର ଏକ ବୃହତ୍ ଭାଗ ଦାରିଦ୍ର୍ୟ ସୀମାରେଖା ତଳେ ରହିଛି । ଏସବୁ ପରିସଂଖ୍ୟାନକୁ ଆଲୋଚନା କରିବାର କାରଣ ହେଉଛି ରାଜ୍ୟର ରୁଗ୍ଣ ଆର୍ଥିକ ସ୍ଥିତିର ଏକ ସଂକ୍ଷେପ ଚିତ୍ର ପ୍ରତିଫଳିତ କରିବା ।

## ବିପର୍ଯ୍ୟୟର ଅର୍ଥନୀତି ଉପରେ ପ୍ରଭାବ

ବିଶେଷଜ୍ଞଙ୍କ ମତରେ ପ୍ରାକୃତିକ ବିପର୍ଯ୍ୟୟଗୁଡ଼ିକର ସିଧା ପ୍ରଭାବ ଦେଶ ତଥା ରାଜ୍ୟର ଅର୍ଥନୀତି ଉପରେ ପଡ଼ିଥାଏ । ତେଣୁ ଏଠାରେ ଏହି ପ୍ରଭାବ ଏକ ଆଲୋଚନାର ବିଷୟ । ସଂଗୃହୀତ ତଥ୍ୟ ଅନୁସାରେ ୧୯୭୧ ମସିହାରେ ପ୍ରାକୃତିକ ବିପର୍ଯ୍ୟୟ ଯୋଗୁଁ ରାଜ୍ୟରେ ମୋଟ ୩.୧୪ କୋଟି ଟଙ୍କା ମୂଲ୍ୟର ସମ୍ପତ୍ତି କ୍ଷତିଗ୍ରସ୍ତ ହୋଇଥିବାବେଳେ ଏହି ପରିମାଣ କ୍ରମଶଃ ବୃଦ୍ଧିପାଇ ୧୯୭୨ ଓ ୧୯୭୩ ମସିହାରେ ଯଥାକ୍ରମେ ୧୨.୮୯ କୋଟି ଓ ୨୯.୦୮ କୋଟି ଟଙ୍କାରେ ପହଞ୍ଚିଥିଲା । ସେହିପରି ଏହା ୧୯୭୬ ମସିହାରେ ୧୭.୯୧ କୋଟି ଟଙ୍କା, ୧୯୭୯ ମସିହାରେ ୩୨.୪୮ କୋଟି ଟଙ୍କା ୧୯୮୪ ମସିହାରେ ୧୧୪.୪୯ କୋଟି ଟଙ୍କା, ୧୯୯୨ ମସିହାରେ ୧୫୪୯.୭ କୋଟି ଟଙ୍କା, ୧୯୯୩ ମସିହାରେ ୭୭୯.୦୮ କୋଟି ଟଙ୍କା ଏବଂ ୧୯୯୯ ମସିହାରେ ଏହାର ପରିମାଣ ୪୨୮.୭୬ କୋଟି ଟଙ୍କା ଥିବା କଥା ଗଣନାରୁ ଜଣାପଡ଼ିଛି । ତେଣୁ ୧୯୭୧-୧୯୯୯ ମସିହା ଅର୍ଥାତ୍ ଏହି ଅଣତିରିଶ ବର୍ଷ ମଧ୍ୟରେ ମୋଟ ୪୬୪୩.୯୭ କୋଟି ଟଙ୍କା ମୂଲ୍ୟର ଧନସମ୍ପତ୍ତି ରାଜ୍ୟର ନଷ୍ଟ ହୋଇଛି ।

ଏହି କ୍ଷତିର ପରିମାଣକୁ ସେହି ଦଶନ୍ଧି (Decade)ର ଜନସଂଖ୍ୟା ସହିତ ତୁଳନା କଲେ ରାଜ୍ୟର ପ୍ରତିବର୍ଷର ମୁଣ୍ଡପିଛା ସଂପତ୍ତିର କ୍ଷୟକ୍ଷତିର ପରିମାଣ ନିର୍ଣ୍ଣୟ କରିହେବ । ୧୯୭୧ ମସିହାରେ ରାଜ୍ୟର ମୁଣ୍ଡପିଛା କ୍ଷୟ ୧.୪୩ ଟଙ୍କା ଥିବାବେଳେ, ୧୯୭୨ ମସିହାରେ ୫.୭୭ ଟଙ୍କା, ୧୯୮୨ ମସିହାରେ ୩୯.୮୮ ଟଙ୍କା, ୧୯୯୦ ମସିହାରେ ୬୪.୨୦ ଟଙ୍କା, ୧୯୯୨ ମସିହାରେ ୪୮୨.୩୦ ଟଙ୍କା ଏବଂ ୧୯୯୯ ମସିହାରେ ଏହା ୧୨୦.୩୨ ଟଙ୍କା ବୃଦ୍ଧି ପାଇବା କଥା ଗଣନାରୁ ଜଣାପଡ଼ିଛି । ତେଣୁ ମୋଟ ଉପରେ କହିବାକୁ ଗଲେ, ୧୯୭୧-୮୦ ମସିହା ମଧ୍ୟରେ ରାଜ୍ୟରେ ପ୍ରାୟ ୧୬୧.୨୧ କୋଟି ଟଙ୍କା ଅର୍ଥାତ୍ ଏହି ଦଶବର୍ଷ ମଧ୍ୟରେ ବର୍ଷକୁ ହାରାହାରି ୧୬.୧୨ କୋଟି ଟଙ୍କାର ସମ୍ପତ୍ତି କ୍ଷତିଗ୍ରସ୍ତ ହୋଇଛି । ଏହି ପରିମାଣ ୧୯୮୧-୯୦ ମଧ୍ୟରେ ୮୪୬.୩୨ କୋଟି ଟଙ୍କା ଯାହାକି ଏହି ଦଶବର୍ଷରେ ହାରାହାରି ବାର୍ଷିକ ପ୍ରାୟ ୮୪.୩୨ କୋଟି ଟଙ୍କା ଏବଂ ୧୯୯୧-୧୯୯୯ ମସିହା ମଧ୍ୟରେ ଏହି କ୍ଷତି ପରିମାଣ ମୋଟ ୩୬୩୬.୪୪ କୋଟି ଟଙ୍କା ଯାହା ଏହି ନଅବର୍ଷରେ ହାରାହାରି ପ୍ରାୟ ୪୦୪.୦୫ କୋଟି ଟଙ୍କାକୁ ବୃଦ୍ଧିପାଇଛି । ସେହିପରି ୧୯୭୧-୮୦ ମସିହା ମଧ୍ୟରେ ମୁଣ୍ଡପିଛା କ୍ଷତିର ପରିମାଣ ୬୬.୬୩ ଟଙ୍କା ଯାହା ଏହି ଦଶବର୍ଷରେ ବାର୍ଷିକ ହାରାହାରି ୬.୬୬ ଟଙ୍କା ଥିବାବେଳେ ଏହି ମୁଣ୍ଡପିଛା ପରିମାଣ ୧୯୮୧-୯୦ ମସିହା ମଧ୍ୟରେ ୨୯୩.୨୨ ଟଙ୍କା ତଥା ବାର୍ଷିକ ହାରାହାରି ୨୯.୩୨ ଟଙ୍କା ଏବଂ ୧୯୯୧-୯୯ ମଧ୍ୟରେ ଏହା ୧୧୦୫.୭୩ ଟଙ୍କା ଅର୍ଥାତ୍ ବାର୍ଷିକ ହାରାହାରି ୧୨୨.୮୬ ଟଙ୍କାକୁ ବୃଦ୍ଧି ପାଇଛି (ଉପର ସାରଣୀରେ ପ୍ରଦାନ କରାଗଲା) ।

**ସାରଣୀ : ପ୍ରାକୃତିକ ବିପର୍ଯ୍ୟୟ ଯୋଗୁଁ ସମ୍ପତ୍ତି କ୍ଷୟକ୍ଷତିର ମୂଲ୍ୟାଙ୍କନ**

| ବର୍ଷ | ସମ୍ପତ୍ତି କ୍ଷତିର ମୂଲ୍ୟ (କୋଟିରେ) | ହାରାହାରି ବାର୍ଷିକ କ୍ଷତିର ମୂଲ୍ୟ (କୋଟିରେ) | ମୁଣ୍ଡପିଛା ସମ୍ପତ୍ତି କ୍ଷତିର ମୂଲ୍ୟ (ଟଙ୍କାରେ) | ହାରାହାରି ବାର୍ଷିକ ମୁଣ୍ଡପିଛା କ୍ଷତିର ମୂଲ୍ୟ (ଟଙ୍କାରେ) |
|---|---|---|---|---|
| ୧୯୭୧-୮୦ | ୧୬୧.୨୧ | ୧୬.୧୨ | ୬୬.୬୩ | ୬.୬୬ |
| ୧୯୮୧-୯୦ | ୮୪୬.୩୨ | ୮୪.୩୨ | ୨୯୩.୨୨ | ୨୯.୩୨ |
| ୧୯୯୧-୯୯ | ୩୬୩୬.୪୪ | ୪୦୪.୦୫ | ୧୧୦୫.୭୩ | ୧୨୨.୮୬ |

## ବିଭିନ୍ନ ପଦକ୍ଷେପ

୧୯୯୯ ମସିହାରେ ମହାବାତ୍ୟାର ଭୟାବହତା ପରଠାରୁ ପ୍ରାକୃତିକ ବିପର୍ଯ୍ୟୟର ସଠିକ୍ ମୁକାବିଲା କରିବା ଉଭୟ ସରକାର ଏବଂ ପ୍ରଶାସନ ପାଇଁ ଏକ ଧୈର୍ଯ୍ୟ ଓ ଉଦ୍ଦୀପକ ବିଷୟ । ଅଷ୍ଟମ

ପଞ୍ଚବାର୍ଷିକ ଯୋଜନା କାଳରେ ରାଜ୍ୟରେ ମୋଟ ୧୪୫୬.୮୧ କୋଟି ଟଙ୍କା ଜଳସେଚନ ଓ ବନ୍ୟାନିୟନ୍ତ୍ରଣ ବାବଦରେ ଖର୍ଚ୍ଚ କରିଥିବାବେଳେ ନବମ ପଞ୍ଚବାର୍ଷିକ ଯୋଜନାରେ (୧୯୯୭-୦୨) ଏହି ବାବଦରେ ମୋଟ ୨୮୪୮.୨୫ କୋଟି ଟଙ୍କା ଖର୍ଚ୍ଚ କରାଯାଇଛି । ପ୍ରାକୃତିକ ବିପର୍ଯ୍ୟୟର ସଠିକ୍ ମୁକାବିଲା କ୍ଷେତ୍ରରେ ରାଜ୍ୟ ସରକାରଙ୍କ ଦ୍ୱାରା ଗଠିତ ଓଡ଼ିଶା ରାଜ୍ୟ ବିପର୍ଯ୍ୟୟ ପ୍ରଶମନ କର୍ତ୍ତୃପକ୍ଷ (OSDMA) ଏକ ମାଇଲଖୁଣ୍ଟ ସ୍ୱରୂପ । ୨୦୦୪ ମସିହା ମଇ ମାସ ସୁଦ୍ଧା ଏହି କର୍ତ୍ତୃପକ୍ଷ ବାତ୍ୟାପ୍ରପୀଡ଼ିତଙ୍କ ଥଇଥାନ ବାବଦରେ ୬୬ଟି ବହୁମୁଖୀ ବାତ୍ୟା ଆଶ୍ରୟସ୍ଥଳ (Multipurpose Cyclone Shelter), ବହୁମୁଖୀ ବିଦ୍ୟାଳୟ ଗୃହ ନିର୍ମାଣ ଉଦ୍ଦେଶ୍ୟରେ - ୫୬୬୦ଟି ପ୍ରାଥମିକ ବିଦ୍ୟାଳୟ ଗୃହ, ୧୦୬୬ଟି ଉଚ୍ଚବିଦ୍ୟାଳୟ ଗୃହ, ସେହିପରି ପରିବାର ବାସୋପଯୋଗୀ ଗୃହ (Family Dwelling Units) ବାବଦରେ ୫୭୧୨୬୨ଟି ଇନ୍ଦିରା ଆବାସ ଗୃହ, ସ୍ୱାସ୍ଥ୍ୟରକ୍ଷା ବାବଦରେ - ୧୯୪ଟି ସ୍ୱାସ୍ଥ୍ୟ ଅନୁଷ୍ଠାନ, ୫୫ଟି ସ୍ୱାସ୍ଥ୍ୟକେନ୍ଦ୍ର ଇତ୍ୟାଦିର ନିର୍ମାଣକାର୍ଯ୍ୟ ସଂପୂର୍ଣ୍ଣ ହୋଇଥିବାବେଳେ ଅନେକ ପ୍ରକଳ୍ପ ଦ୍ରୁତଗତିରେ ଆଗେଇ ଚାଲିଛି ।

**ଉପସଂହାର**

ଓଡ଼ିଶାରୁ ପ୍ରାକୃତିକ ବିପର୍ଯ୍ୟୟକୁ ବନ୍ଦ କରିବା ମାନବ ଶକ୍ତି ଉର୍ଦ୍ଧ୍ୱରେ । ତେବେ ଏହା ଯୋଗୁଁ ହେଉଥିବା କ୍ଷୟକ୍ଷତିକୁ ଭରଣା କରିବା ଏବଂ ନିୟନ୍ତ୍ରଣ କରିବା ମନୁଷ୍ୟ ପକ୍ଷରେ ଅସମ୍ଭବ ନୁହେଁ । ଉପରୋକ୍ତ ଆଲୋଚନାରୁ ପ୍ରାକୃତିକ ବିପର୍ଯ୍ୟୟର ପ୍ରଭାବ ଓଡ଼ିଶାର ଅର୍ଥନୈତିକ ମେରୁଦଣ୍ଡକୁ ଯେ ଦୁର୍ବଳ କରିଛି ସେଥିରେ ତିଳେ ହେଲେ ସନ୍ଦେହ ନାହିଁ । ତେବେ ବାରମ୍ବାର ବିପର୍ଯ୍ୟୟର ପ୍ରକୃଷ୍ଟ କାରଣ ନିରୂପଣ କରିବା ନିଶ୍ଚିତ ଭାବରେ ଏକ ଗବେଷଣାର ବିଷୟ ଏବଂ ଏଥିପ୍ରତି ଉଭୟ ସରକାର ଏବଂ ବୁଦ୍ଧିଜୀବୀ ମହଲ ଧ୍ୟାନ ଦେବା ନିତାନ୍ତ ଆବଶ୍ୟକ । ବିପର୍ଯ୍ୟୟର ଆଗୁଆ ମୁକାବିଲା ପାଇଁ ଜନସଚେତନତା, ମିଳିତ ସଂଘବଦ୍ଧ ଉଦ୍‌ଯୋଗ, ନିଃସ୍ୱାର୍ଥପର ଆନ୍ତରିକ ଉଦ୍ୟମ, ଅକ୍ଳାନ୍ତ ପରିଶ୍ରମ ଏବଂ ବିନିଯୋଗ ଯେ ନିତାନ୍ତ ଜରୁରୀ ଏହା କେହି ଅସ୍ୱୀକାର କରିବେ ନାହିଁ । ତେବେ ଓଡ଼ିଶା ରାଜ୍ୟ ବିପର୍ଯ୍ୟୟ ପ୍ରଶମନ କର୍ତ୍ତୃପକ୍ଷ (OSDMA)ର ଗଠନ ନିଶ୍ଚିତ ପକ୍ଷେ ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ । ଏହି ସ୍ୱଳ୍ପ ସମୟ ମଧ୍ୟରେ ପ୍ରଶମନ କର୍ତ୍ତୃପକ୍ଷ ନେଇଥିବା ବିଭିନ୍ନ ପଦକ୍ଷେପ ଏବଂ ଏହାର କାର୍ଯ୍ୟକାରିତା ନିଶ୍ଚିତ ଭାବରେ ଯେ ଉଚ୍ଚ ପ୍ରଶଂସାଯୋଗ୍ୟ ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।

**ସହାୟକ ଗ୍ରନ୍ଥସୂଚୀ :**

୧. ନଟବର ଖୁଣ୍ଟିଆ - 'ଓଡ଼ିଶାରେ ବନ୍ୟା ବିପ୍ଳାତ : ରବି ଚାଷ ପାଇଁ ଦୀର୍ଘମିଆଦି ଯୋଜନା ଆବଶ୍ୟକ', ଉତ୍କଳ ପ୍ରସଙ୍ଗ, ନଭେମ୍ବର, ୨୦୦୩ ।

୨. ଡଃ. ସିଦ୍ଧାର୍ଥ କାନୁନ୍‌ଗୋ - 'ଓଡ଼ିଶା ଅର୍ଥନୀତିର ସ୍ଥିତି - ଏକ ସମୀକ୍ଷା', ଯୋଜନା (ଓଡ଼ିଆ), ଜୁନ, ୨୦୦୪ ।

୩. ଡଃ. ବୈଦ୍ୟନାଥ ମିଶ୍ର - 'ଓଡ଼ିଶା ଅର୍ଥନୀତିର ସ୍ଥିତି', ଯୋଜନା (ଓଡ଼ିଆ), ମଇ, ୨୦୦୪ ।

ଗବେଷକ, ଅର୍ଥନୀତି ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ
ବ୍ରହ୍ମପୁର - ୭୬୦୦୦୭




ବ୍ରହ୍ମପୁରଠାରେ ଜେ.ଏନ୍.ଟାଟା ଟେକ୍‌ନିକାଲ ଟ୍ରେନିଂ ଏଜୁକେସନ ସେଣ୍ଟର ଉଦ୍‌ଘାଟନ ପରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଏହାକୁ ବୁଲି ଦେଖୁଛନ୍ତି । (୨୦.୦୪.୦୫)

# ଲିଙ୍ଗରାଜଙ୍କ ରୁକୁଣା ରଥ

ବୈକୁଣ୍ଠନାଥ ମହାପାତ୍ର

ଓଁ ବନ୍ଦେ ଦେବ ଉମାପତିଂ ସୁର ଗୁରୁ ବନ୍ଦେ ଜଗତ କାରଣମ୍ ।
ବନ୍ଦେ ପନ୍ନଗ ଭୁଷଣମ୍ ମୃଗଧରଂ ପଶୁନା ପତିଂ ॥

ଲିଙ୍ଗରାଜଙ୍କ ରୁକୁଣା ରଥ ଅଶୋକାଷ୍ଟମୀ ଯାତ୍ରା ଚୈତ୍ରମାସ ଶୁକ୍ଳପକ୍ଷ ଅଷ୍ଟମୀ ତିଥିରେ ହୁଏ । ଏ ଯାତ୍ରା ସମ୍ବନ୍ଧରେ ନାନା ପୁରାଣରେ ବର୍ଣ୍ଣିତ ଅଛି । କପିଳ ସଂହିତା, ଏକାମ୍ର ଚନ୍ଦ୍ରିକା, ଶିବ ପୁରାଣ, ଲିଙ୍ଗ ପୁରାଣ, ମତ୍ସ୍ୟ ପୁରାଣରେ ଉଲ୍ଲେଖ ଅଛି । ଲିଙ୍ଗରାଜଙ୍କ ଚଉଦ ଗୋଟି ଯାତ୍ରା ମଧ୍ୟରୁ ଅଶୋକାଷ୍ଟମୀ ସର୍ବଶ୍ରେଷ୍ଠ ଯାତ୍ରା ।

ଚତୁର୍ଦ୍ଦଶ ଯାତ୍ରା ମଧ୍ୟରେ ସର୍ବ ପ୍ରଧାନ ଅଶୋକାଷ୍ଟମୀ ମହୋତ୍ସବ (ଲିଙ୍ଗ ପୁରାଣ) । ପ୍ରଭୁ ଲିଙ୍ଗରାଜଙ୍କ ରୁକୁଣା ରଥ ନିର୍ମାଣରେ ମଧ୍ୟ ବହୁ ନିୟମ ଓ ଶାସ୍ତ୍ରୀୟ ପ୍ରମାଣ ଅଛି । ରୁକୁଣା ରଥ ନିର୍ମାଣ ପାଇଁ ଶ୍ରୀପଞ୍ଚମୀ ଦିନ ଶୁଭାନୁକୂଳ କରି କାଷ୍ଠ ଛେଦନ କରାଯାଏ । କାଠ ସମୂହକୁ ମହାଶିବରାତ୍ରୀ ପର ତୃତୀୟା ଦିନ ରଥ ମହାଖଳାକୁ ଅଣାଯାଇ କାଷ୍ଠକୁ ପୂଜନ କରି ରଥ ନିର୍ମାଣ କାର୍ଯ୍ୟ ଆରମ୍ଭ କରାଯାଏ ।

କାଷ୍ଠାଙ୍କ ଛେଦନାର୍ଥାୟ - ପ୍ରେରୟେ ସୁକର୍ମଣି
ତାନି କାଷ୍ଠାନି ସଂହୃତ୍ୟ - ପତାକା ଯଷ୍ଟିନଃ ସ୍ୱନୈଃ ।
ରଥଂ ଚ କାରୟେତ ଶୁଭଂ - ଚତୁଷ୍ଚକ୍ରଂ ମନୋହରଂ
ଏକ ବିଂଶକୁ ରୋଚ୍ଛାୟାଂ - ଷୋଡ଼ଶଂ କର ମଣ୍ଡଳଂ ।
କାଷ୍ଠ ଛେଦନ ନିମନ୍ତେ - ବର୍ଦ୍ଧକୀ ନିକରେ
ପ୍ରେରଣ କରିବେ ଭଲେ - ଏହି ସୁକର୍ମରେ ।
ମନୋହର ରଥ ଗୋଟି - କରିବେ ନିର୍ମାଣ
ଶୁଭ୍ର ଚାରି ଚକ୍ରେ - କରି ବିଚିତ୍ର ଘଟଣ ।
ଏକ ବିଂଶ ହସ୍ତ ଉଚ୍ଚ - ସେ ରଥ ହୋଇବ
ଷୋଡ଼ଶ ହସ୍ତ ମଣ୍ଡଳ - ପରିମାଣ ହେବ । (ଲିଙ୍ଗ ପୁରାଣ)

ଏପରି ଶାସ୍ତ୍ରୀୟ ମତେ ଏ ରୁକୁଣା ରଥର ଦୁଇଗୋଟି ଅଖ, ଚୋରିଗୋଟା ଚକ, ଦୈର୍ଘ୍ୟ, ପ୍ରସ୍ଥ ଷୋହଳ ହସ୍ତକୁ ହସ୍ତ । ଏଥିରେ ଚାରିଗୋଟି ମହାସ୍ତମ୍ଭ, ରଥର ଉଚ୍ଚତା ଏକୋଇଶ ହାତ । ଏପରି ଭାବରେ ରୁକୁଣା ରଥକୁ ବତିଶ ଦିନ ମଧ୍ୟରେ ନିର୍ମାଣ କରାଯାଏ ଓ



ରଥର ବିଭିନ୍ନ ଭାଗରେ ତେତିଶ କୋଟି ଦେବାଦେବୀ ଅବସ୍ଥାନ କରିଥାନ୍ତି । ଦୁଇଟି ଅଖରେ ଦେବରାଜ ଇନ୍ଦ୍ର, ଚାରିଚକରେ ସୂର୍ଯ୍ୟ ଓ ଚନ୍ଦ୍ର, ମହାସ୍ତମ୍ଭ କିଳାରେ ଅଶ୍ୱିନୀକୁମାର, ବହୁଗୁଜରେ ଦେବଗଣ, ଚାରିଗୋଟି ଅଶ୍ୱ ହେଲେ - ଋକ୍, ଯଜୁଃ, ଶାମ ଓ ଅଥର୍ବ ବେଦ । ରଥ ଦଉଡ଼ି ଭାବରେ ଅନନ୍ତନାଗ, ସାରଥି ବେଦବର ବ୍ରହ୍ମା ରହିଥାନ୍ତି ।

ଏହି ରୂପେ ରଥ ହୋଇ ସବୁ ଦେବତାଏ
ବିଚାରିଲେ ଶତ୍ରୁନାଶ ହୋଇବ ନିଶ୍ଚୟେ ॥
(ଶିବ ପୁରାଣ)

ଏପରି ଶାସ୍ତ୍ରୀୟ ମତେ ରଥ ନିର୍ମାଣ ପରେ ଅଷ୍ଟମୀ ପୂର୍ବ ରାତି (ସପ୍ତମୀ ତିଥିରେ) କେଦାର ଗୌରୀ ମରିଚୀ କୁଣ୍ଡର ପ୍ରଥମ ଉଜାଣ ପାଣିକୁ ପୂର୍ଣ୍ଣ କଳସରେ କର୍ମକାଣ୍ଡି ବୈଦିକ ବ୍ରାହ୍ମଣମାନଙ୍କ ଦ୍ୱାରା ଆନୟନ, ପ୍ରଭୁ ଲିଙ୍ଗରାଜଙ୍କ ଆଜ୍ଞାମାଳ ଓ କପିଳେଶ୍ୱର ଦେବଙ୍କ ପାଖରୁ ଦଣ୍ଡ ଆନୟ କରି ରଥକୁ ପ୍ରତିଷ୍ଠା ଶାସ୍ତ୍ରୀୟ ଓ ବିଧାନ ମତେ କରାଯାଏ । ଏଣେ ତା' ପରେ ମରିଚୀ କୁଣ୍ଡର ପାଣି ଓ ଗୌରୀ କୁଣ୍ଡର ପାଣିକୁ ପ୍ରସାଦ ଭାବେ ସେବନ କରିବାକୁ ଓ ସ୍ନାନ କରିବାକୁ ଓଡ଼ିଶାର ବିଭିନ୍ନ ସ୍ଥାନରୁ, ଓଡ଼ିଶା ବାହାରର ବହୁ ବନ୍ଧ୍ୟାନାରୀ ଅପେକ୍ଷା

କରିଥାନ୍ତି । ପ୍ରଥମ କୁଣ୍ଡର ପ୍ରଥମ ଉଜାଣ ପାଣି ରଥ ପ୍ରତିଷ୍ଠା ପାଇଁ ଆସିବା ପରେ ତା'ପର ପାଣିକୁ ବନ୍ଧ୍ୟାନାରୀମାନେ ନେଇଥାନ୍ତି । ଏହି ଶୈବକ୍ଷେତ୍ର ଓ ଏକାମ୍ର କାନନ ମରିଚୀ କୁଣ୍ଡର ପାଣିକୁ ଭକ୍ତି ସହକାରେ ମାନସିକ କରି ପ୍ରସାଦ ଭାବେ ସେବନ କରିବା ଓ ସ୍ନାନ କଲେ ପୁତ୍ରବତୀ ଓ ଗୌରୀ କୁଣ୍ଡପାଣି ସେବନ କରି ରୋଗମୁକ୍ତ ହେବାର ପ୍ରମାଣ ଅଛି । ତେଣୁ ସପ୍ତମୀ ରାତ୍ରିର ଶେଷ ପ୍ରହରରେ ପାଣି ଗ୍ରହଣ କରି ସ୍ନାନ କରିବା ଓ ପ୍ରସାଦ ସେବନକରି ଦାନଧର୍ମ କରି ଅଷ୍ଟମୀ ଦିନ ପ୍ରାତଃ ସମୟରେ ଲିଙ୍ଗରାଜଙ୍କ ମନ୍ଦିରକୁ ଆସି ପ୍ରଭୁଙ୍କ ପାଖେ ଅଶୋକ କଢ଼ି ଅର୍ଚ୍ଚନ କରି ରଥାରୂଢ଼ ହରିହର ଲିଙ୍ଗରାଜ, ଚନ୍ଦ୍ରଶେଖର ଦେବୀ ରୁକ୍ମିଣୀ ଓ କପିଳେଶ୍ୱରଙ୍କୁ ରଥରେ ଦର୍ଶନ କରିବାକୁ ରଥଖଳାରେ ଅପେକ୍ଷା କରିଥାନ୍ତି ।

ମନ୍ଦିରରେ ପ୍ରଭୁ ଲିଙ୍ଗମାନଙ୍କ ମଧରେ ରାଜା ଲିଙ୍ଗରାଜ ହରିହରଙ୍କ ଅଶୋକାଷ୍ଟମୀ ନୀତି ପର ମଧାହ୍ନ ଧୂପ ଶେଷ ହେବା ପରେ ପ୍ରଭୁ ଲିଙ୍ଗରାଜଙ୍କ ବିଜୟ ପ୍ରତିମା ଚନ୍ଦ୍ରଶେଖର, ଦେବୀ ରୁକ୍ମିଣୀଙ୍କୁ ବିମାନରେ ବସାଇ ପ୍ରଭୁଙ୍କୁ ସିଂହ ଦ୍ୱାରକୁ ଅଣାଯାଏ । ଏଠାରେ ଆଗରୁ ଆସି କପିଳେଶ୍ୱର ତାଙ୍କ ବିମାନରେ ଥାଆନ୍ତି । ଏଠାରୁ ପ୍ରଭୁମାନଙ୍କୁ ମହାରଥ ଖଳା ରୁକୁଣା ରଥକୁ ବିଜେ କରିବା ପାଇଁ ସେବକଗଣ, ଭକ୍ତଗଣମାନଙ୍କ ମେଳରେ ନାନାଦି ଶୋଭାଯାତ୍ରା ସହିତ ଶୋଭାଯାତ୍ରାରେ ଆଣି ରଥରେ ବିଜେ କରାନ୍ତି ।

ଓଡ଼ିଶାର ତିନି ଜାଗାରେ ରଥୋତ୍ସବ ହୁଏ । ଶ୍ରୀକ୍ଷେତ୍ର ଧାମରେ ପ୍ରଭୁ ଜଗନ୍ନାଥଙ୍କର ଆଷାଢ଼ ଶୁକ୍ଳ ଦ୍ୱିତୀୟା, ଯାଜପୁର ମା' ବିରଜାଙ୍କ କ୍ଷେତ୍ରରେ ଆଶ୍ୱିନ ଅଷ୍ଟମୀ ତିଥିରୁ, ଶୈବ କ୍ଷେତ୍ର ଏକାମ୍ରରେ ଲିଙ୍ଗରାଜଙ୍କ ଚୈତ୍ରମାସ ଶୁକ୍ଳ ଅଷ୍ଟମୀରେ । ଏଥିପାଇଁ ଲିଙ୍ଗପୁରାଣରେ ଅଛି -

ଏକାମ୍ର କାନନେ ଯେ ବା ଚଇତ୍ର ମାସରେ
ରଥଗତ ମହେଶଙ୍କୁ ଦରଶନ କରେ ॥
ଧନଧାନ୍ୟ ସମଯୁକ୍ତା ମହାସୁଖୀ ହୋଏ
ପୁତ୍ର ପୌତ୍ରୀ ବିଭୂଷିତ ସୌଭାଗ୍ୟ ବୋଲାଏ ॥

ଶୈବ କ୍ଷେତ୍ର ରଥ ମହାଖଳାରୁ ପ୍ରଭୁ ଲିଙ୍ଗରାଜ ରୁକୁଣା ରଥରେ ରଥାରୂଢ଼ ହୋଇ ହଜାର ହଜାର ଭକ୍ତମାନେ ଟାଣି ଟାଣି ମାଉସୀ'ମା ମନ୍ଦିରକୁ ଆଣନ୍ତି । ମାଉସୀ'ମା ମନ୍ଦିରରେ ପ୍ରଭୁ ଲିଙ୍ଗରାଜ ଚାରିଦିନ ରହନ୍ତି । ପ୍ରଭୁଙ୍କ ରଥାରୂଢ଼ ଓ ମାଉସୀ'ମା ମନ୍ଦିରରେ ପ୍ରଭୁଙ୍କୁ ଦର୍ଶନ କଲେ ଅଶେଷ ପୁଣ୍ୟ ଓ ଧନ, ଜନ, ଗୋପ, ଲକ୍ଷ୍ମୀ ପ୍ରାପ୍ତ ହୁଏ । ତେଣୁ ମାଉସୀ'ମା ମନ୍ଦିରରେ ବିଶେଷତଃ ଭକ୍ତମାନଙ୍କ ଗହଳି ଲାଗି ରହିଥାଏ । ଦ୍ୱାଦଶୀ ଦିନ ପ୍ରାତଃକର୍ମ ସାରି ମଧାହ୍ନରେ ପ୍ରଭୁଙ୍କୁ ରଥାରୂଢ଼କରି ମନ୍ଦିର ଅଭିମୁଖେ ରୁକୁଣା ରଥକୁ ଭକ୍ତମାନେ ହରିବୋଲ ହୁଳହୁଳି ଦେଇ ଟାଣି ଆଣନ୍ତି । ବାଟରେ ଗୋଶାସୁର ମନ୍ଦିର ପାଖେ ପ୍ରଭୁଙ୍କୁ ପଣା ଅର୍ପଣ କରାଯାଏ । ରଥ ମନ୍ଦିର ପାଖ ରଥ ମହାଖଳାରେ ଲାଗିବା ପରେ ସନ୍ଧ୍ୟା ଆଳତୀ ପରେ ପ୍ରଭୁମାନଙ୍କୁ ମନ୍ଦିରକୁ ତାଙ୍କର ମଙ୍ଗଳମୟ ରୁକୁଣା ରଥଯାତ୍ରା ଶେଷ କରି ଗମ୍ଭୀରାକୁ ବିଜେ କରନ୍ତି । ଏହାପରେ ରଥରେ ଥିବା ସମସ୍ତ ଦେବାଦେବୀଙ୍କୁ ପଣା ନୈବେଦ୍ୟ କରାଯାଇ ପ୍ରଭୁଙ୍କର ଏହି ଏକାମ୍ର ଶୈବ କ୍ଷେତ୍ରର ପ୍ରାଚୀନତା, ମହାନତା, ଐତିହ୍ୟ, ରୁକୁଣା ରଥ ଯାତ୍ରାକୁ ମହାନ କରିଛି ।

ନୟାଗଡ଼



ଭୁବନେଶ୍ୱରର ଜୟଦେବ ଭବନଠାରେ ଶିଶୁ ମୃତ୍ୟୁହାର ମିଶନ ଅନ୍ତର୍ଗତ ନବଜ୍ୟୋତି ନାମକ ଏକ ନୂତନ ଯୋଜନା ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଶୁଭାରମ୍ଭ କରୁଛନ୍ତି । ନିକଟରେ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ମନ୍ତ୍ରୀ ଶ୍ରୀ ବିଜୟଶ୍ରୀ ରାଉତରାୟ ଉପସ୍ଥିତ ଅଛନ୍ତି । ୦୧.୦୪.୦୫

# ଶ୍ରୀକ୍ଷେତ୍ରରେ ହନୁମାନ ଉପାସନା ପରମ୍ପରା

ପଙ୍କଜ ସାହୁ

'ଯାବତ୍ତବ କଥା ଲୋକେ ବିଚରିଷ୍ୟତି ପାବନୀ
ତାବତ୍ ସ୍ଥାସ୍ୟାମି ମେଦିନ୍ୟାଂ ତବାଜ୍ଞାନୁପାଳୟନ୍ ।'

ଏହା ଥିଲା ଲଙ୍କା ବିଜୟ ଉପରାନ୍ତ ଶ୍ରୀରାମଚନ୍ଦ୍ରଙ୍କ ପ୍ରତି ସୀତା ଉଦ୍ଧାର କାର୍ଯ୍ୟରେ ପ୍ରମୁଖ ସହାୟତା ପ୍ରଦାନ କରିଥିବା ଭକ୍ତ ହନୁମାନଙ୍କର ବିନୟ ଅଭିବ୍ୟକ୍ତି । ପ୍ରଭୁସେବା ଓ କର୍ତ୍ତବ୍ୟନିଷ୍ଠା ପାଇଁ ଅଦ୍ୱିତୀୟ ଚରିତ୍ର ତଥା ବିନମ୍ରତାର ସାକାର ଅବତାର ଏହି ହନୁମାନଙ୍କ ପ୍ରାର୍ଥନାକୁ ସ୍ୱୀକାର କରି ନେଇ ତାଙ୍କୁ ଚିରଂଜୀବି ହେବା ନିମିତ୍ତ ବର ପ୍ରଦାନ କଲେ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ର । ସେହିଦିନଠାରୁ ସେ ସପ୍ତ ଚିରଂଜୀବି (ଅଶ୍ୱତ୍ଥାମା, ବଳି, ବ୍ୟାସୋ, ହନୁମାନ, ବିଭୀଷଣଃ / କୃପ ପରଶୁରାମଶ୍ଚ ସପ୍ତୈତେ ଚିରଜୀବିନଃ)ଙ୍କ ମଧ୍ୟରେ ତ୍ୟାଗଶୀଳ ଭୃତ୍ୟ ଏହି ହନୁମାନ ଆଚାର୍ଯ୍ୟ ରୂପେ ସ୍ଥାନ ପାଇବା ସହିତ ଶ୍ରୀରାମଚନ୍ଦ୍ରଙ୍କ ସେବାସାନ୍ନିଧ ଲାଭ କରି ଆସୁଛନ୍ତି । ରାମଭକ୍ତ ହନୁମାନ : ଶ୍ରୀରାମଚନ୍ଦ୍ରଙ୍କ ବିନା ଅନ୍ୟ କାହାରିକି ପ୍ରଭୁବୋଲି ସ୍ୱୀକାର କରନ୍ତି ନାହିଁ । ତେଣୁ ହନୁମାନଙ୍କ ବିନାନୁମତିରେ କେହି ଶ୍ରୀରାମମନ୍ଦିର ମଧ୍ୟରେ ପ୍ରବେଶ କରିବା ଅସମ୍ଭବ । ସେଥିପାଇଁ ଯଥାର୍ଥରେ କୁହାଯାଇଛି,

'ରାମ ଦୁଆରେ ତୁମ ରଖୱାରେ
ହୋତ ନ ଆଜ୍ଞା ବିନୁ ପୈସାରେ ।'

ଶ୍ରୀରାମଚନ୍ଦ୍ରଙ୍କର ଏକନିଷ୍ଠ ଭକ୍ତ ହୋଇଥିବାରୁ ସମଗ୍ର ଭାରତବର୍ଷରେ ରାମଲକ୍ଷ୍ମଣସୀତାଙ୍କ ସହିତ ଦେବତା ଜ୍ଞାନରେ ଏକତ୍ର ହନୁମାନୋପାସନା ପ୍ରଚଳିତ ଅଛି । କେବଳ ସେତିକି ନୁହେଁ, ହନୁମାନ ଆରାଧନା ବ୍ୟତିରେକେ ଶ୍ରୀରାମୋପାସନା ଅପୂର୍ଣ୍ଣ ତଥା ବିଘ୍ନକାରକ ବୋଲି ବିବେଚିତ ହୋଇଛି । ତେଣୁ ଭାରତର ପ୍ରତି ରାମ ମନ୍ଦିର ଦ୍ୱାରରେ / ସମ୍ମୁଖରେ ଦ୍ୱାରପାଳ ବା ପ୍ରହରୀ ସ୍ୱରୂପ ପରମ ସେବକ ହନୁମାନ ଦଣ୍ଡାୟମାନ ରହିଥିବାର ପରିଦୃଷ୍ଟ ହୋଇଥାଏ । ଏତଦ୍‌ବ୍ୟତୀତ ରାମୋପାସକମାନଙ୍କୁ ସୁରକ୍ଷା ପ୍ରଦାନ ନିମିତ୍ତ କେତେକ ସ୍ୱତନ୍ତ୍ର ମନ୍ଦିରରେ ହନୁମାନଙ୍କର ଏକକ ଉପାସନା ଅଶେଷ ଲୋକପ୍ରିୟତା ଲାଭ କରିଅଛି ।



ଖଣ୍ଡଗିରି ରାଣୀଗୁମ୍ଫା ଖୋଦିତ ଭାସ୍କର୍ଯ୍ୟ ଅନୁଧ୍ୟାନରୁ ଜଣାଯାଏ ଯେ ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରୁ ଓଡ଼ିଶାରେ ରାମଚେତନା ବିକାଶଲାଭ କରିଅଛି । ବିଶେଷତଃ ଷୋଡ଼ଶ/ସପ୍ତଦଶ ଶତାବ୍ଦୀରେ ରାମାନୁଜାଚାର୍ଯ୍ୟ, ବଲ୍ଲଭାଚାର୍ଯ୍ୟ ଓ ସନ୍ଥ ତୁଳସୀ ଦାସ ପ୍ରମୁଖଙ୍କ ଶ୍ରୀକ୍ଷେତ୍ର ଆଗମନ ଫଳରେ ସର୍ବୋପରି ସାକେତସେବୀ ତୁଳସୀ ଦାସ ଗୋସ୍ୱାମୀ ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କୁ ଯଥାକ୍ରମେ ଶ୍ରୀରାମ, ଲକ୍ଷ୍ମଣ, ସୀତା ଏବଂ ହନୁମାନ ରୂପେ ପ୍ରତିପାଦନ କରି ଓଡ଼ିଶାରେ ରାମଚେତନାକୁ ଦୃଢ଼ୀଭୂତ କଲେ । ବିଶ୍ୱବିଶ୍ରୁତ ପୁରୁଷୋତ୍ତମ କ୍ଷେତ୍ର ଯେପରି ସର୍ବଧର୍ମମତାବଲମ୍ବୀଙ୍କ ସହାବସ୍ଥାନର କ୍ଷେତ୍ର, ସେହିପରି ଶ୍ରୀମନ୍ଦିର ହେଉଛି ସର୍ବଦେବ ଦେବୀଙ୍କର ସମନ୍ୱୟପୀଠ । ସର୍ବୋପରି ଶ୍ରୀଜଗନ୍ନାଥ ହେଉଛନ୍ତି ସକଳ ଜନତାର ପ୍ରତୀକାତ୍ମକ ଏକୀଭୂତ ଉପାସ୍ୟ । ସଂକ୍ଷେପରେ ଜଗନ୍ନାଥଧାମ ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିର ପରିସର ହେଉଛି ନିଖିଳ ଦେବାୟତନର ସଙ୍ଗମ ତୀର୍ଥ । ପୁନଶ୍ଚ ଲୀଳାକ୍ଷେତ୍ର ଏହି ପୁରୁଷୋତ୍ତମ ଧାମରେ ଯୁଗଯୁଗ ଧରି ଭକ୍ତ ଓ ଭଗବାନଙ୍କର

ଏକାତ୍ମତାର ଜୟଗାନ ଉଦ୍‌ଘୋଷିତ ହୋଇଆସିଛି । ଇନ୍ଦ୍ର ନୀଳମଣି ପୁରାଣରେ ଉଲ୍ଲେଖ ଅଛି ଯେ ସ୍ୱୟଂ ଭଗବାନ ଭକ୍ତ ଶ୍ରେଷ୍ଠ ହନୁମାନଙ୍କୁ ବରପ୍ରଦାନ କରି କହିଥିଲେ, 'ହେ କପିଶ୍ରେଷ୍ଠ ! ତୁମେ ପୁରୁଷୋତ୍ତମ କ୍ଷେତ୍ର ଶ୍ରୀଜଗନ୍ନାଥ ପୁରୀରେ ମୋର ଅନ୍ତରଙ୍ଗ ଭକ୍ତ ତଥା ପ୍ରିୟ ସେବକ ସ୍ୱରୂପ ସର୍ବଦା ସ୍ଥାନ ପାଇ ରହିବ ଏବଂ ପ୍ରତି ଗୃହରେ ତୁମର ପୂଜାର୍ଚ୍ଚନା ଅନୁଷ୍ଠିତ ହେବ । ତତ୍‌ସହିତ ସେହି କ୍ଷେତ୍ରରେ ଉଡ୍‌ଡୀୟମାନ ପ୍ରତିଧ୍ୱଜାରେ କପି ଚିହ୍ନ ଅଙ୍କିତ ହେବ ।' ସମ୍ପ୍ରତି ଶ୍ରୀମନ୍ଦିର ଉପାସନା ପରମ୍ପରାକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ଶ୍ରୀଜଗନ୍ନାଥଙ୍କ ସହ ଶ୍ରୀରାମଚନ୍ଦ୍ରଙ୍କର ଘନିଷ୍ଠ ସମ୍ପର୍କ ବିଦ୍ୟମାନ । ଶ୍ରୀମନ୍ଦିରରେ ପୌଷ ପୂର୍ଣ୍ଣମୀରେ ପାଳନ କରାଯାଉଥିବା ରାଜାଧିରାଜ ଶ୍ରୀଜଗନ୍ନାଥଙ୍କର ରାମାଭିଷେକ ଉତ୍ସବ, ଚୈତ୍ର ଶୁକ୍ଳ ନବମୀରେ ଅନୁଷ୍ଠିତ ରାମ ଜନ୍ମୋତ୍ସବ, ଦେବ ଦୀପାବଲ୍ୟୁତ୍ସବ ଅବସରରେ ପୁତ୍ର ହିସାବରେ ଦଶରଥ-କୌଶଲ୍ୟାଙ୍କ ଉଦ୍ଦେଶ୍ୟରେ ଶ୍ରୀଜଗନ୍ନାଥଙ୍କ ଦୀପଦାନ, ଗୁରୁବାର ଏକାଦଶୀ ପଡ଼ିଲେ ମହାପ୍ରଭୁଙ୍କୁ ଦଣ୍ଡଛତ୍ର ଲାଗି, ଫାଲଗୁନ ମାସରେ ଶ୍ରୀଜୀଉଙ୍କ ବେଣ୍ଟଯାତ୍ରା, ନୀଳାଦ୍ରିବିଜେ ସମୟରେ ବିଭୀଷଣ ବନ୍ଦାପନା ପ୍ରଭୃତି ରାମୋପାସନା ପ୍ରଭାବିତ ପର୍ବ ନୀତିକୁ ଲକ୍ଷ୍ୟ କଲେ ଶ୍ରୀଜଗନ୍ନାଥ ଓ ଶ୍ରୀରାମଚନ୍ଦ୍ରଙ୍କ ମଧ୍ୟରେ ଥିବା ଅଭିନ୍ନତା ହିଁ ପ୍ରତିଭାତ ହୋଇଉଠେ । ସର୍ବୋପରି ଶ୍ରୀମନ୍ଦିର ଚୂଡ଼ାରେ ଅବସ୍ଥାପିତ ନୀଳଚକ୍ର ତଳେ ଦଧିନଉତି ଦେହରେ ସ୍ଥାନିତ ବିରାଟ ରାମାନନ୍ଦୀ ଚିତା ସୂଚାଇ ଦିଏ ଯେ ଶ୍ରୀମନ୍ଦିର ହେଉଛି ଶ୍ରୀରାମଚନ୍ଦ୍ରଙ୍କର ମନ୍ଦିର । ତେଣୁ ପରମ ପ୍ରଭୁଭକ୍ତ ହନୁମାନ ଶ୍ରୀକ୍ଷେତ୍ରରେ ବିରାଜିତ ଐଶ୍ୱର୍ଯ୍ୟ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କୁ ନିଜର ଇଷ୍ଟ ଶ୍ରୀରାମ ରୂପେ ସ୍ୱୀକାର ପୂର୍ବକ ଶହ ଶହ ବର୍ଷ ଧରି ଶ୍ରୀକ୍ଷେତ୍ର, ଶ୍ରୀମନ୍ଦିର ତଥା ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ସୁରକ୍ଷା ଦାୟିତ୍ୱ ବହନ କରି ଯଥୋଚିତ ଭକ୍ତି ଅର୍ଘ୍ୟ ଅର୍ପଣ କରିଆସୁଛନ୍ତି । ବାନରସେନା ସହାୟତାରେ ପ୍ରଭୁ ରାମଚନ୍ଦ୍ର ଲଙ୍କା ଜୟକରି ବାନରମାନଙ୍କଠାରୁ ଦୂରେଇ ଯିବା ପରେ ସେମାନଙ୍କୁ କେବଳ ମାତ୍ର ମର୍କଟ କୁହାଗଲା । କିନ୍ତୁ ଓଡ଼ିଶା ତଥା ଶ୍ରୀକ୍ଷେତ୍ରରେ ବାନର ଜାତିର ପ୍ରତିନିଧି ହନୁମାନଙ୍କୁ ଦେବତା ରୂପେ ପୂଜା ଆରାଧନା କରି ଓଡ଼ିଆ ଜାତି ଯେଉଁ ଧାର୍ମିକ ଔଦାର୍ଯ୍ୟର ଚରମ ପରାକାଷ୍ଠା ପ୍ରଦର୍ଶନ କରିଅଛି, ତାହା ହିଁ ବିଚାର୍ଯ୍ୟ । ଏହି ପରିପ୍ରେକ୍ଷୀରେ ଶ୍ରୀକ୍ଷେତ୍ରରେ ମହାବୀର ହନୁମାନ ଉପାସନା କିପରି ସର୍ବଜନାଦୃତି ଲାଭ କରିଛି, ସେ ସମ୍ବନ୍ଧୀୟ ଉପସ୍ଥାପନା ନିମ୍ନରେ ପ୍ରଦତ୍ତ ହେଲା ।

'ହରିବଂଶ ରାମାୟଣ' ନିର୍ଦ୍ଦେଶକ୍ରମେ (ବାଟ ଘାଟ ବାଡ଼ ଭିତରେ ଥାଇ ଅନୁରତ / ସେବା ଖଟିବ ତୁମେ ତ ବୀର ହନୁମନ୍ତ) ଶଙ୍ଖକ୍ଷେତ୍ରର ସବୁ ବାଟରେ, ସବୁ ଘାଟରେ ବିଶେଷତଃ ଚତୁଃସୀମାରେ ମହାବୀର ହନୁମାନ ବିଦ୍ୟମାନ ଥାଇ ସେବାଖଟିବା ସହିତ ଗଗନ ଓ ଭୂତଳରେ ଯଥାକ୍ରମେ କପିଧ୍ୱଜ ଓ ପାତାଳି ହନୁମାନ ରୂପେ ଶ୍ରୀକ୍ଷେତ୍ରରେ ହନୁମାନ ଚେତନାର ପୁଷ୍ଟିସାଧନ କରିଆସୁଛନ୍ତି । ରାମଚନ୍ଦ୍ରଙ୍କ ଦ୍ୱାରପାଳ ହନୁମାନ ଶ୍ରୀମନ୍ଦିର ବଳୟିତ ମେଘନାଦ ପ୍ରାଚୀର ସଂଲଗ୍ନ ଚାରିଗୋଟି ଦ୍ୱାରରେ ବିରାଜମାନ କରି ଶ୍ରୀଜଗନ୍ନାଥ ରୂପୀ ରାମଚନ୍ଦ୍ରଙ୍କୁ ଚତୁର୍ଦ୍ଦିଗରୁ ଜଗି ରହିଛନ୍ତି । ଯେକୌଣସି ଭକ୍ତ ଏହି ହନୁମାନ ଚତୁଷ୍ଟୟଙ୍କୁ ପୂଜାର୍ଚ୍ଚନା ପରେ ହିଁ ଶ୍ରୀମନ୍ଦିର ମଧ୍ୟରେ ପ୍ରବେଶ କରିବା ବିଧେୟ । ପୂର୍ବ ଦିଗସ୍ଥ ସିଂହଦ୍ୱାର ହେଉଛି ଧର୍ମଦ୍ୱାର । ସିଂହଦ୍ୱାର ଗୁମୁଟ (ପ୍ରବେଶମାର୍ଗ ତୋରଣ) ମଧ୍ୟରେ ବାମପାର୍ଶ୍ୱସ୍ଥ ପିଣ୍ଡି ଉପରେ କ୍ଷୁଦ୍ରାକୃତି ବିଶିଷ୍ଟ 'ଫତେ ମହାବୀର' ବିଦ୍ୟମାନ । ରାମାନନ୍ଦାଚାର୍ଯ୍ୟଙ୍କ ସମୟରେ ସ୍ଥାପିତ ପଞ୍ଚରାମାନନ୍ଦୀ ଖାଲସାଙ୍କ ଆରାଧ୍ୟ ଦେବତା ଏହି ଫତେ ମହାବୀର ପୂର୍ବଦ୍ୱାରର ରକ୍ଷକ ଅଟନ୍ତି । 'ଫତେ' ଏକ ପାର୍ଶୀ ଶବ୍ଦ, ଯାହାର ଅର୍ଥ ହେଉଛି ସୁସମ୍ପାଦନ ଅର୍ଥାତ୍ ଯେକୌଣସି କାର୍ଯ୍ୟ ସଫଳ ପରିସମାପ୍ତି କାମନାରେ ଏହି ମହାବୀରଙ୍କୁ ଦର୍ଶନ କରି ଭିତରକୁ ପ୍ରବେଶ କରିବାକୁ ହୋଇଥାଏ ।

ମେଘନାଦ ପ୍ରାଚୀର ସଂଲଗ୍ନ ଦକ୍ଷିଣଦ୍ୱାରର ପୂର୍ବପାର୍ଶ୍ୱରେ ଦକ୍ଷିଣାଭିମୁଖୀ ଏକ ପୀଢ଼ ଦେଉଳ ଭିତରେ ୧୮ ଫୁଟ ଉଚ୍ଚତା ବିଶିଷ୍ଟ ଏକ ବିରାଟ ହନୁମାନ ବିଗ୍ରହ ଉପାସିତ ହେଉଥିବାର ଦେଖିବାକୁ ମିଳେ । କିମ୍ବଦନ୍ତୀ ଅନୁସାରେ ସମୁଦ୍ରର ଭୀଷଣ ଗର୍ଜନ ଶବ୍ଦରେ ମହାପ୍ରଭୁଙ୍କ ସୁଖନିଦ୍ରା ବାଧାପ୍ରାପ୍ତ ହେବା ସହିତ ଭକ୍ତମାନଙ୍କର ଭଜନ/ସ୍ମରଣରେ ଘୋର ଅନ୍ତରାୟ ସୃଷ୍ଟି ହେଲା । ଏହାର ପ୍ରତିକାର ସ୍ୱରୂପ ଶ୍ରୀଜଗନ୍ନାଥ ହନୁମାନଙ୍କୁ ଆଦେଶ ଦେବାରୁ ଭକ୍ତ ପ୍ରବର ହନୁମାନ ବିଶାଳ ରୂପ ଧାରଣ ପୂର୍ବକ ଗର୍ଜନର ସେହି ଭୀଷଣ ଧ୍ୱନିକୁ ପ୍ରତିହତ କଲେ । ଫଳରେ ସମୁଦ୍ର ଗର୍ଜନ ଶ୍ରୀକ୍ଷେତ୍ରରେ ସର୍ବତ୍ର ଶ୍ରୁତିପଥାରୂଢ଼ ହେଉଥିଲେ ହେଁ ଏହି ହନୁମାନଙ୍କର ବିଶାଳ ଶରୀରକୁ ଭେଦକରି ଶ୍ରୀମନ୍ଦିର ବେଢ଼ା ପରିସରକୁ ଶ୍ରୁତିଗୋଚର ହୁଏ ନାହିଁ । ପରୀକ୍ଷାରୁ ଜଣାଯାଇଛି ଯେ ନିଶବ୍ଦ ରଜନୀରେ ମଧ୍ୟ ସମୁଦ୍ର ଗର୍ଜନ ଶ୍ରୀମନ୍ଦିର ବେଢ଼ାବଳୟ ମଧ୍ୟକୁ ଶୁଣାଯାଏ ନାହିଁ । ସେଥିପାଇଁ ଏହି ହନୁମାନଙ୍କୁ ଶବ୍ଦଭେଦୀ ହନୁମାନ କୁହାଯାଏ । କାଳେ ସମୁଦ୍ର ଗର୍ଜନର ଭୟଙ୍କର ଶବ୍ଦରେ ମହାପ୍ରଭୁଙ୍କ ମାନସିକ ଶାନ୍ତି ବ୍ୟାହତ ହେବ, ସେଥିପାଇଁ ଏହି ହନୁମାନ ସର୍ବଦା ସତର୍କ ପ୍ରହରୀ ରୂପେ କାନପାତି ସତତ ଜାଗ୍ରତ ରହିଥିବାରୁ ଏହାଙ୍କୁ ସ୍ଥାନୀୟ ଜନତା କାନପାତା ହନୁମାନ ନାମରେ ଅଭିହିତ କରିଥାନ୍ତି । ଜନୈକ ସାଧୁ ଏହି ହନୁମାନଙ୍କୁ ଏଠାରେ ସ୍ଥାପନ କରିଥିବାର ଜନଶ୍ରୁତି ରହିଛି । ଅଶ୍ୱଦ୍ୱାର ତଥା ଦକ୍ଷିଣ ଦିଗର ରକ୍ଷକ ଏହି ହନୁମାନଙ୍କୁ ଅତିନିଷ୍ଠାର ସହିତ ପୂଜାର୍ଚ୍ଚନା କରାଯାଇଥାଏ । ଏହି ହନୁମାନଙ୍କ ପ୍ରାତ୍ୟହିକ ପୂଜାନୀତି ନିମିତ୍ତ ପୁରୀ ବଡ଼ଛତା ମଠ ତରଫରୁ ପୂଜାସାମଗ୍ରୀ ଯୋଗାଇ ଦିଆଯାଇଥାଏ ।

ମେଘନାଦ ପ୍ରାଚୀର ସଂଲଗ୍ନ ପଶ୍ଚିମ ଦ୍ୱାର ଦେଇ ଭିତରକୁ ପ୍ରବେଶ କଲେ ପାହାଚ ଉପରେ ବାମପାର୍ଶ୍ୱରେ ପ୍ଲଟ ନଂ ୨୬୭ରେ ଚାରିଫୁଟ ଉଚ୍ଚତା ବିଶିଷ୍ଟ 'ସଙ୍କଟ ମୋଚନ ହନୁମାନ' ଏକ ମନ୍ଦିର ମଧ୍ୟରେ ବିଜେ କରିଥିବାର ପରିଦୃଷ୍ଟ ହୁଏ । ମଙ୍ଗଳ ବାରଦିନ ମଙ୍ଗଳ

କାର୍ଯ୍ୟ ପାଇଁ ଓ ଶନିବାର ଦିନ ଦୁଷ୍ଟଗ୍ରହ ନିବାରଣ ନିମିତ୍ତ ଏହାଙ୍କର ବିଶେଷପୂଜା ଅନୁଷ୍ଠିତ ହୋଇଥାଏ । ତେଣୁ ସପ୍ତାହର ଏହି ଦୁଇଦିନ ଏଠାରେ ପ୍ରବଳ ଭିଡ଼ ହୁଏ । ମାନସିକ କରି ଭକ୍ତମାନେ ତାଙ୍କ ପାଖେ ନଡ଼ିଆ ବସାନ୍ତି ଏବଂ ଅଭିଷ୍ଟ ପୂରଣ ପରେ ପୂଜା ଦିଅନ୍ତି । ଶ୍ରୀମନ୍ଦିରକୁ ପଶ୍ଚିମ ଦିଗରୁ ସୁରକ୍ଷା ପ୍ରଦାନ କରୁଥିବା ଏହି ମହାବୀରଙ୍କୁ କେହି କେହି 'ବୀରବିକ୍ରମ ହନୁମାନ' ନାମରେ ଅଭିହିତ ମଧ୍ୟ କରିଥାନ୍ତି । ବ୍ୟାଘ୍ରଦ୍ୱାରର ଏହି ମହାବିକ୍ରମ ମହାବୀର ଅତୀତରେ ଜଗନ୍ନାଥବଲ୍ଲଭ ମଠରେ ଆରାଧିତ ହେଉଥିବାର ଜନଶ୍ରୁତି ରହିଛି ।

କଳିଯୁଗରେ ପରମବିଷ୍ଣୁ ସ୍ୱେଚ୍ଛାରେ ହସ୍ତପଦ ବିହୀନ ଶ୍ରୀପୁରୁଷୋତ୍ତମ ରୂପ ଗ୍ରହଣ କରିବାରୁ ତାଙ୍କ ବିନା ସହାୟତାରେ ମହାପ୍ରଭୁ ଶ୍ରୀଜଗନ୍ନାଥ କୌଣସି କାର୍ଯ୍ୟ ସମ୍ପାଦନ କରିବା ଅସମ୍ଭବ ବୋଲି ଭାବି ଆୟୁଧରାଜ ସୁଦର୍ଶନଙ୍କ ମନରେ ଅହଙ୍କାର ଜାତ ହେଲା । ଗର୍ବଗଞ୍ଜନକାରୀ ମହାପ୍ରଭୁ ଏହା ଜାଣିପାରି ରାମାୟଣ ଯୁଦ୍ଧାବସାନରେ ଅଯୋଧ୍ୟାରେ ରାମାଭିଷେକ ପରଠାରୁ ପ୍ରଭାସତୀର୍ଥର ଅଭୟାରଣ୍ୟରେ ତପସ୍ୟାରତ ଥିବା ହନୁମାନଙ୍କୁ ଡାକି ଆଣିବା ପାଇଁ ଆୟୁଧପୁରୁଷ ସୁଦର୍ଶନଙ୍କୁ ନିର୍ଦ୍ଦେଶ ଦେଲେ । ଆମନ୍ତ୍ରିତକୁ ଜନୈକ ସାଧାରଣ ବାନର ମନେକରି ଏତାଦୃଶ ସାମାନ୍ୟ କାର୍ଯ୍ୟ ପାଇଁ ପ୍ରଭୁ ତାଙ୍କୁ ଦାୟିତ୍ୱ ନ୍ୟସ୍ତ କରିଥିବାରୁ ସୁଦର୍ଶନ ଅପମାନିତ ବୋଧକଲେ ହେଁ ପ୍ରଭୁଙ୍କର ଆମନ୍ତ୍ରଣ ଜଣାଇ ବିଦ୍ୟୁତ୍ ବେଗରେ ପ୍ରତ୍ୟାବର୍ତ୍ତନ କଲେ । ହନୁମାନ ସିଂହ ଦ୍ୱାରରେ ପହଞ୍ଚିବା ପୂର୍ବରୁ ସୁଦର୍ଶନ ସେଠାରେ ପହଞ୍ଚି, ହନୁମାନ ଯେପରି ପ୍ରଭୁଦର୍ଶନ ପାଇଁ ରତ୍ନସିଂହାସନ ସମୀପକୁ ଯାଇନପାରିବ, ସେଥିପାଇଁ ମେଘନାଦ ପ୍ରାଚୀରର ଚତୁଃଦ୍ୱାରକୁ ଅବରୋଧକରି ପ୍ରବଳବେଗରେ ଘୁରିବାକୁ ଲାଗିଲେ । କିଛି କ୍ଷଣ ପରେ ହନୁମାନ ସେଠାରେ ଉପସ୍ଥିତ ହୋଇ ଶ୍ରୀମନ୍ଦିର ଅଭ୍ୟନ୍ତରକୁ ପ୍ରବେଶ କରିବାର କୌଣସି ସୁବିଧା ନପାଇ ପରଂବ୍ରହ୍ମ ଶ୍ରୀଜଗନ୍ନାଥଙ୍କୁ ସ୍ମରଣ କରିବା ମାତ୍ରେ ପ୍ରଭୁକୃପାରୁ ସ୍ୱୟଂ ହନୁମାନ ତତ୍‌କ୍ଷଣାତ୍ ଅଷ୍ଟଭୁଜ ହୋଇଗଲେ । କପିଶ୍ରେଷ୍ଠ ହନୁମାନ ଯୋଗବଳରେ ସବୁକିଛି ଅବଗତ ହୋଇ ଚାରି ଦ୍ୱାରରେ ଘୂର୍ଣ୍ଣାୟମାନ ଚାରୋଟି ଚକ୍ରକୁ ଚାରି ହାତର ଚାରି ଆଙ୍ଗୁଳିରେ ଧାରଣ କରି ଦୁଇ ହାତରେ ଗଦା ଓ ଅବଶିଷ୍ଟ ଦୁଇ ହାତ ପ୍ରଭୁଙ୍କ ଉଦ୍ଦେଶ୍ୟରେ ଯୋଡ଼ି ଉତ୍ତରଦ୍ୱାର ବାଟେ ଶ୍ରୀମନ୍ଦିର ଭିତରେ ପ୍ରବେଶ କରି ମହାପଭୁଙ୍କୁ ବିନମ୍ର ପ୍ରାର୍ଥନା କରିବା ପରେ ସ୍ୱତଃ ସୁଦର୍ଶନଙ୍କ ଗର୍ବ ଖର୍ବ ହୋଇଛି ବୋଲି ଜାଣି ଆଶ୍ୱସ୍ତ ହେଲେ ଶ୍ରୀଜଗନ୍ନାଥ । ସୁଦର୍ଶନ ଲଜ୍ଜାରେ ଚକ୍ରତୀର୍ଥକୁ ପଳାୟନ କଲେ । ସେହିଦିନଠାରୁ ଶ୍ରୀଜୀଉଙ୍କ ଆଦେଶରେ ହନୁମାନ ଆଉ କେଉଁଠାକୁ ତପସ୍ୟା କରିବାକୁ ନଯାଇ ମୋକ୍ଷଦ୍ୱାରର ନିରୂପିତ ସ୍ଥାନ ପ୍ଲଟ ନଂ ୨୭୯ (କ)ରେ 'ତପସ୍ୱୀ ହନୁମାନ' ନାମରେ ତପସ୍ୟା କରୁଅଛନ୍ତି । ହସ୍ତୀଦ୍ୱାର ଦେଇ ଶ୍ରୀମନ୍ଦିର ଭିତରକୁ ପ୍ରବେଶ କଲେ ଯୋଗମାୟା ଶୀତଳାଙ୍କ ମନ୍ଦିର ପରେ ପୂର୍ବାଭିମୁଖୀ ଏକ ମନ୍ଦିରରେ ଚାରି ଫୁଟ ଉଚ୍ଚତା ବିଶିଷ୍ଟ ଏହି ବିରଳ ହନୁମାନ ବିଗ୍ରହ ଦୃଷ୍ଟିଗୋଚର ହୋଇଥାଏ । କୈବଲ୍ୟ ବୈକୁଣ୍ଠ ତଥା ଉତ୍ତରଦ୍ୱାରକୁ ରକ୍ଷା କରୁଥିବା ପଦ୍ମାସନରେ ଉପବିଷ୍ଟ ଏହି ଅଷ୍ଟଭୂଜୀ ହନୁମାନ ଚାରି ହସ୍ତରେ ବିଷ୍ଣୁଚକ୍ର, କାଳଚକ୍ର, ଦେବୀଚକ୍ର ଓ ଭୈରବୀଚକ୍ର ଧାରଣ କରିଥିବାରୁ ଅନେକେ ଏହାଙ୍କୁ 'ଚାରିଚକ୍ର ହନୁମାନ' ନାମରେ ନାମିତ କରିଥାନ୍ତି । ଏହାଙ୍କର ଅନ୍ୟ ଦୁଇହସ୍ତ ଯୋଡ଼ହସ୍ତ ତଥା ଅପର ଦୁଇହସ୍ତ ଜପମୁଦ୍ରାଯୁକ୍ତ ରୁଦ୍ରାକ୍ଷ ମାଳା ଥିବାରୁ ଏହି ତପସ୍ୱୀ ହନୁମାନଙ୍କୁ 'ସନ୍ଥ ହନୁମାନ' ମଧ୍ୟ କୁହାଯାଏ । ସୁଦର୍ଶନର ଗର୍ବଗଞ୍ଜନ କରିଥିବାରୁ କେହି କେହି ଏହାଙ୍କୁ ଗର୍ବଗଞ୍ଜନ ହନୁମାନ ନାମରେ ଅଭିହିତ କରିଥାନ୍ତି । ବିଗ୍ରହକଳା ଦୃଷ୍ଟିରୁ ଏହି ହନୁମାନ ବିଗ୍ରହ ଖ୍ରୀଷ୍ଟିୟ ଦ୍ୱାଦଶ/ତ୍ରୟୋଦଶ ଶତାବ୍ଦୀର ବୋଲି ଧାରଣା ଜନ୍ମେ । ସମଗ୍ର ଦେଶରେ ଏତାଦୃଶ ମୂର୍ତ୍ତି ଅନ୍ୟକୁତ୍ରାପି କଳ୍ପନା କରାଯାଇନାହିଁ ।

ଶ୍ରୀମନ୍ଦିରର ଆଲୋଚ୍ୟ ଚତୁଃଦ୍ୱାର ବ୍ୟତୀତ ବେଢ଼ାଭିତରେ ପ୍ରତିଷ୍ଠିତ ଅନ୍ୟ କେତୋଟି ହନୁମାନଙ୍କ ସମ୍ବନ୍ଧରେ ଦୃକ୍‌ପାତ କଲେ ଜଣାଯାଏ ଯେ ଦକ୍ଷିଣଦ୍ୱାରର ବାହାରବେଢ଼ାରେ ରଘୁନାଥ ମନ୍ଦିର ସାମ୍ନାରେ ପ୍ଲଟ ନଂ ୨୪୭ ଉପରେ ଦକ୍ଷିଣାଭିମୁଖୀ ଏକ ପ୍ରାଚୀନ ମନ୍ଦିରରେ ବାମ ହସ୍ତରେ ଲଡ଼ୁ ଓ ଦକ୍ଷିଣ ହସ୍ତରେ ଗଦାଧାରଣ କରିଥିବା ସାତଫୁଟ ଉଚ୍ଚତା ବିଶିଷ୍ଟ ଏକ ବୃହତ୍ ହନୁମାନ ବିଗ୍ରହ ଦେଖିବାକୁ ମିଳେ । ଏହାଙ୍କ ଚତୁଃପାର୍ଶ୍ୱରେ ସୁଗ୍ରୀବ, ଜାମ୍ବବ, ଅଙ୍ଗଦ, ସୁଷେଣ, ନଳ, ନୀଳ, ଗୟ, ଗବାକ୍ଷ, ତାରାକ୍ଷ, କନ୍ଦର୍ପ ଓ ସୌରୀ ପ୍ରଭୃତି ଏଗାର ଜଣ ବୀର ବାନରସେନା ରାମାୟଣ ଯୁଗର ସ୍ମୃତିକୁ ବହନ କରି ପୂଜା ପାଉଥିବାରୁ ଏହି ଦ୍ୱାଦଶ ମୂର୍ତ୍ତିଙ୍କୁ ବାରଭାଇ/ବାରଭାୟା/ବୀରଭାଇ/ବଡ଼ଭାଇ ହନୁମାନ ନାମରେ ଆଖ୍ୟାୟିତ କରାଯାଇଥାଏ । ଏକ ରୁଦ୍ଧ ପ୍ରକୋଷ୍ଠରେ ଏତେଗୁଡ଼ିଏ ହନୁମାନଙ୍କର ଏକତ୍ର ସମାବେଶ ସମ୍ବନ୍ଧରେ ଅନେକ କଥା ଶୁଣିବାକୁ ମିଳେ । ସମ୍ଭବତଃ ପୂର୍ବରୁ ଶ୍ରୀମନ୍ଦିର ପ୍ରାଙ୍ଗଣରେ ଥିବା ଅନେକ ପ୍ରାଚୀନ ହନୁମାନ ମନ୍ଦିର କ୍ରମଶଃ କାଳକବଳିତ ହୋଇଯିବାରୁ ତନ୍ମଧ୍ୟରେ ଉପାସିତ ହନୁମାନ ମୂର୍ତ୍ତି ସମୂହକୁ ଏକତ୍ର କରି ଏଠାରେ ପୂଜା ବ୍ୟବସ୍ଥା ପ୍ରଚଳିତ ଅଛି । ପୁନଶ୍ଚ ଦକ୍ଷିଣଦ୍ୱାରରେ ଦଣ୍ଡାୟମାନ ବିଶାଳ ହନୁମାନଙ୍କୁ ଦର୍ଶନ କରିବା ପରେ ବିଭିନ୍ନ ରାଜ୍ୟର ରାମଭକ୍ତଗଣ ଏକ ଏକ ସ୍ମାରକୀ ହନୁମାନ ପ୍ରଦାନ କରିଥିବା ହେତୁ ସମ୍ଭବତଃ ସେମାନଙ୍କୁ ଏଠାରେ ଶ୍ରେଣୀବଦ୍ଧ ଭାବେ ସୁସଜ୍ଜିତ କରି ରଖାଯାଇଛି ବୋଲି ଅନେକେ ମତବ୍ୟକ୍ତ କରନ୍ତି । ସେ ଯାହା ହେଉନା କାହିଁକି ବହୁପ୍ରାଚୀନ କାଳରୁ ଶ୍ରୀଜଗନ୍ନାଥଙ୍କ ସହିତ ହନୁମାନ ଉପାସନା ଯେ ଏହି କ୍ଷେତ୍ରରେ ସମତାଳରେ ବିକାଶ ଲାଭ କରିଅଛି, ଏହି ଦ୍ୱାଦଶ ହନୁମାନ ବିଗ୍ରହ ତାହାର ସାକ୍ଷ୍ୟ ପ୍ରଦାନ କରିଥାଏ । ଏତଦ୍‌ବ୍ୟତୀତ ପୂର୍ବେ ବାଇଶି ପାହାଚର ଉଭୟପାର୍ଶ୍ୱରେ ଥିବା ସରଘରଗୁଡ଼ିକୁ ଭଙ୍ଗାଯାଇ ସେଠାରୁ ସଂଗୃହୀତ ୧୫ଟି ହନୁମାନ ବିଗ୍ରହଙ୍କୁ ଶ୍ରୀମନ୍ଦିର କାର୍ଯ୍ୟାଳୟ ଗୃହ ମଧ୍ୟରେ ସଂରକ୍ଷିତ କରି ରଖାଯାଇଛି । ଏଥିରୁ ଶ୍ରୀମନ୍ଦିର ବେଢ଼ା ପରିସର ମଧ୍ୟରେ ହନୁମାନ

ଉପାସନାର ପ୍ରାବଲ୍ୟ ସମ୍ବନ୍ଧରେ ସୂଚନା ହିଁ ମିଳିଥାଏ । ରାମଦୂତ ହନୁମାନ ଅନ୍ତର୍ବେଦୀର ରକ୍ଷାକର୍ତ୍ତା ଭାବେ ଶ୍ରୀମନ୍ଦିର ବେଢ଼ା ପରିସର ମଧ୍ୟରେ ଇତଃସ୍ତତଭାବେ ଅନେକ ହନୁମାନ ଉପାସିତ ହେଉଛନ୍ତି । ସେମାନଙ୍କ ମଧ୍ୟରେ ଶ୍ରୀମନ୍ଦିରରୁ ଆସୁରୀଶକ୍ତିର ବିନାଶ ପାଇଁ କୂର୍ମବେଢ଼ା ସଂଲଗ୍ନ ମଧ୍ୟଗୁମୁଟରେ ଅସୁର ଉପରେ ଦଣ୍ଡାୟମାନ ଚାରି ଫୁଟ ଉଚ୍ଚତା ବିଶିଷ୍ଟ ଏକ ହନୁମାନ ବିରାଜିତ । ଏହାଙ୍କୁ କେହି କେହି ଗର୍ବଗଞ୍ଜନ ହନୁମାନ ନାମରେ ଅଭିହିତ କରିଥାନ୍ତି । ସୀତାଠାକୁରାଣୀଙ୍କ ସ୍ୱହସ୍ତ ରନ୍ଧନ ପ୍ରସାଦ ସେବନ କରିବାପାଇଁ ମନରେ ଆଶାପୋଷଣ କରିଥିବା ହନୁମାନଙ୍କ ମନୋବାଞ୍ଛା ପୂରଣ ପାଇଁ କଳିଯୁଗରେ ମା'ଲକ୍ଷ୍ମୀ ଠାକୁରାଣୀ ତାଙ୍କୁ ଶ୍ରୀମନ୍ଦିର ରନ୍ଧନଶାଳା ଦ୍ୱାରରେ ସ୍ଥାନ ଦେଇଛନ୍ତି । ସେଠାରେ ବିଦ୍ୟମାନ ଥାଇ ପ୍ରସାଦ ଘ୍ରାଣରେ ତୃପ୍ତିଲାଭ କରୁଛନ୍ତି ମାତ୍ର । ପୁନଶ୍ଚ ନାଟ ମଣ୍ଡପ ଓ ଭୋଗମଣ୍ଡପ ପ୍ରଭୃତି ସ୍ଥାନରେ ବିଭିନ୍ନ ଆକୃତିର ମହାବୀର ହନୁମାନ ମୂର୍ତ୍ତି ପୂଜା ପାଇ ଆସୁଛନ୍ତି ।

ଏମାନଙ୍କ ବ୍ୟତୀତ ବାଇଶି ପାହାଚରେ କାଶୀ ବିଶ୍ୱନାଥ ମନ୍ଦିର ସମ୍ମୁଖସ୍ଥ ଶ୍ରୀରାମଚନ୍ଦ୍ର ମନ୍ଦିର (ପ୍ଲଟ ନଂ ୧୬୬)ରେ ରାମାଭିଷେକ ମୂର୍ତ୍ତିଙ୍କ ନିକଟରେ, ସତ୍ୟ ନାରାୟଣ ମନ୍ଦିର ସଂଲଗ୍ନ ମେରଦା ରୋଷ (ପ୍ଲଟ ନଂ ୧୧୦) ଘରେ, ରାଧାକୃଷ୍ଣ ମନ୍ଦିର (ପ୍ଲଟ ନଂ ୧୧୨) ବାହାର ପୂର୍ବପାର୍ଶ୍ୱ କାନ୍ଥରେ, ସର୍ବମଙ୍ଗଳା ମନ୍ଦିର ଜଗମୋହନ କାନ୍ଥରେ ୨ଟି ପୁନଶ୍ଚ ଏହି ମନ୍ଦିରର କଳାହାଟ ଦ୍ୱାର ଉପରେ, ଦକ୍ଷିଣଦ୍ୱାର (ପ୍ଲଟ ନଂ ୨୪୨) ଗୁମୁଟରେ, ଦକ୍ଷିଣଦ୍ୱାର ଭିତରେ ବାମପଟେ ଅବସ୍ଥିତ ଚନ୍ଦନ ଘରର ବାହାରପଟ କାନ୍ଥରେ, ସୂର୍ଯ୍ୟ ଯନ୍ତ୍ର ମନ୍ଦିରର ପୂର୍ବପଟ ବାହାର କାନ୍ଥରେ ସ୍ଥିତ ଏକ ଠଣାରେ, ମୁକ୍ତିମଣ୍ଡପ ନିକଟସ୍ଥ ନୃସିଂହ ମନ୍ଦିର (ପ୍ଲଟ ନଂ ୮୧) ଦ୍ୱାରର ଉଭୟ ପାର୍ଶ୍ୱରେ, ମୁକ୍ତେଶ୍ୱର ମହାଦେବ (ପ୍ଲଟ ନଂ ୮୩) ମନ୍ଦିରର ପଶ୍ଚିମପଟେ ବାହାର କାନ୍ଥରେ, ପଶ୍ଚିମ ଦ୍ୱାର ଭିତରକୁ ଆସିଲେ ବାମପଟେ ଅବସ୍ଥିତ ମଣ୍ଡଣିଗୃହ (ପ୍ଲଟ ନଂ ୬୭) ମଧ୍ୟରେ, ସୂର୍ଯ୍ୟ ନାରାୟଣ ମନ୍ଦିର (ପ୍ଲଟ ନଂ ୪୫) ଗାତ୍ରରେ ପୁନଶ୍ଚ ଏହି ମନ୍ଦିରର କଳାହାଟଦ୍ୱାର ଖମ୍ବ ଉପରେ, ବେଦ ବିଦ୍ୟାଳୟ ବାହାରପଟ କାନ୍ଥରେ, ଏହା ପାର୍ଶ୍ୱସ୍ଥ ଶ୍ରୀରାମଚନ୍ଦ୍ର ମନ୍ଦିରରେ, ଉତ୍ତରଦ୍ୱାର ନିକଟରେ ଥିବା ଫୁଲଘର ବାହାର କାନ୍ଥରେ, ଉତ୍ତର ଦ୍ୱାର ବାହାରକୁ ବାହାରିଗଲେ ଶ୍ରୀମନ୍ଦିର କାର୍ଯ୍ୟାଳୟ ପ୍ରତିହାରୀ ନିଯୋଗର ପୂର୍ବପଟ କାନ୍ଥରେ, ପୂଜାପଣ୍ଡା ନିଯୋଗ ମଧ୍ୟରେ ଥିବା ଅମୁଣିଆ ସରଘରେ, ଆନନ୍ଦ ବଜାର ଗୁମୁଟର ଉଭୟ ପାର୍ଶ୍ୱରେ, ଆନନ୍ଦ ବଜାର ଖଜାଦୋକାନ (ନଂ ୭) ଭିତରେ, ଚାହାଣି ମଣ୍ଡପ ସାମ୍ନା ବରଗଛ ମୂଳରେ, ବେହରଣଦ୍ୱାର ପୂର୍ବପଟ କାନ୍ଥରେ, ଦକ୍ଷିଣଘର ବାହାରପଟ କାନ୍ଥରେ, ନାଭିକଟା ମଣ୍ଡପ (ପ୍ଲଟ ନଂ ୩୧)ରେ, ଗାରଦ (ପ୍ଲଟ ନଂ ୩୩) ଗୃହରେ ଦୁଇଟି, ଜଗମୋହନର ସାତ ପାହାଚ ସଂଲଗ୍ନ ପୂର୍ବପଟେ ଥିବା ପନ୍ତିଘର (ପ୍ଲଟ ନଂ ୩୬) ମଧ୍ୟରେ, ଜଗମୋହନର ବିଭିନ୍ନ ୫ଟି ସ୍ତମ୍ଭରେ, ଭଣ୍ଡାରଘର ସମୀପସ୍ଥ ମୁଦୁଲିଘର ଆଲମିରାରେ, ବିମାନ ସରଘର (ପ୍ଲଟ ନଂ ୧୨୯) ମଧ୍ୟରେ, ପ୍ଲଟ ନଂ ୨୧୩ ଉପରେ ନିର୍ମିତ ସର ଘରେ, ମଣ୍ଡଣି ଘର (ପ୍ଲଟ ନଂ ୬୭) ମଧ୍ୟରେ ଓ ଫୁଲଗୁଣ୍ଠା ଘର (ପ୍ଲଟ ନଂ ୨୦) ପ୍ରଭୃତି ସ୍ଥାନରେ ବିଭିନ୍ନ ଆକୃତିର ହନୁମାନ ବିଦ୍ୟମାନ ଥାଇ ଉପାସିତ ହେଉଛନ୍ତି । ଏମାନଙ୍କ ସହିତ କୋଇଲି ବୈକୁଣ୍ଠସ୍ଥ ସୁଆର ମହାସୁଆର ନିଯୋଗ ପଦ୍ମାର ଭିତରକାନ୍ଥରେ ସିମେଣ୍ଟ ନିର୍ମିତ ଦୁଇଟି କ୍ଷୁଦ୍ର ହନୁମାନ ମୂର୍ତ୍ତି ଓ ଏହି ନିଯୋଗର ତଳପଟ ମହଲାର ବହିଃପାର୍ଶ୍ୱ କାନ୍ଥରେ କଟ୍ ଆଉଟ୍ ଆକୃତିର ପ୍ରାୟ ଷାଢ଼େ ଛ'ଫୁଟ ଉଚ୍ଚତା ବିଶିଷ୍ଟ ସିମେଣ୍ଟର ଏକ ବୃହତ୍ ମୂର୍ତ୍ତି ଦେଖିବାକୁ ମିଳିଥାଏ । ଏତଦ୍‌ଭିନ୍ନ ଦକ୍ଷିଣଘର (ପ୍ଲଟ ନଂ ୨୪) ମଧ୍ୟରେ ହନୁମାନଙ୍କର ଅଷ୍ଟଧାତୁର ଚଳନ୍ତି ବିଗ୍ରହ ସମେତ ଦକ୍ଷିଣଦ୍ୱାର ଶ୍ରୀରାମଚନ୍ଦ୍ର ମନ୍ଦିରରେ ଓ ବାହାର ଗୁମୁଟର ଉତ୍ତରପଟ କାନ୍ଥରେ ମଧ୍ୟ ଅଷ୍ଟଧାତୁ ନିର୍ମିତ ହନୁମାନ ବିଗ୍ରହ ବିରାଜିତ ଅଛନ୍ତି । ଶ୍ରୀମନ୍ଦିର ବେଢ଼ା ପରିସରସ୍ଥ ମୋଟ ୧୧୬ ମହାବୀର ହନୁମାନ ମଧ୍ୟରେ ଯେଉଁ ଏଗାରଟି ଚିତ୍ରବିଗ୍ରହ ଦୃଷ୍ଟିକୁ ଆସେ, ସେଗୁଡ଼ିକ ହେଲା - ମହାଲକ୍ଷ୍ମୀ ମନ୍ଦିର (ପ୍ଲଟ ନଂ ୫୫)ର ଜଗମୋହନ କାନ୍ଥରେ ଚିତ୍ରିତ ଲକ୍ଷ୍ମୀମୋହନ ହନୁମାନ, ମୁଖ୍ୟ ମନ୍ଦିରର ମାଜଣା ମଣ୍ଡପ ଭିତରପାର୍ଶ୍ୱ ପଶ୍ଚିମ କାନ୍ଥରେ ହନୁମାନଙ୍କର ଏକ ଭିତ୍ତିଚିତ୍ର, ଦକ୍ଷିଣଘର ବାହାର କାନ୍ଥରେ ହନୁମାନଙ୍କର ଦୁଇଟି ଚିତ୍ରବିଗ୍ରହ, ପଶ୍ଚିମଦ୍ୱାର ଅଭ୍ୟନ୍ତରସ୍ଥ ବେଢ଼ାରେ ଅବସ୍ଥିତ ଚାରିଧାମ ମନ୍ଦିରର ମଧ୍ୟ କାନ୍ଥରେ ଶ୍ରୀରାମ-ଲକ୍ଷ୍ମଣ ତଥା ଅନ୍ୟାନ୍ୟ କପିସେନାଙ୍କ ସହିତ ହନୁମାନଙ୍କର ଏକ ଭିତ୍ତିଚିତ୍ର, ବେଦବିଦ୍ୟାଳୟ ଉତ୍ତରପଟ କାନ୍ଥରେ ହନୁମାନଙ୍କର ଏକ ଭିତ୍ତିଚିତ୍ର ଆନନ୍ଦ ବଜାର ପାଣିଘର ଭିତର ଉତ୍ତରପଟ କାନ୍ଥରେ ଗୋଟିଏ ଓ ତା'ର କଡ଼ପଟେ କାନ୍ଥରେ ଆଉ ଏକ ହନୁମାନଙ୍କର ଭିତ୍ତିଚିତ୍ର ପ୍ରଭୃତି ପ୍ରତିନିଧି ସ୍ଥାନୀୟ ଅଟନ୍ତି । ସର୍ବୋପରି ଶ୍ରୀଜଗନ୍ନାଥ ପ୍ରଭୃତି ଚତୁର୍ଦ୍ଧାମୂର୍ତ୍ତି ମଧ୍ୟରେ ସ୍ୱୟଂ ସୁଦର୍ଶନ ହେଉଛନ୍ତି ହନୁମାନଙ୍କ ପ୍ରତିଭୂ ଏବଂ ତତ୍‌ସହିତ ଶ୍ରୀମନ୍ଦିର ଶୀର୍ଷରେ ଉଡ୍‌ଡୀୟମାନ ପତିତପାବନ ବାନାରେ ଅଙ୍କିତ କପିଚିହ୍ନରୁ ଶ୍ରୀଜଗନ୍ନାଥ ଚେତନାରେ ହନୁମାନ ଉପାସନାର ପ୍ରାଧାନ୍ୟ ସୂଚିତ ହୋଇଥାଏ ।

ଶ୍ରୀଜଗନ୍ନାଥ ଦର୍ଶନ ନିମନ୍ତେ ଦେଶଦେଶାନ୍ତରରୁ ଆଗତ ଯାତ୍ରୀମାନଙ୍କୁ ଆଶ୍ରୟ ଦେଇ ଅତିଥି ସତ୍କାର କରିବା ସହିତ ଦରିଦ୍ର ନାରାୟଣ ସେବାକାର୍ଯ୍ୟ ସର୍ବୋପରି ଶିକ୍ଷା ସଂସ୍କୃତି ପ୍ରସାର ଉଦ୍ଦେଶ୍ୟରେ ପ୍ରାଚୀନକାଳରୁ ଶ୍ରୀକ୍ଷେତ୍ରରେ ପ୍ରତିଷ୍ଠିତ ମଠମାନଙ୍କର ଶ୍ରୀମନ୍ଦିରର ଦୈନିକ ସେବାନୀତି, ଯାନିଯାତ୍ରା ଓ ପର୍ବପର୍ବାଣି ସହ ପ୍ରତ୍ୟକ୍ଷ ବା ପରୋକ୍ଷ ସମ୍ପର୍କ ରହିଆସିଛି । ଏକ ଅନୁସନ୍ଧାନରୁ ଜଣାଯାଏ ଯେ ଶ୍ରୀକ୍ଷେତ୍ରର ପ୍ରାୟ ୬୧ଟି ମଠରେ ସମ୍ପ୍ରତି ହନୁମାନ ଉପାସନା ପ୍ରଚଳିତ ଅଛି । ସେମାନଙ୍କ ମଧ୍ୟରେ ଜଗନ୍ନାଥ ବଲ୍ଲଭ ମଠର ଉଦ୍ୟାନ ମଧ୍ୟରେ ବଡ଼ ମହାବୀର (ସୁଗ୍ରୀବ) ଓ ଗୁଆବାଡ଼ି / ସୁପାରି ମହାବୀର ବିରାଜିତ ଅଛନ୍ତି । ପୁନଶ୍ଚ ଶ୍ରୀଜଗନ୍ନାଥ ମନ୍ଦିରରୁ ଜଗନ୍ନାଥ ବଲ୍ଲଭ ମଠ ପ୍ରମୋଦ ଉଦ୍ୟାନ ପର୍ଯ୍ୟନ୍ତ ଥିବା ଗୁପ୍ତ ସୁଡ଼ଙ୍ଗ ପଥର ଦ୍ୱାରଦେଶରେ ପ୍ରହରୀ

ବେଶରେ ୮ ଫୁଟ ଉଚ୍ଚତା ବିଶିଷ୍ଟ ଗୁମ୍ଫା ମହାବୀର ବା ସୁଡଙ୍ଗ ମହାବୀର ବିଦ୍ୟମାନ । ସେ ହେଉଛନ୍ତି ଜଗନ୍ନାଥ ବଲ୍ଲଭର ମୁଖ୍ୟ ରକ୍ଷକ । ଅକ୍ଷୟ ତୃତୀୟା ଦିନ ଚନ୍ଦନ ଯାତ୍ରାର ଅବ୍ୟବହିତ ପୂର୍ବରୁ ଶ୍ରୀଜଗନ୍ନାଥଙ୍କ ବିଜେ ପ୍ରତିମା ନୌକାବିହାର ନିମିତ୍ତ ଉଦ୍ୟାନରେ ପ୍ରବେଶ କରିବା ପାଇଁ ପ୍ରଥମେ ବଡ଼ ମହାବୀର ଓ ସୁଡଙ୍ଗ ମହାବୀରଙ୍କ ଅନୁମତି ନେଇଥାନ୍ତି । ଭଗବାନ ସର୍ବଶକ୍ତିମାନ ହେଲେ ମଧ ହନୁମାନଙ୍କର ମର୍ଯ୍ୟାଦା ରକ୍ଷା ନିମିତ୍ତ ଏହି ପ୍ରଥା ଏଠାରେ ଏବେ ମଧ ପ୍ରଚଳିତ ଅଛି । ଏହି ହନୁମାନମାନଙ୍କୁ ଶ୍ରୀକ୍ଷେତ୍ରର ବହୁ ଭକ୍ତ ଦର୍ଶନ ସହ ପୂଜାର୍ଚ୍ଚନା କରିଥାନ୍ତି । ଏତଦ୍‌ବ୍ୟତୀତ ଗୋବର୍ଦ୍ଧନ ମଠ, ଗିରିସ୍ୱାମୀ ମଠ, ବଡ଼ସନ୍ତ ମଠରେ ହନୁମାନ ବିଜେସ୍ଥଳୀରେ ଉପାସିତ ହେଉଥିବା ସ୍ଥଳେ ରାଧାବଲ୍ଲଭ ମଠରେ ଅବସ୍ଥିତ ମନ୍ଦିରରେ, କାପୁଡ଼ିଆ ମଠରେ, କାଚରା ମଠରେ ମହାବୀର ପାର୍ଶ୍ୱ ବିଗ୍ରହ ରୂପେ ପୂଜା ପାଉଛନ୍ତି । ପୁନଶ୍ଚ ବଡ଼ ଓଡ଼ିଆ ମଠର ବିଜେସ୍ଥଳୀ ସଂଲଗ୍ନ ଜଗମୋହନରେ ହନୁମାନଙ୍କ ଧାତବ ବିଗ୍ରହ ବିରାଜିତ ଥିବା ସ୍ଥଳେ ଶଙ୍କରାନନ୍ଦ ମଠରେ ହନୁମାନଙ୍କର ରୌପ୍ୟ ବିଗ୍ରହ ଉପାସିତ ହେଉଛନ୍ତି । ଏତାଦୃଶ ଭାବେ ଶ୍ରୀକ୍ଷେତ୍ରର ବିଭିନ୍ନ ମଠରେ ମହାବୀର ହନୁମାନ ଉପାସନା ପ୍ରଚଳିତ ଅଛି ।

ଶ୍ରୀକ୍ଷେତ୍ର ବକ୍ଷରେ ଉନ୍ନତ ଶିଖରରେ ଦଣ୍ଡାୟମାନ ଶ୍ରୀମନ୍ଦିରର ଚତୁଃପାର୍ଶ୍ୱରେ ପ୍ରତିଷ୍ଠିତ ବିଭିନ୍ନ ଜାଗା ଆଖଡ଼ାମାନଙ୍କରେ ପରିଚାଳିତ ପ୍ରାୟ ୫୦ଟି ମଲ୍ଲ ବିଦ୍ୟାଳୟରେ ବ୍ୟାୟାମ କାର୍ଯ୍ୟକ୍ରମ ମାଧ୍ୟମରେ ଶରୀରଚର୍ଚ୍ଚା ଶିକ୍ଷା ଦିଆଯାଉଛି । ଶାରୀରିକ ଶକ୍ତି ତଥା ବ୍ରହ୍ମଚର୍ଯ୍ୟର ମୂର୍ତ୍ତିମନ୍ତ ପ୍ରତୀକ ମହାବୀର ହନୁମାନ ହେଉଛନ୍ତି ପ୍ରତ୍ୟେକ ମଲ୍ଲଯୋଦ୍ଧାଙ୍କର ଆରାଧ୍ୟ ଦେବତା ଗୁରୁ ହନୁମାନ । ଜାଗାଘରଗୁଡ଼ିକର ମୌଳିକ ଉଦ୍ଦେଶ୍ୟ ହେଉଛି ଶ୍ରୀମନ୍ଦିର ସୁରକ୍ଷା ନିମିତ୍ତ ସ୍ଥାନୀୟ ଯୁବକମାନଙ୍କୁ ମହାବୀରଙ୍କ ସଦୃଶ ସାହସୀ, ସଂଯମୀ ଓ ବଳିଷ୍ଠ କରି ଗଢ଼ି ତୋଳିବା । ତେଣୁ ପ୍ରତ୍ୟେକ ଜାଗାର ବିଜେସ୍ଥଳୀରେ ବଳ ପ୍ରଦାନକାରୀ ମହାବୀରଙ୍କୁ ସ୍ଥାପନ କରି ଯୁବକମାନେ ନିଷ୍ଠାର ସହିତ ପୂଜା ଆରାଧନା କରି ବିଭିନ୍ନ ଖେଳ କୌଶଳ ଶିକ୍ଷା ମାଧ୍ୟମରେ ଶକ୍ତି ସଞ୍ଚୟ କରିଥାନ୍ତି । ପୁରୀ ସହରର ସାତସାହି ବୟାଳିଶି କନ୍ଦିରେ ପ୍ରତିଷ୍ଠିତ ସୁନ୍ଦରାଜାଗା, ମୁଦୁଲି ବଡ଼ପୋଖରୀ ଜାଗା, ବାରବାଟି ଜାଗା, ଡିପ ଜାଗା, ଦିଶୁନି ଜାଗା, ସାତବଖରା ଜାଗା, ପାଣ୍ଡ ଜାଗା, ଗୁରୁଜଙ୍ଗ ଜାଗା, ଖୁଣ୍ଟିଆ ଜାଗା, ଅଡଙ୍ଗ ତିଆଡ଼ି ଜାଗା, ନୃସିଂହ ବଲ୍ଲଭ ଜାଗା, ଖାସ୍ ଜାଗା, ଶଙ୍କଟ ଜାଗା, ପଞ୍ଚୁଆତି ଜାଗା, ଅମିନ ଜାଗା, ନୂଆତୋଟା ଜାଗା, ଡୁବେଇ ଜାଗା, ଗୋପାଳି ଜାଗା, ଭଟ୍ଟଜାଗା, ଗଣ୍ଡିମାଳ ଜାଗା, ବ୍ରହ୍ମାଜାଗା, ବଡ଼ଆଖଡ଼ା, ହାତୀଆଖଡ଼ା, ବାଘଆଖଡ଼ା, ନୂଆଗଡ଼, ଲୁହାଗଡ଼, କୁଆଣିଗଡ଼, ମଲ୍ଲୀଗଡ଼, ଚମ୍ପାଗଡ଼, କଦମ୍ବଗଡ଼, ଚୁଡଙ୍ଗକୋଟ, ମରିଚିକୋଟ, ଦିବ୍ୟସିଂହ କୋଟ, ଭାଗବତ କୋଟ, ଇନ୍ଦ୍ରଦ୍ୟୁମ୍ନ କୋଟର ବିଜେସ୍ଥଳୀରେ ମହାବୀର ହନୁମାନ ଉପାସିତ ହେଉଛନ୍ତି । କୁଣ୍ଡେଇବେଣ୍ଟ ସାହିର ପ୍ରାଚୀନ ବୈଠକ ଇନ୍ଦ୍ରଦ୍ୟୁମ୍ନ କୋଟରେ ବିରାଜିତ ହନୁମାନଙ୍କ ନାମ କାକାର୍ଣ୍ଣବ ମହାବୀର । ସେହିପରି ଜାଗାଘରମାନଙ୍କରେ ପ୍ରତିଷ୍ଠିତ ହନୁମାନଙ୍କୁ ସ୍ଥାନୀୟ ଲୋକେ ଭିନ୍ନ ଭିନ୍ନ ନାମରେ ନାମିତ କରିଥାନ୍ତି, ତାହା ଅବଶ୍ୟ ସେମାନଙ୍କର ନିଜସ୍ୱ ନାମକରଣ । ବିଭିନ୍ନ କାର୍ଯ୍ୟାରମ୍ଭରେ କର୍ମଟିର ସୁସମାପ୍ତି ନିମିତ୍ତ ମହାବୀରଙ୍କୁ ଉପାସନା କରାଯାଇଥାଏ । ତେଣୁ କୁସ୍ତି କସରତ ତଥା ସାହିଯାତ୍ରା ଅନୁଷ୍ଠାନ ସମୟରେ ସାହିଭେଣ୍ଡିଆ/ଜାଗାସାଙ୍ଗମାନେ ପ୍ରଗାଢ଼ ନିଷ୍ଠାର ସହିତ ଏହି ମହାବୀରମାନଙ୍କୁ ପୂଜାର୍ଚ୍ଚନା କରିବା ସହିତ କର୍ମର ସୁସମ୍ପାଦନ ପାଇଁ ପ୍ରାର୍ଥନା କରିଥାନ୍ତି ।

ଶାସ୍ତ୍ରୀୟ ବିବୃତ୍ତି ଅନୁସାରେ ଶ୍ରୀକ୍ଷେତ୍ରଧାମକୁ ଅଷ୍ଟଶକ୍ତି ଓ ଅଷ୍ଟଶମ୍ଭୁ ସୁରକ୍ଷା ପ୍ରଦାନ କରିବା ସଦୃଶ, ଶ୍ରୀକ୍ଷେତ୍ରର ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ପ୍ରଭୁଙ୍କ ସେବକ ଭାବେ ପରମକାରୁଣିକ ଭକ୍ତପ୍ରବର ଅଷ୍ଟମହାବୀର ମଧ ସମ୍ପୂର୍ଣ୍ଣ ଧାମର ସୁରକ୍ଷା ଦାୟିତ୍ୱ ବହନ କରିଛନ୍ତି । ଶ୍ରୀକ୍ଷେତ୍ରର ମୁଖ୍ୟ ପ୍ରବେଶପଥ ଅଠରନଳା ଘାଟରେ ଆଲାମଚଣ୍ଡୀ ମନ୍ଦିର ସନ୍ନିକଟସ୍ଥ ବିଶାଳ ମନ୍ଦିରରେ ଏକ କମନୀୟ ହନୁମାନ ବିଗ୍ରହ ଉପାସିତ । ଏହି ଘାଟ ଦେଇ ପ୍ରତ୍ୟହ ସହସ୍ର ସହସ୍ର ଯାତ୍ରୀ ଶ୍ରୀକ୍ଷେତ୍ର ମଧ୍ୟରେ ପ୍ରବେଶ କରୁଥିବାରୁ ଏଠାରେ ପ୍ରତିଷ୍ଠିତ ଏହି ହନୁମାନଙ୍କୁ ପୂଜା ଆରାଧନା ପୂର୍ବକ କୁମ୍ଭାରପଡ଼ାର ଯୁବକଗଣ ଏକ ବୈଠକ ସୃଷ୍ଟି କରି ଶରୀର ଚର୍ଚ୍ଚା ମାଧ୍ୟମରେ ଆଗନ୍ତୁକ ଯାତ୍ରୀମାନଙ୍କୁ ଆବଶ୍ୟକ ସେବା, ନିରାପତ୍ତା ତଥା କାୟିକ ବାଚିକ ସହାୟତା ପ୍ରଦାନ କରିଆସୁଥିବା ଜଣାଯାଏ । କିମ୍ବଦନ୍ତୀ ଅନୁସାରେ ଯେତେବେଳେ ହନୁମାନ ଲଙ୍କାପୁର ଦହନ କରି, ସମୁଦ୍ର ଉପର ଦେଇ ଆକାଶମାର୍ଗରେ ପ୍ରତ୍ୟାବର୍ତ୍ତନ କରୁଥିଲେ, ସେତେବେଳେ ତାଙ୍କ ଶରୀରରୁ ନିର୍ଗତ ଘର୍ମ ବିନ୍ଦୁ ସମୁଦ୍ରରେ ଝରି ପଡ଼ିଲା । ଏକ ମଗରମାଛ ଉକ୍ତ ସ୍ୱେଦକଣିକା ପାନ କରି ଏକ ମକର ଶିଶୁ ପ୍ରସବ କରିବା ପରେ ତାହାକୁ ପାତାଳପୁରର ରାଜା ମହୀରାବଣକୁ ପ୍ରଦାନ କଲା । ମହୀରାବଣ ଉକ୍ତ ମକର ଶିଶୁଟିକୁ ଦ୍ୱାରପାଳ ରୂପେ ନିଯୁକ୍ତି ଦେଇଥିବା ଜାଣିବାକୁ ପାଇ, ହନୁମାନ ପାତାଳପୁର ଆକ୍ରମଣ ପୂର୍ବକ ମହୀରାବଣକୁ ମାରି ମକରକୁ ବିଜୟ ଧ୍ୱଜାରେ ସ୍ଥାପନ କରି ପ୍ରତ୍ୟାବର୍ତ୍ତନ କରିଥିଲେ । ସେଥିପାଇଁ ଏହି ହନୁମାନ ମୂର୍ତ୍ତି ମକରଧ୍ୱଜ ମହାବୀର ନାମରେ ପରିଚିତ । ଭିନ୍ନ ଏକ କିମ୍ବଦନ୍ତୀ ଅନୁଯାୟୀ ଏକଦା ମକରଧ୍ୱଜ କାମଦେବ ଏହି ହନୁମାନଙ୍କ ନିଷେଧାଦେଶ ଲଂଘନ କରି ଶ୍ରୀକ୍ଷେତ୍ର ମଧ୍ୟରେ ପ୍ରବେଶ ପାଇଁ ଉଦ୍ୟମ କରିବାରୁ ହନୁମାନ ତାଙ୍କୁ ଯୁଦ୍ଧରେ ପରାସ୍ତପୂର୍ବକ ବିଜୟ ଲାଭ କରିବା ଫଳରେ ପରାଜିତ କାମଦେବ ନିରାଶ ହୋଇ ଫେରିଯାଇଥିଲେ । ସେଥିପାଇଁ ଏହି ହନୁମାନ ବିଗ୍ରହର ବିଶେଷତ୍ୱ ଏହି ଯେ ସେ ଗୋଟିଏ ହସ୍ତରେ ଖଡ଼୍‌ଗ ଓ ଅନ୍ୟହସ୍ତରେ କାମ ବିଜୟର ସ୍ମାରକୀ ସ୍ୱରୂପ ବିଜୟ ଧ୍ୱଜା ଧାରଣ କରିଛନ୍ତି । ଏହି ମକରଧ୍ୱଜ ମହାବୀରଙ୍କୁ ଦର୍ଶନ କଲେ ହୃଦୟରୁ କାମ ଭାବ ଦୂରୀଭୂତ ହୋଇଥାଏ ବୋଲି ଲୋକବିଶ୍ୱାସ ରହିଛି । କାମନା ବାସନା ପରିହାର ନିମିତ୍ତ ସାଧୁସନ୍ଥମାନେ ଏହି ହନୁମାନଙ୍କୁ ସଭକ୍ତି ପୂଜାର୍ଚ୍ଚନା କରିଥାନ୍ତି ।

ଶ୍ରୀକ୍ଷେତ୍ରର ଉତ୍ତର ପୂର୍ବଦିଗସ୍ଥ ବାଲିଘାଟର ରକ୍ଷକଭାବେ ବାଲୁଖଣ୍ଡ ମୌଜାର ଚାମୁଣ୍ଡା ମନ୍ଦିର ସନ୍ନିକଟବର୍ତ୍ତୀ ତାଳବଣିଆରେ ଦକ୍ଷିଣ ହସ୍ତରେ ପର୍ବତ ଓ ବାମହସ୍ତରେ ଗଦାଧାରଣ କରିଥିବା ସିଦ୍ଧ ମହାବୀର ବିରାଜିତ । କଳାକୌଶଳ ପରିପୂର୍ଣ୍ଣ ଏକ ପ୍ରାଚୀନ ମନ୍ଦିରରେ ୧୪ଶ/୧୫ଶ ଶତାବ୍ଦୀରେ ନିର୍ମିତ ଏହି ଆକର୍ଷଣୀୟ ଶୈଳୀର ହନୁମାନ ବିଗ୍ରହ ବିଦ୍ୟମାନ । ଏହାଙ୍କର ଅଧିଷ୍ଠାନ ମଣ୍ଡପ ଚତୁଃପାର୍ଶ୍ୱରେ ଶ୍ରେଣୀବଦ୍ଧ ଭାବେ ଅନେକ ହନୁମାନ ମୂର୍ତ୍ତି ଖୋଦିତ ହୋଇଛି । ଏହି ମହାବୀରଙ୍କ ପ୍ରତିଷ୍ଠା ସମ୍ପର୍କରେ ଭିନ୍ନ ଭିନ୍ନ କିମ୍ବଦନ୍ତୀ ସବୁ ରହିଛି । ପୌରାଣିକ ଆଖ୍ୟାୟିକା ଅନୁସାରେ ସତ୍ୟଯୁଗରେ ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ ଶ୍ରୀମନ୍ଦିର ନିର୍ମାଣ ତଥା ଶ୍ରୀବିଗ୍ରହ ପ୍ରତିଷ୍ଠା ନିମିତ୍ତ ଅବନ୍ତୀ କଟକରୁ ନୀଳାଦ୍ରି ଅଭିମୁଖେ ଆଗମନ ସମୟରେ ଏଠାରେ ଏକ ଉଜ୍ଜ୍ୱଳ ଜ୍ୟୋତି ମଧ୍ୟରୁ ଏହି ହନୁମାନ ପ୍ରକାଶମାନ ହୋଇ କହିଲେ 'ମୁଁ ଯୁଗଯୁଗ ଧରି ଏହି ପବିତ୍ରକ୍ଷେତ୍ରର ରକ୍ଷଣାବେକ୍ଷଣ କରି ଆସୁଅଛି । ହେ ରାଜନ ! ଆପଣ ନିରାଶ ନହୋଇ ମୋର ସିଦ୍ଧାଶ୍ରମରେ ଅବସ୍ଥାନ ପୂର୍ବକ ମହାପ୍ରଭୁଙ୍କ ଭବ୍ୟମନ୍ଦିର ନିର୍ମାଣରେ ମନୋନିବେଶ କରନ୍ତୁ ।' ତେଣୁ ରାଜା ଇନ୍ଦ୍ରଦ୍ୟୁମ୍ନ ଏହି ହନୁମାନଙ୍କ ପୂଜାର୍ଚ୍ଚନା ପୂର୍ବକ ଶ୍ରୀମନ୍ଦିର ନିର୍ମାଣକାର୍ଯ୍ୟ ସୁସମ୍ପନ୍ନ କରିଥିଲେ ବୋଲି ଶ୍ରୀଜଗନ୍ନାଥ ସଂସ୍କୃତିର ପ୍ରାମାଣିକ ଗ୍ରନ୍ଥ ଇନ୍ଦ୍ର ନୀଳମଣି ପୁରାଣରେ ଉଲ୍ଲେଖ ରହିଛି । ସେହି ହେତୁ ଏହି ହନୁମାନଙ୍କ ଇତିହାସ, ପ୍ରଥମ ଶ୍ରୀମନ୍ଦିର ନିର୍ମାଣ ଇତିହାସ ସହିତ ନିଶ୍ଚିତ ଭାବେ ସମ୍ପର୍କିତ । ଭିନ୍ନ ଏକ କିମ୍ବଦନ୍ତୀ ଅନୁସାରେ ଆକବରଙ୍କ ରାଜତ୍ୱ କାଳରେ ୧୬ଶ ଶତାବ୍ଦୀରେ ସନ୍ଥ ତୁଳସୀ ଦାସ ଗୋସ୍ୱାମୀ ପରଂବ୍ରହ୍ମ ଶ୍ରୀଜଗନ୍ନାଥ ଦର୍ଶନ କରିବା ଉଦ୍ଦେଶ୍ୟରେ ଶ୍ରୀକ୍ଷେତ୍ର ଆଗମନ କାଳରେ ଏହିଠାରେ ମଠ ସ୍ଥାପନ କରି ପ୍ରୋକ୍ତ ହନୁମାନଙ୍କୁ ପୂଜାର୍ଚ୍ଚନା ପୂର୍ବକ ଶ୍ରୀଜୀଉଙ୍କୁ ରାମ ସ୍ୱରୂପରେ ଦେଖିବା ପାଇଁ ନିରାହାର ରହି ତପସ୍ୟା କରିଥିଲେ । ଏହି ହନୁମାନ ଉପାସନାରେ ସିଦ୍ଧିଲାଭ କରି ଶ୍ରୀଜଗନ୍ନାଥଙ୍କ ପ୍ରକଟ ଶରୀରରେ ଶ୍ରୀରାମଚନ୍ଦ୍ରଙ୍କୁ ଆବିଷ୍କାର କରିବା ସହ ଏଠାରେ ରାମଚରିତ ମାନସ ଲେଖିବାରେ ସଫଳ କାମ ହୋଇଥିବାରୁ ଏହି ହନୁମାନଙ୍କୁ ସିଦ୍ଧମହାବୀର କୁହାଯାଏ । ପୁନଶ୍ଚ ଜନୈକ ହନୁମାନ ଭକ୍ତ ସାଧକ ରାମକୃଷ୍ଣ ଦାସ ସୁଦୂର ଅଯୋଧ୍ୟାରୁ ଚଲାଇ ଚଲାଇ ଶ୍ରୀକ୍ଷେତ୍ରରେ ଏହି ମହାବୀରଙ୍କୁ ସ୍ଥାପନ କରିଥିଲେ ବୋଲି ଜନଶ୍ରୁତି ରହିଛି । ସର୍ବୋପରି ଓଡ଼ିଶାର ପ୍ରସିଦ୍ଧ ବୈଦ୍ୟ ମାଗୁଣି ବ୍ରହ୍ମା ଏହି ସିଦ୍ଧ ମହାବୀରଙ୍କୁ ପୂଜାର୍ଚ୍ଚନା କରି ସିଦ୍ଧିଲାଭ କରିଥିଲେ ବୋଲି ଶୁଣିବାକୁ ମିଳେ । ତେଣୁ ସିଦ୍ଧିଲାଭର ଏହା ପ୍ରକୃଷ୍ଟ ପୀଠ ବୋଲି ପୁରୀବାସୀଙ୍କର ଗଭୀର ବିଶ୍ୱାସ । ବିପତ୍ତି କାଳରେ ଯେଉଁମାନେ ଏହି ସିଦ୍ଧ ହନୁମାନ ପୀଠରେ ରାମାୟଣର ସୁନ୍ଦରାକାଣ୍ଡ ପାଠ କରିଥାନ୍ତି, ସେମାନଙ୍କର ସମସ୍ତ କାର୍ଯ୍ୟ ସିଦ୍ଧ ହୋଇଥାଏ । ଏକଦା ଏହି ହନୁମାନ ମନ୍ଦିର ଘଞ୍ଚ ଅରଣ୍ୟ ପରିବୃତ୍ତ ଥିଲା । ସମ୍ପ୍ରତି ଏହା ଶ୍ରୀକ୍ଷେତ୍ରର ଏକ ପ୍ରଧାନ ତୀର୍ଥସ୍ଥଳରେ ପରିଣତ ହୋଇଛି । ମହାବିଷୁବ ସଂକ୍ରାନ୍ତି ଓ ରାମନବମୀ ନୀତି ଏଠାରେ ଯଥାରୀତି ଅନୁଷ୍ଠିତ ହୋଇଥାଏ । ସର୍ବୋପରି ମାର୍ଗଶିର କୃଷ୍ଣ ପଞ୍ଚମୀ ତିଥିରେ ସିଦ୍ଧିଦାତା ବଜରଙ୍ଗ ବାଲି ବର୍ଚ୍ଛା, ଖଣ୍ଡା, ଘଣ୍ଟି, ଛୁରା, ତୀର, ଢାଲ ଧାରଣ ପୂର୍ବକ ଖଡ୍ଗ, ହାଣ୍ଡିଆ, ବାହୁଟି, ବାଘଛାଲ ପରିଧାନ କରି ନାଗାବେଶରେ ବିଭୂଷିତ ହୋଇଥାନ୍ତି । ଏହାର କାରଣ ହେଲା ନାଗାମାନେ ବ୍ରହ୍ମଚାରୀ, ହନୁମାନ ମଧ୍ୟ ବ୍ରହ୍ମଚାରୀ । ତେଣୁ ତ୍ୟାଗ ଓ ବୀରତ୍ୱର ନିଦର୍ଶନ ସ୍ୱରୂପ ମହାବୀର ନାଗାବେଶରେ ସଜ୍ଜିତ ହୋଇ ଭକ୍ତମାନଙ୍କୁ ପ୍ରତ୍ୟେକ ବର୍ଷ ଏହି ପୁଣ୍ୟତିଥିରେ ଦର୍ଶନ ଦେଇଥାନ୍ତି । ସିଦ୍ଧ ମହାବୀରଙ୍କର ଉକ୍ତ ନାଗାବେଶ ଦର୍ଶନ ପାଇଁ ଅସଂଖ୍ୟ ଭକ୍ତଙ୍କର ସମାବେଶ ହୋଇଥାଏ । ଶ୍ରୀମନ୍ଦିର ମୁଖ୍ୟ ବିମାନର ବେକିରେ ପୂର୍ବାଭିମୁଖ ହୋଇ ବିରାଜିତ ଥାଇ ମୁଖ୍ୟ ବିମାନକୁ ରକ୍ଷା କରୁଥିବା ହନୁମାନଙ୍କୁ କେହି କେହି ସିଦ୍ଧ ମହାବୀର ବୋଲି କହିଥାନ୍ତି । ଏତଦ୍‌ବ୍ୟତୀତ କୁଣ୍ଡେଇବେଣ୍ଟ ସାହିରେ ଏକ ହନୁମାନ ଉପାସିତ ହେଉଛନ୍ତି, ଯାହାଙ୍କୁ ସିଦ୍ଧ ହନୁମାନ ମଧ୍ୟ କୁହାଯାଇଥାଏ ।

ଶ୍ରୀକ୍ଷେତ୍ରର ପଶ୍ଚିମ ଦିଗସ୍ଥ ଲୋକନାଥ ଘାଟରେ ବର୍ଗୀ ହନୁମାନ ବିରାଜିତ । ଶ୍ରୀମନ୍ଦିରଠାରୁ ଲୋକନାଥ ମନ୍ଦିର ଅଭିମୁଖେ ଯିବାରାସ୍ତାର ବାମପାର୍ଶ୍ୱରେ ଉତ୍ତରାଭିମୁଖୀ ଏହି ମନ୍ଦିରଟି ଅବସ୍ଥିତ । ବର୍ଗୀମାନେ ଦାକ୍ଷିଣାତ୍ୟରୁ ଏହିପଥ ଦେଇ ଶ୍ରୀକ୍ଷେତ୍ରକୁ ଆସିବା ସମୟରେ ଏଠାରେ ଦଶଫୁଟ ଉଚ୍ଚତା ବିଶିଷ୍ଟ ଉକ୍ତ ବିଶାଳକାୟ ମହାବୀର ପ୍ରତିଷ୍ଠା କରିଥିଲେ । ମତାନ୍ତରେ ଅତୀତରେ ମହାରାଷ୍ଟ୍ରର ବର୍ଗୀମାନେ ଅଶ୍ୱପୃଷ୍ଠରେ ଏହିପଥରେ ଆସି ଶ୍ରୀକ୍ଷେତ୍ରରେ ପ୍ରବେଶ କରୁଥିଲେ । ସେମାନଙ୍କ ଉପସ୍ଥିତି ଯୋଗୁଁ ପୁରୀବାସୀ ଭୟପ୍ରାପ୍ତ ହେବାସହ ଶ୍ରୀମନ୍ଦିରର ସୁରକ୍ଷା ପ୍ରତି ବିପଦ ମଣୁଥିଲେ । ବର୍ଗୀମାନେ ସାଧାରଣତଃ ହନୁମାନ ଭକ୍ତ ଥିବାରୁ ସେମାନଙ୍କୁ ପ୍ରତିହତ କରିବା ନିମିତ୍ତ ପ୍ରବେଶ ପଥରେ ଏହି ହନୁମାନ ବିଗ୍ରହ ପ୍ରତିଷ୍ଠା କରାଯାଇଥିବା ଶୁଣାଯାଏ । ଏହି ହନୁମାନଙ୍କର ଦର୍ଶନ ସାନ୍ନିଧ୍ୟ ଲାଭ କରି ଶ୍ରୀକ୍ଷେତ୍ରକୁ ହନୁମାନ କ୍ଷେତ୍ର ବୋଲି ଭାବି ବର୍ଗୀମାନେ ବିନା ଉପଦ୍ରବରେ ଫେରି ଯାଉଥିଲେ । ବର୍ଗୀମାନଙ୍କ ଦୌରାତ୍ମ୍ୟରୁ ରକ୍ଷା ପାଇବା ନିମିତ୍ତ ସ୍ଥାପିତ ଏହି ମହାବୀରଙ୍କୁ ତେଣୁ ବର୍ଗୀମହାବୀର ନାମରେ ଅଭିହିତ କରାଯାଏ ।

ମଙ୍ଗଳା ଘାଟର ପ୍ରହରୀ ରୂପେ ଏକ କ୍ଷୁଦ୍ର ମନ୍ଦିରରେ ଉଡ଼ନ୍ତା ହନୁମାନ ବିରାଜିତ । ଜନଶ୍ରୁତି ଅନୁସାରେ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀରେ ସଂଘଟିତ ଏକ ଭୟାବହ ବାତ୍ୟା ତଥା ସାମୁଦ୍ରିକ ଝଡ଼ରେ ବଜ୍ରପାତ ହେତୁ ଶ୍ରୀମନ୍ଦିର ଚୂଡ଼ାବସ୍ଥାପିତ ନୀଳଚକ୍ର ବକ୍ର ହୋଇଗଲା । ଅନେକ କୁଶଳୀ କାରିଗରଙ୍କ ସର୍ବବିଧ ପ୍ରୟାସ ସତ୍ତ୍ୱେ ତାହା ସିଧା ହୋଇପାରିଲା ନାହିଁ । ନୀଳଚକ୍ର ବଙ୍କା ହେବା ରାଜା ଓ ରାଜ୍ୟପ୍ରତି ଅଶୁଭଙ୍କର ବୋଲି ଭାବି ଆତଙ୍କିତ ହୋଇ ପଡ଼ିଲେ ଗଜପତି ପ୍ରତାପ ରୁଦ୍ରଦେବ । ଏହି ସମୟରେ ଆଲୋଚ୍ୟ ମଙ୍ଗଳା ଘାଟ ନିକଟରେ ଅବସ୍ଥାନ କରୁଥିବା ଶ୍ରୀସନ୍ଥ ଦାସ ନାମକ ଜନୈକ ଶ୍ରେଷ୍ଠ ହନୁମତ ଭକ୍ତଙ୍କ ପରାମର୍ଶକ୍ରମେ ଠାକୁରରାଜା, ସେବାୟତବର୍ଗ ତଥା ଭକ୍ତମଣ୍ଡଳୀ

ଏକାଗ୍ର ଚିତ୍ତରେ ସମସ୍ତେ ଅଖଣ୍ଡ ପ୍ରଦୀପ ଜାଳି ନୀଳଚକ୍ର ସିଧା କରିଦେବା ପାଇଁ ଶ୍ରୀକ୍ଷେତ୍ର ରକ୍ଷକ ହନୁମାନଙ୍କୁ ପ୍ରାର୍ଥନା କଲେ । ସମସ୍ତଙ୍କ ଆର୍ତ୍ତପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ବୃହଦ୍ କଳେବର ଧାରଣପୂର୍ବକ ଭକ୍ତରାଜ ମହାବୀର ଆବିର୍ଭୂତ ହୋଇ ଅବଲୀଳାକ୍ରମେ ନୀଳଚକ୍ର ସିଧା କରି ଦେଇ ମଙ୍ଗଳାଘାଟ ଅଭିମୁଖେ ଲମ୍ଫ ପ୍ରଦାନ କରି ଅନ୍ତର୍ହିତ ହୋଇଗଲେ । ସେହିଦିନଠାରୁ ଉଡ଼ନ୍ତା ହନୁମାନ ଏଠାରେ ବିରାଜିତ ଥାଇ ପୂଜା ପାଇ ଆସୁଛନ୍ତି । ପୁନଶ୍ଚ ଏହି ସ୍ମୃତିକୁ ସ୍ମରଣୀୟ କରି ରଖିବା ନିମିତ୍ତ ମନ୍ଦିର ଚୂଡ଼ାରୁ ଯେଉଁଠାରୁ ମହାବୀର ଲମ୍ଫ ପ୍ରଦାନ କରିଥିଲେ, ସେଠାରେ ଗଜପତି ପ୍ରତାପରୁଦ୍ର ଦେବ ଏକ ହନୁମାନ ବିଗ୍ରହ ସ୍ଥାପନ କରିବା ପରେ ସେ ମଧ୍ୟ ସର୍ବସାଧାରଣରେ ଉଡ଼ନ୍ତା ମହାବୀର ନାମରେ ଅଭିହିତ ହେଲେ । ଶ୍ରୀମନ୍ଦିରର ସୁରକ୍ଷା ଦାୟିତ୍ୱ ବହନ କରିଥିବା ଏହି ହନୁମାନ ପାଦରେ କଠଉମାଡ଼ି ବାମହସ୍ତରେ ପର୍ବତ ଦକ୍ଷିଣ ହସ୍ତରେ ଗଦାଧାରଣ ପୂର୍ବକ ଉଡ଼ି ଆସୁଥିବା ଭଳି ପ୍ରତୀୟମାନ ହୋଇଥାନ୍ତି । କୂର୍ମବେଢ଼ା ଭିତରେ ସତ୍ୟନାରାୟଣଙ୍କ ମନ୍ଦିର ପାର୍ଶ୍ୱରେ ଦଣ୍ଡାୟମାନ ରହି ଶ୍ରୀମନ୍ଦିର ଦଧିନଉତି ଅଭିମୁଖେ ଦୃଷ୍ଟିନିକ୍ଷେପ କଲେ ଅଁଳାବେଢ଼ା ତଳେ ପୂର୍ବାଭିମୁଖୀ ହୋଇ ବିଦ୍ୟମାନ ଥିବା ଏହି ଉଡ଼ନ୍ତା ହନୁମାନ ଦୃଷ୍ଟି ପଥାରୂଢ଼ ହୋଇଥାନ୍ତି । କୂର୍ମବେଢ଼ାର ଦକ୍ଷିଣଦ୍ୱାର ବହିଃପାର୍ଶ୍ୱରେ ଥିବା ରୋଷରାସ୍ତାର ଦକ୍ଷିଣପଟେ ୫ଫୁଟ ଉଚ୍ଚତା ବିଶିଷ୍ଟ ଦକ୍ଷିଣ ମୁଖା ମହାବୀର ବିଦ୍ୟମାନ, ଏହାଙ୍କୁ କେହି କେହି ଉଡ଼ନ୍ତା ମହାବୀର ନାମରେ ଅଭିହିତ ମଧ୍ୟ କରିଥାନ୍ତି ।

ଇନ୍ଦ୍ରଦ୍ୟୁମ୍ନ ସରୋବର ସନ୍ନିକଟବର୍ତ୍ତୀ ଉତ୍ତରାଭିମୁଖ ଏକ ମନ୍ଦିରରେ ପଞ୍ଚମୁଖୀ ହନୁମାନ ସୀମାରକ୍ଷକ ଭାବେ ବିଦ୍ୟମାନ । ଏହାଙ୍କର କେନ୍ଦ୍ରମୁଖ ମର୍କଟମୁଖ ଓ ପାର୍ଶ୍ୱମୁଖ ଚତୁଷ୍ଟୟ ନରସିଂହ, ବରାହ, ବାମନ ଓ ହନୁଭୈରବ ମୁଖ ହୋଇଥିବାରୁ ଏହାଙ୍କୁ ପଞ୍ଚମୁଖୀ ହନୁମାନ କୁହାଯାଏ । ଖଡ଼୍ଗ, ଚକ୍ର, ପାଶ, ଅଙ୍କୁଶ ଏବଂ ମତ୍ସ୍ୟ ସହିତ ବିବିଧ ଆୟୁଧରେ ଏହି ହନୁମାନଙ୍କର ଦଶଭୁଜ ସୁଶୋଭିତ । ଏହି ହନୁମାନଙ୍କର ବିଶେଷତ୍ୱ ହେଉଛି, ସେ ଦୁଇପାଦରେ ଦୁଇଟି ଅସୁର ଉପରେ ଦଣ୍ଡାୟମାନ । ପୌରାଣିକ ଆଖ୍ୟାୟିକାରୁ ଜଣାଯାଏ ଯେ ହନୁମାନ ପାତାଳପୁରରୁ ମହୀରାବଣ ଓ ଅହିରାବଣ କବଳରୁ ରାମଲକ୍ଷ୍ମଣଙ୍କୁ ଉଦ୍ଧାର କରିଥିଲେ । ସେହି ସ୍ମୃତିରେ ଏହି ହନୁମାନ ଦକ୍ଷିଣପାଦରେ ମହୀରାବଣ ଓ ବାମପାଦରେ ଅହିରାବଣଙ୍କୁ ଚାପ ଧରିଛନ୍ତି । ପୁନଶ୍ଚ ଶ୍ରୀମନ୍ଦିର ବାହାର ବେଢ଼ାରେ ଥିବା ନୀଳାଚଳ ଉପବନ ମଧ୍ୟରେ ନିର୍ମାଲ୍ୟଖଳା ଉପରେ ପ୍ଲଟ ନଂ ୨୫୧ରେ ନିର୍ମିତ ପୂର୍ବାଭିମୁଖୀ ଏକ ମନ୍ଦିରରେ ପାଞ୍ଚଫୁଟ ଉଚ୍ଚତା ବିଶିଷ୍ଟ ଅନ୍ୟ ଏକ ପଞ୍ଚମୁଖୀ ହନୁମାନ ନିର୍ମାଲ୍ୟଖଳା ଓ ନୀଳାଦ୍ରି ବିହାରର ରକ୍ଷକରୂପେ ବିରାଜମାନ ଅଛନ୍ତି । ଏହାଙ୍କର ପୂର୍ବରେ ବାନରମୁଖ, ଦକ୍ଷିଣରେ ନୃସିଂହ, ପଶ୍ଚିମରେ ଗରୁଡ଼ ଉତ୍ତରରେ ବରାହ ଓ ଉର୍ଦ୍ଧ୍ୱରେ ହୟଗ୍ରୀବ ମୁଖ । ଏହାଙ୍କର ଦଶହସ୍ତରେ ଖଡ଼୍ଗ, ତ୍ରିଶୂଳ, ଖଟ୍ୱାଙ୍ଗ, ପାଶ, ଅଙ୍କୁଶ, ମୁଷ୍ଟିବଦ୍ଧ କୌମୁଦିକୀ ଗଦା, ବୃକ୍ଷ, କମଣ୍ଡଳୁ, ଭିନ୍ଦିପାଳ ଓ ଜ୍ଞାନମୁଦ୍ରା ପ୍ରକଟିତ । ଓଡ଼ିଶାରେ ଅନ୍ୟତ୍ର ଏତାଦୃଶ ପଞ୍ଚମୁଖୀ ହନୁମାନ ବିଗ୍ରହ ବିରଳ । ଜଗମୋହନର ପ୍ଲଟ ନଂ ୧୦ (ଚ) ଉପରେ ନିର୍ମିତ ସ୍ତମ୍ଭରେ ପଞ୍ଚମୁଖୀ ହନୁମାନ ବିଦ୍ୟମାନ । ଭୋଗମଣ୍ଡପ ସଂଲଗ୍ନ ଶ୍ରୀକୃଷ୍ଣଚନ୍ଦ୍ର ସୁବୁଦ୍ଧି ସରଘର ବାହାର କାନ୍ଥରେ ପଞ୍ଚମୁଖୀ ହନୁମାନଙ୍କର ଏକ ଭିତ୍ତିଚିତ୍ର ରହିଛି । ସର୍ବୋପରି ସିଂହଦ୍ୱାର ବାମପାର୍ଶ୍ୱସ୍ଥ ଛାଉଣୀ ମଠରେ ମଧ୍ୟ ଏକ ପଞ୍ଚମୁଖୀ ହନୁମାନ ମୂର୍ତ୍ତି ରହିଛି । ଏତଦ୍‌ବ୍ୟତୀତ ହରଚଣ୍ଡୀ ସାହିର ଜନୈକ ବ୍ୟକ୍ତିଙ୍କର ଗୃହକାନ୍ଥରୁ ଶ୍ୱେତମୁଗୁନି ପ୍ରସ୍ତରର ଏକ ପଞ୍ଚମୁଖୀ ହନୁମାନ ବିଗ୍ରହ ଆବିର୍ଭାବ ହୋଇଥିଲେ । ସେହି ଅନୁକୃତିରେ ସମ୍ପ୍ରତି ପୁରୀରେ ଅନୁଷ୍ଠିତ ଗୋଷାଣୀଯାତରେ ସେହି ସାହିରେ ଏକ ବିଶାଳ ପଞ୍ଚମୁଖୀ ମହାବୀରଙ୍କର ମୃଣ୍ମୟ ବିଗ୍ରହ ନିର୍ମାଣ କରାଯାଇ ପୂଜାର୍ଚ୍ଚନା କରାଯାଉଛି ।

ଶ୍ରୀମନ୍ଦିରଠାରୁ ସ୍ୱର୍ଗଦ୍ୱାର ଯିବାବାଟରେ ବାଲିସାହି ରାସ୍ତାରେ ଗଲେ ଉଗ୍ରେସର ଭୈରବଙ୍କଠାରୁ ଅନତି ଦୂରରେ କୁମୁଦ ହନୁମାନ ବିଦ୍ୟମାନ ଅଛନ୍ତି । ପୂର୍ବେ ବାଲିସାହିର ସୀମାନ୍ତରେ ଅବସ୍ଥିତ ଶ୍ମଶାନ/ ମଶାଣି ସନ୍ନିକଟରେ ବିରାଜିତ ଥିବାରୁ ଏହାଙ୍କୁ ମଶାଣି ମହାବୀର କୁହାଯାଏ । ଚାରିଫୁଟ ଉଚ୍ଚତା ତଥା ଏକଚକ୍ଷୁ ବିଶିଷ୍ଟ ଏହି ହନୁମାନ ଗୋଟିଏ ହସ୍ତରେ ଗଦା ଓ ଅପରହସ୍ତରେ ଚକ୍ରଧାରଣ କରିଛନ୍ତି । ଏହାଙ୍କ ସମ୍ବନ୍ଧରେ ଜନଶ୍ରୁତି ରହିଛି ଯେ ଅତୀତରେ ବାଲିସାହିର ଦକ୍ଷିଣ ସୀମାନ୍ତରେ ଥିବା ମଶାଣିରେ ମଶାଣିଚଣ୍ଡୀ ଉଗ୍ରରୂପ ଧାରଣ କରିବାରୁ ତତ୍କାଳରେ ଶ୍ରୀମନ୍ଦିର ନିର୍ମାଣରେ ବହୁ ବିଘ୍ନ ଉପୁଜିଲା । ଶ୍ରୀଜଗନ୍ନାଥଙ୍କ ସେବାନୁରକ୍ତ ମହାବୀରଙ୍କ ମଧ୍ୟରୁ ଏହି କୁମୁଦ ମହାବୀର ମହାପ୍ରଭୁଙ୍କ ଆଦେଶରେ ସ୍ୱୟଂ ମଶାଣିଚଣ୍ଡୀଙ୍କୁ ନିଜ ପାଦତଳେ ଚାପି ରଖିଥିବାରୁ ମନ୍ଦିର ନିର୍ମାଣ କାର୍ଯ୍ୟ ଅନାୟାସରେ ପରିସମାପ୍ତି ଘଟିଲା । ଏହି ମଶାଣି ମହାବୀରଙ୍କ ସ୍ଥିତି ସମୁଦ୍ର ଘୁଞ୍ଚିଯିବାର ବଳିଷ୍ଠ ସାକ୍ଷ୍ୟ ପ୍ରଦାନ କରେ । ବର୍ତ୍ତମାନ ମଶାଣି ମହାବୀର ଓ ସ୍ୱର୍ଗଦ୍ୱାର ମଶାଣି ମଧ୍ୟରେ ବ୍ୟବଧାନ ହେଉଛି ପ୍ରାୟ ଦେଢ଼ କିଲୋମିଟର । ମହାଶ୍ମଶାନର ରକ୍ଷକ ଏହି କୁମୁଦ ହନୁମାନଙ୍କ ପାଦଦେଶରେ ଚଣ୍ଡୀଦେବୀ ବିରାଜିତା ଅଛନ୍ତି । ଏହି ମଶାଣି ହନୁମାନଙ୍କୁ ଅତିକ୍ରମ କଲେ ସ୍ୱର୍ଗଦ୍ୱାରକୁ ଯାଉଥିବା ଶବ କ୍ରମଶଃ ଓଜନିଆ ଲାଗେ ପୁନଶ୍ଚ ଏହିଠାରେ ପହଞ୍ଚିଲା ପରେ ମୃତବ୍ୟକ୍ତିର ମୋକ୍ଷପ୍ରାପ୍ତି ହୋଇଥାଏ ବୋଲି ଲୋକ ବିଶ୍ୱାସ ଅଛି ।

ଶ୍ରୀକ୍ଷେତ୍ରର ରକ୍ଷକ ହିସାବରେ ଜଗନ୍ନାଥ ପୁରୀର ଚତୁର୍ଦ୍ଦିଗର ସୀମାନ୍ତରେ ଥିବା ହନୁମାନଙ୍କ ମଧ୍ୟରେ ପୂର୍ବଦିଗର ରକ୍ଷାକର୍ତ୍ତା ରୂପେ ବିରାଜିତ ଦରିଆ ମହାବୀର ଅନ୍ୟତମ । ପ୍ରଚଳିତ କିମ୍ବଦନ୍ତୀ ଅନୁସାରେ ପୂର୍ବେ ମହୋଦଧିର ଉତ୍ତାଳ ତରଙ୍ଗ ପ୍ରଭାବରେ ଶ୍ରୀକ୍ଷେତ୍ରର ପ୍ରାଚୀନ ବସତି ସବୁ ଜଳମଗ୍ନ ହୋଇଯାଉଥିଲା । ବାରମ୍ବାର ସମୁଦ୍ର ପ୍ଲାବନ ଦ୍ୱାରା କ୍ଷତିଗ୍ରସ୍ତ ହେବାରୁ ଶ୍ରୀକ୍ଷେତ୍ରବାସୀ ଇଷ୍ଟଦେବ ଶ୍ରୀଜଗନ୍ନାଥଙ୍କୁ ପ୍ରାର୍ଥନା କରିବାରୁ ମହାପ୍ରଭୁଙ୍କ ଆଦେଶକ୍ରମେ ବିଶାଳକାୟ ଏକ

ହନୁମାନ ଚକ୍ରତୀର୍ଥର ଅନତିଦୂରରେ ଜାଗ୍ରତ ପ୍ରହରୀ ରୂପେ ଦଣ୍ଡାୟମାନ ରହି ଶ୍ରୀକ୍ଷେତ୍ର ମଧ୍ୟରେ ସମୁଦ୍ରର ଅନୁପ୍ରବେଶକୁ ପ୍ରତିରୋଧ କଲେ । ସମୁଦ୍ର କୂଳରେ ବିରାଜମାନ କରିବା ଫଳରେ ସମୁଦ୍ରର କୂଳଲଙ୍ଘନ ବନ୍ଦ ହେବା ସହିତ ବିଭିନ୍ନ ସାମୁଦ୍ରିକ ବିପତ୍ତିରୁ ଶ୍ରୀକ୍ଷେତ୍ରକୁ ରକ୍ଷା କରୁଥିବାରୁ ଏହାଙ୍କୁ ସ୍ଥାନୀୟ ଲୋକେ 'ଦରିଆ ମହାବୀର' ବୋଲି କହିଥାନ୍ତି । ଶ୍ରୀଜଗନ୍ନାଥଙ୍କ ଆଦେଶ ପାଳନ ପୂର୍ବକ କର୍ତ୍ତବ୍ୟ ସମ୍ପାଦନ କରୁଥିବା ଏହି ଦରିଆ ମହାବୀରଙ୍କୁ ଶ୍ରୀମନ୍ଦିରରୁ ପ୍ରତ୍ୟହ ଅନ୍ନମହାପ୍ରସାଦ ଆଣି ଲାଗି କରାଯାଇଥାଏ । କିନ୍ତୁ ଏକଦା ଶ୍ରୀଜଗନ୍ନାଥଙ୍କ ଅଜ୍ଞାତସାରରେ ବୀରବଜ୍ରଙ୍ଗ ହନୁମାନ ଖୁଆମଣ୍ଡା/ଅମୃତଲଡୁ ଖାଇବାର ଲୋଭ ସମ୍ବରଣ କରିନପାରି ଚକ୍ରତୀର୍ଥ ପରିତ୍ୟାଗ ପୂର୍ବକ ଅଯୋଧ୍ୟା ଚାଲି ଯାଇଥିବା ସୁଯୋଗରେ ସମୁଦ୍ର ପୁନର୍ବାର ଶ୍ରୀକ୍ଷେତ୍ରରେ ଜଳର ପ୍ଳାବନ ସୃଷ୍ଟି କଲା । ଇତ୍ୟବସରେ ଶ୍ରୀଜୀଉଙ୍କ ସ୍ମରଣମାତ୍ରେ ହନୁମାନ ଦକ୍ଷିଣହସ୍ତରେ ଗଦା ଓ ବାମହସ୍ତରେ ଅର୍ଦ୍ଧଭୁକ୍ତ ଖୁଆମଣ୍ଡା ଧରି ଉପସ୍ଥିତ ହୋଇ କହିଲେ, 'ପ୍ରଭୋ ! ଖୁଆମଣ୍ଡା ଲୋଭରେ ଅଯୋଧ୍ୟା ଚାଲି ଯାଇଥିଲି ।' ଏତାଦୃଶ ଭୁଲର ଆଉ ପୁନରାବୃତ୍ତି କରିବି ନାହିଁ ବୋଲି କହି କ୍ଷମାଭିକ୍ଷା କଲେ । ହନୁମାନଙ୍କ ଉପସ୍ଥିତି ସଂଗେସଂଗେ ସମୁଦ୍ର ପୁନଶ୍ଚ ଅପସରି ଗଲା । ତତ୍‌ପରେ ଶ୍ରୀଜଗନ୍ନାଥ : ହନୁମାନଙ୍କୁ ଅମୃତଲଡୁ ପ୍ରଦାନ କରି କହିଲେ, 'କର୍ତ୍ତବ୍ୟରେ ଅବହେଳା ଯୋଗୁଁ ମୁଁ ତୁମକୁ ପ୍ରେମରେ ବନ୍ଧନ କରୁଛି । ମୋର ପ୍ରିୟ ଅଧିଷ୍ଠାନ କ୍ଷେତ୍ରର ସୁରକ୍ଷା ନିମିତ୍ତ ତୁମେ ସର୍ବଦା ଏଠାରେ ଅବସ୍ଥାନ କର ।' ମହାବୀର ହନୁମାନଙ୍କୁ ଶୃଙ୍ଖଳାବଦ୍ଧ କରିବା ସହଜ ନୁହେଁ । ମାତ୍ର ଶୃଙ୍ଖଳର ପ୍ରତ୍ୟେକ ଭାଗରେ ରାମନାମ ଉତ୍କୀର୍ଣ୍ଣ ହୋଇଥିବାରୁ ପ୍ରଭୁ ସେବା ଓ କର୍ତ୍ତବ୍ୟ ପରାୟଣତା ପାଇଁ ପ୍ରସିଦ୍ଧ ଏହି ଅଦ୍ୱିତୀୟ ଚରିତ୍ର ହନୁମାନ ଶୃଙ୍ଖଳକୁ ଛିନ୍ନ କରିବା ପାଇଁ ପ୍ରୟାସ ନକରି ସବୁଦିନ ପାଇଁ ସେଠାରେ ବାନ୍ଧି ହୋଇ ରହିଲେ । ବାମହସ୍ତରେ ଖୁଆମଣ୍ଡା ଓ ଦକ୍ଷିଣହସ୍ତରେ ଗଦାଧାରଣ କରିଥିବା ଏହି ହନୁମାନଙ୍କ ପଦରେ ବେଡ଼ି ଓ ଶରୀର ଲୌହ ଶୃଙ୍ଖଳ ଦ୍ୱାରା ଆବଦ୍ଧ କରାଯାଇଥିବାରୁ ଏହି ଦରିଆ ମହାବୀରଙ୍କୁ ବେଡ଼ି ହନୁମାନ/ଶୃଙ୍ଖଳ ହନୁମାନ ନାମରେ ଅଭିହିତ କରାଯାଇଥାଏ । ଏହି ମହାବୀରଙ୍କ କ୍ଷୁଦ୍ର ମନ୍ଦିରଟି କ୍ରମଶଃ ଜରାଜୀର୍ଣ୍ଣ ହୋଇପଡ଼ିଲା । ଖ୍ରୀଷ୍ଟୀୟ ବିଂଶ ଶତାବ୍ଦୀର ପ୍ରାରମ୍ଭରେ କଲିକତାବାସୀ ବୈରୀନାଥ ବାଜୁରିଆ ତାଙ୍କ ମାତାଙ୍କ ସ୍ମୃତିରେ ଏହି ଜୀର୍ଣ୍ଣ ମନ୍ଦିରକୁ ସଂସ୍କାର କରିବା ସହିତ ଏହାର ସମ୍ମୁଖରେ ନାଟମନ୍ଦିର ନିର୍ମାଣ କଲେ । ପ୍ରତ୍ୟହ ବ୍ରାହ୍ମ ମୁହୂର୍ତ୍ତରୁ ହନୁମାନଙ୍କର କର୍ପୂର ଆଳତି ପରେ ମାଜଣା ସମାପନାନ୍ତେ ଜଗନ୍ନାଥ ବଲ୍ଲଭମଠ ତରଫରୁ ଚକ୍ରନାରାୟଣଙ୍କ ଲାଗି ହୋଇଥିବା ଖୁଆମଣ୍ଡାରୁ ୫ଟି ଆଣି ବେଡ଼ି ହନୁମାନଙ୍କୁ ସମର୍ପଣ କରାଯାଏ । ସନ୍ଧ୍ୟା ଆଳତି ପରେ ଫଳ ଓ କ୍ଷୀର ଭୋଗ ଉତ୍ସର୍ଗ ହେବା ପରେ 'ରାମ ସହସ୍ର ନାମ' ପାଠ କରାଯାଇ ପହଡ଼ ପଡ଼େ । ପ୍ରତି ସଂକ୍ରାନ୍ତିରେ ଏହି ଦରିଆ ମହାବୀରଙ୍କୁ ନାଗାବେଶରେ ସଜ୍ଜିତ କରାଯାଇଥାଏ । ଏହି ହନୁମାନଙ୍କ ଅବସ୍ଥିତି ଯୋଗୁଁ ଚକ୍ରତୀର୍ଥର ମାହାତ୍ମ୍ୟର ସମଧିକ ବୃଦ୍ଧିପ୍ରାପ୍ତ ହୋଇଅଛି ।

ଶ୍ରୀକ୍ଷେତ୍ର ପରିତ୍ୟାଗ ସମୟରେ ତୀର୍ଥଯାତ୍ରାର ସଫଳ ପରିସମାପ୍ତି ହେତୁ ଧର୍ମପ୍ରାଣ ଭକ୍ତ ଶ୍ରୀଜଗନ୍ନାଥ, ଶ୍ରୀକ୍ଷେତ୍ର ସର୍ବୋପରି କ୍ଷେତ୍ର ରକ୍ଷକ ହନୁମାନଙ୍କ ଉଦ୍ଦେଶ୍ୟରେ ଶ୍ରୀଗୁଣ୍ଡିଚାମନ୍ଦିର ବଳୟିତ ପ୍ରାଚୀରରେ ମଥା ଲଗାଇ ମୁଣ୍ଡିଆ ମାରି ଅଠର ନଳା ଅଭିମୁଖେ ଅଗ୍ରସର ହୋଇଥାଏ । ଭକ୍ତ ଜନତା ଯେଉଁଠାରେ ମୁଣ୍ଡିଆ ମାରନ୍ତି ଠିକ୍ ସେହି ସ୍ଥାନରେ ବେଢ଼ାର ଅଭ୍ୟନ୍ତରରେ ନୈଋତ କୋଣରେ ବିଦ୍ୟମାନ ଏକ ହନୁମାନଙ୍କୁ 'ମୁଣ୍ଡିଆ ମରା ମହାବୀର' ନାମରେ ଆଖ୍ୟାୟିତ କରାଯାଇଛି । ଏହାଙ୍କ ସମ୍ବନ୍ଧରେ ଏକ ରମଣୀୟ କିମ୍ବଦନ୍ତୀ ଶାସ୍ତ୍ରୀୟତା ଲାଭ କରିଛି । ଯଥା- ଯେତେବେଳେ ଅଶ୍ୱମେଧୀ ଇନ୍ଦ୍ରଦ୍ୟୁମ୍ନ ଜନ୍ମବେଦୀରୁ ଶ୍ରୀବିଗ୍ରହମାନଙ୍କୁ ମହାଆଡମ୍ବରରେ ଯାତ୍ରା କରାଇ ଶ୍ରୀମନ୍ଦିରର ରତ୍ନବେଦୀରେ ବିଜେ କରାଇବା ପାଇଁ ଉପକ୍ରମ କଲେ ତତ୍କାଳରେ ଏହି ମୁଣ୍ଡିଆମରା ମହାବୀରଙ୍କ ନେତୃତ୍ୱରେ ମହାପ୍ରଭୁଙ୍କର ଆଦିମ ଜନ୍ମସ୍ଥାନ ସେହି ଯଜ୍ଞପୀଠର ସମସ୍ତ ଯଜ୍ଞଭାଷୀଗଣ ପ୍ରଭୁଙ୍କର ନୀଳାଚଳ ଗମନ ଯୋଗୁ ସେବାରୁ ବଞ୍ଚିତ ହେବା ଆଶଙ୍କାରେ ପ୍ରାର୍ଥନା କରିଥିଲେ -

'ଅର୍ଦ୍ଧଶୋଷଣୀଙ୍କୁ ଘେନି ଯଜ୍ଞରକ୍ଷୀ ଗଣ
ମୋହ ସମ୍ମୁଖରେ ହେଲେ ଉଭା ମୁଖ ପୂଣ ।
ମୁଣ୍ଡିଆମରା ନାମରେ ଥିଲେକ ବାନର
ପାଦେ ପଡ଼ି ମୋର କହିଲେକ ମୃଦୁଗୀର ।
ପ୍ରଭୁ ନୀଳାଚଳ ଗଲେ ହୋଇଲୁ ଅନାଥ
ଚରଣ ତବ ସେବନ୍ତି ସଦା ଚଉମାଥ ।
ଆମ୍ଭେ କେସନେ ଦେଖିବୁ ସେ ପାଦପଦ୍ମକୁ
ଭକତବତ୍ସଳ ଉଦ୍ଧାରନ୍ତୁ ଅଧମଙ୍କୁ ।।'

ମହାପ୍ରଭୁଙ୍କ ପାଦେ ପଡ଼ି ମୁଣ୍ଡିଆମାରିଥିବା ପ୍ରୋକ୍ତ ମୁଣ୍ଡିଆମରା ମହାବୀରଙ୍କ ସକରୁଣ ପ୍ରାର୍ଥନା ଶୁଣି ଶ୍ରୀଜଗନ୍ନାଥ ପ୍ରତିଶ୍ରୁତି ଦେଇ

'କହିଲେ ଉତ୍ତର ଆହେ ଯଜ୍ଞଭାଷୀଗଣ
ବରଷକେ ଥରେ ମୁହିଁ ହେବି ଅବଧାନ ।
ତୁମ୍ଭଙ୍କୁ ସକଳେ ସେହି କାଳରେ ପୂଜିବେ
ଯଜ୍ଞ ରୂପରେ ଆମ୍ଭଙ୍କୁ ଆଡ଼ପେ ଦେଖିବେ ।।'

ପ୍ରୋକ୍ତ ଉଦ୍ଧୃତରୁ ସ୍ପଷ୍ଟ ପ୍ରମାଣ ମିଳେ ଯେ ସମ୍ପ୍ରତି ଅନୁଷ୍ଠିତ ଶ୍ରୀଗୁଣ୍ଡିଚା ଯାତ୍ରା ହେଉଛି ସେହି ମୁଣ୍ଡିଆମରା ମହାବୀରଙ୍କ ପ୍ରାର୍ଥନାର ପୁଣ୍ୟ ପରିଣତି । ଶ୍ରୀଜୀଉଙ୍କ ନୀଳାଚଳ ଗମନ ପୂର୍ବରୁ ଆଲୋଚ୍ୟ ମୁଣ୍ଡିଆମରା ମହାବୀର ଯେ ଏଠାରେ ବିରାଜମାନ କରିଛନ୍ତି, ଏହା ନିଃସନ୍ଦେହ । ହନୁମାନ ଉପାସନାକୁ ଲୋକପ୍ରିୟ କରିବା ନିମିତ୍ତ, ଶ୍ରୀଜଗନ୍ନାଥ ଚେତନା ପ୍ରବାହରେ ହନୁମାନ ଉପାସନା ତଥା ମାହାତ୍ମ୍ୟକୁ ମିଶାଇବା ଉଦ୍ଦେଶ୍ୟରେ ଶ୍ରୀକ୍ଷେତ୍ରର ବିଭିନ୍ନ ସ୍ଥାନରେ ପାତାଳି ହନୁମାନ,

ଗୁମାନଦେବ ହନୁମାନ, ଜ୍ଞାନପାପ ହନୁମାନ, ମହାକାନ୍ତାର ହନୁମାନ ସମେତ ଅଗଣିତ ହନୁମାନଙ୍କର ପରିକଳ୍ପନା ଅବଶ୍ୟମ୍ଭାବୀ ମନେହୁଏ ।

ଶ୍ରୀଜଗନ୍ନାଥଙ୍କ ସହ ପ୍ରତ୍ୟକ୍ଷଭାବେ ସମ୍ପର୍କିତ ଶ୍ରୀକ୍ଷେତ୍ର ବାହାରେ ପଶ୍ଚିମ ଦିଗର ଦିଗପାଳ ରୂପେ ଶିରୁଳିଠାରେ ଏକ ପ୍ରକାଣ୍ଡକାୟ ମହାବୀର ଅବସ୍ଥାପିତ ହୋଇଛନ୍ତି । ପ୍ରଥମେ ଶ୍ରୀଜଗନ୍ନାଥଙ୍କ ଆଦେଶରେ ଏହି ମହାବୀର, ଶ୍ରୀମନ୍ଦିର ଅନ୍ତଃପ୍ରାଙ୍ଗଣସ୍ଥିତ ମହାଲକ୍ଷ୍ମୀଙ୍କ ମନ୍ଦିର ରକ୍ଷକ ହିସାବରେ ବିଦ୍ୟମାନ ଥିବାର କିମ୍ବଦନ୍ତୀ ରହିଛି । ମାତ୍ର ଏହି ମହାବୀରଙ୍କର ନିଃଶ୍ୱାସ ପ୍ରଶ୍ୱାସ ପ୍ରସୃତ ଅଣଚାଶ ପବନ ତଥା ପାହାଡ଼ ଭାଙ୍ଗିବା ସଦୃଶ ବଜ୍ର ଘୁଙ୍ଗୁଡ଼ି ଶବ୍ଦରେ ମା'ଲକ୍ଷ୍ମୀଙ୍କ ସୁଖନିଦ୍ରାରେ ବ୍ୟାଘାତ ଜନ୍ମିବାରୁ ମା'ଙ୍କ ଅଭିଯୋଗକ୍ରମେ ଶ୍ରୀଜୀଉଙ୍କ ଆଦେଶରେ ମହାବୀର ଅଢ଼େଇ ପାଦ ପଛକୁ ଘୁଞ୍ଚିଯାଇ ପୁରୀଠାରୁ ୨୭ କି.ମି. ଦୂରବର୍ତ୍ତୀ ଶିରୁଳି ଗ୍ରାମରେ ଶିରୁଳି ମହାବୀର ନାମରେ ଆବିର୍ଭୂତ ହେଲେ । ଏହି ମହାବୀର ଲକ୍ଷ୍ମୀ ମନ୍ଦିରରୁ ସ୍ଥାନାନ୍ତରିତ ହେବା ପରେ ଏହାର ପ୍ରମାଣ ସ୍ୱରୂପ ଲକ୍ଷ୍ମୀ ମନ୍ଦିରର ଜଗମୋହନ କାନ୍ଥରେ ମହାବୀରଙ୍କ ଚିତ୍ର ସ୍ଥାନିତ ହୋଇଛି । ଯେଉଁମାନେ ଶିରୁଳି ଯାଇ ମହାବୀର ଦର୍ଶନ କରିପାରନ୍ତି ନାହିଁ, ସେମାନେ ବିକଳ୍ପରେ ଉକ୍ତ ଚିତ୍ରିତ ମୂର୍ତ୍ତିକୁ ଶିରୁଳି ମହାବୀର ଜ୍ଞାନରେ ଦର୍ଶନ କରିଥାନ୍ତି । ଲକ୍ଷ୍ମୀ ମନ୍ଦିରରୁ ନିର୍ବାସିତ ହେବା ସମୟରେ ପରମ ଭକ୍ତ ଏହି ହନୁମାନ ପ୍ରତ୍ୟହ ଶ୍ରୀଜୀଉ ଦର୍ଶନ ଓ ମହାପ୍ରସାଦ ସେବନ ସୁଯୋଗ ଲାଭ ପାଇଁ ବିନମ୍ର ପ୍ରାର୍ଥନା କରିବାରୁ ଶ୍ରୀଜଗନ୍ନାଥ ଅଭୟ ଦେଇ କହିଲେ ତୁମେ ଶ୍ରୀମନ୍ଦିର ଶୀର୍ଷ ଦେଶର ଦଧିନଉତିରେ ଅଙ୍କିତ ରାମାନନ୍ଦୀ ତିଳକ ଦର୍ଶନ ମାଧମରେ ମୋର ଦର୍ଶନ ସାନ୍ନିଧ ଲାଭ କରିବା ସହିତ ପ୍ରତ୍ୟହ ତୁମ ପାଖକୁ କୁଡୁଆଏ ମହାପ୍ରସାଦ ଶ୍ରୀମନ୍ଦିରରୁ ପଠାଯିବ । ଭିନ୍ନ ଏକ ଜନଶ୍ରୁତିରୁ ଶୁଣାଯାଏ ଯେ ଉକ୍ତ ମହାବୀରଙ୍କ ଗୋଡ଼ ଶିଉଳିରେ ଅଢ଼େଇ ପାହୁଣ୍ଡ ଖସିଯାଇ ରତ୍ନଚିରା ନଦୀକୂଳରେ ଯେଉଁଠାରେ ଲାଗିଲା, ସେଠାରେ ସେ 'ଶିଉଳି ମହାବୀର ନାମରେ ଆଖ୍ୟାୟିତ ହେଲେ । ଅବଶ୍ୟ ଏହି ମହାବୀରଙ୍କ ଦେହସାରା ସର୍ବଦା ଶିଉଳି ପରିପୂର୍ଣ୍ଣ ଥାଏ । ପ୍ରତିଦିନ ରାଶିତେଲ ଓ ଚୁଆ ଲେପନ କରାଯାଇ ସ୍ନାନ କରାଇବା ଫଳରେ ପାଣି ଜମିରହି କ୍ରମଶଃ ତାହା ଶିଉଳିରେ ପରିଣତ ହୋଇଥାଏ । ପ୍ରତିବର୍ଷ ପଣାସଂକ୍ରାନ୍ତି ପୂର୍ବରୁ ଶିଉଳି ସବୁକୁ ଛଡ଼ାଇ ସଫା କରାଯାଏ । ଏହି ଶିଉଳି ମହାବୀରଙ୍କ ନାମ ପରବର୍ତ୍ତୀ ସମୟରେ ଶିରୁଳି ମହାବୀର ଓ ସନ୍ନିକଟବର୍ତ୍ତୀ ଗ୍ରାମ ଶିରୁଳି ନାମରେ ପରିଚିତ ହେଲା । ସର୍ବୋପରି ଏହି ପ୍ରଚଣ୍ଡ ପ୍ରାଣସ୍ପନ୍ଦନଯୁକ୍ତ ସଜୀବ ସ୍ୱୟମ୍ଭୂ ମୂର୍ତ୍ତି ସ୍ୱୟଂ ପୃଥିବୀ ବିଦୀର୍ଣ୍ଣ କରି ଆବିର୍ଭୂତ ହୋଇଛନ୍ତି ବୋଲି ଲୋକ ମୁଖରୁ ଶୁଣାଯାଏ ।

ସନ୍ ୧୨୩୫ ଖ୍ରୀଷ୍ଟାବ୍ଦରେ ଅନଙ୍ଗ ଭୀମ ଦେବ (ଦ୍ୱିତୀୟ)ଙ୍କ ଦ୍ୱାରା ନିର୍ମିତ ୬୦ ହାତ ଉଚ୍ଚତା ବିଶିଷ୍ଟ ଦକ୍ଷିଣାଭିମୁଖୀ ଏକ ଭବ୍ୟ ମନ୍ଦିରରେ ବିରାଜମାନ ପୂର୍ବକ ଭକ୍ତଗଣଙ୍କୁ ଦର୍ଶନ ଦେଇ ଆସୁଛନ୍ତି ଶିରୁଳି ମହାବୀର । ଖଣ୍ଡେ ମାତ୍ର କୃଷ୍ଣ ମୁଗୁନି ପ୍ରସ୍ତରରେ ନିର୍ମିତ ଏହି ବିଶାଳକାୟ ମହାବୀରଙ୍କ ଉଚ୍ଚତା ୯ ହାତ ଓ ପ୍ରସାର ୫ ହାତ ହୋଇଥିବାରୁ ଏହାଙ୍କୁ ନବପଞ୍ଚକ ମୂର୍ତ୍ତି ଭାବରେ ଅଭିହିତ କରାଯାଇଥାଏ । ଏହି ବୃହତ୍ ବପୁସମ୍ପନ୍ନ ମହାବୀରଙ୍କ ଉଭୟ ହସ୍ତ ମଧ୍ୟରେ ବ୍ୟବଧାନ ହେଉଛି ପ୍ରାୟ ୮ ଫୁଟ । ରାମାୟଣ ବର୍ଣ୍ଣନାନୁଯାୟୀ ରାବଣର ପୁତ୍ର ଅକ୍ଷୟକୁମାର ହସ୍ତରୁ ହନୁମାନ ଶକ୍ତି ପ୍ରୟୋଗ ପୂର୍ବକ କଟାରି ଛଡ଼ାଇ ଆଣି ମଧୁବନରେ ତାକୁ ସେହି କଟାରିରେ ହତ୍ୟା କରିଥିବାରୁ, ତାହାର ସ୍ମାରକୀ ସ୍ୱରୂପ ମହାବୀର ବାମହସ୍ତରେ ଯେଉଁ କଟାରି ଧାରଣ କରିଛନ୍ତି, ତାହା ଅକ୍ଷୟ କଟାରି । ଏତଦ୍‌ବ୍ୟତୀତ ମହାବୀର ତାଙ୍କ ଦକ୍ଷିଣ ହସ୍ତରେ ଗନ୍ଧମାର୍ଦ୍ଦନ ପର୍ବତ ଉତ୍ତୋଳନ କରି ରଖିଛନ୍ତି । ଏହି ମହାବୀର ତାଙ୍କ ମସ୍ତକରେ ଏକାଦଶ ରୁଦ୍ରଙ୍କ ପ୍ରତୀକ ଶିବଲିଙ୍ଗ ଓ ସର୍ପଧାରଣ କରିଥିବା ସ୍ଥଳେ ତାଙ୍କ ଦକ୍ଷିଣପାର୍ଶ୍ୱ ଲଲାଟରେ ଭରତ ମାରିଥିବା ବାଟୁଳି ଚିହ୍ନ ଦେଖିବାକୁ ମିଳେ । ଏହି ମହାବୀରଙ୍କ କର୍ଣ୍ଣରେ ବୃହଦାକାର କୁଣ୍ଡଳ ଓ ଗଳାରେ କାରୁକାର୍ଯ୍ୟପୂର୍ଣ୍ଣ ବୈଜୟନ୍ତମାଳା ପ୍ରଲମ୍ବିତ । ବୁକୁଚିରା ହୃଦୟ ଦେଶରେ ରାମସୀତା ଯୁଗଳ ମୂର୍ତ୍ତି ବିରାଜମାନ । ଏହି ମହାବୀର ପରିଧାନ କରିଥିବା ବଜ୍ରକାଛେଣିରେ ଦୁଇ ଜଙ୍ଘରେ ଦୁଇଟି କଟାଦାଗ ଦେଖାଯାଏ । ଏହାଙ୍କର ଦକ୍ଷିଣ ଜଙ୍ଘରେ ସୀତା ଅନ୍ୱେଷଣ କାଳୀନ ରାମଚନ୍ଦ୍ର କର୍ତ୍ତୃକ ପ୍ରଦତ୍ତ ରତ୍ନମୁଦ୍ରିକାର ଅଭିଜ୍ଞାନ ଓ ବାମଜଙ୍ଘରେ ସୀତାଠାବ ଜନିତ ପ୍ରମାଣ ସ୍ୱରୂପ ମା' ସୀତାଙ୍କ ପ୍ରେରିତ ମଥାମଣିର ପ୍ରତିକୃତି । ଦୁଇ ଜଙ୍ଘରେ ଦୁଇ ଭୂଷଣାକୃତି ଅଙ୍କିତ ହୋଇଥିବାରୁ ଉକ୍ତ ହନୁମାନ ଯେ 'ଶ୍ରୀରାମଦୂତ ଅତୁଳିତ ବଳ ଧାମା' ଅର୍ଥାତ୍ ତପୋନିଷ୍ଠ-ସାଧକ ଶ୍ରେଷ୍ଠ ଏହି ହନୁମାନଙ୍କର ପ୍ରଭୁଭକ୍ତି ଓ ରାମପ୍ରୀତି ଅତୁଳନୀୟ । ଏହି ମହାବିକ୍ରମଶାଳୀ ମହାବୀର ତାଙ୍କର ପାଦତଳେ ମୃତ୍ୟୁସୁରକୁ ଚାପି ଧରିଛନ୍ତି । ତଥାପି କଳାମୁଗୁନି ପ୍ରସ୍ତର ନିର୍ମିତ ଏହି ମହାବୀର ବିଗ୍ରହରେ କେତେକ ବିଲକ୍ଷଣ ପରିଦୃଷ୍ଟ ହୋଇଥାଏ । ଏହାଙ୍କର ପ୍ରକୃତ ମୁଖମଣ୍ଡଳଟି ଅପେକ୍ଷାକୃତ କ୍ଷୁଦ୍ର ଏବଂ ଅତିବିକଟାଳ । ସେଥିପାଇଁ ସେବକଗଣ ରାଶିତେଲ, ଝୁଣା ଓ ଗୋଗୁଳର ପ୍ରଲେପ ଦ୍ୱାରା ପ୍ରକୃତ ମୁଖ ଆଚ୍ଛାଦନ ପୂର୍ବକ ଯଥାସମ୍ଭବ କମନୀୟତା ବୃଦ୍ଧି କରୁଛନ୍ତି । ପୁନଶ୍ଚ ଏହାଙ୍କ ମୁଖମଣ୍ଡଳ ଟିକିଏ ବକ୍ର, ତେଣୁ ନେତ୍ର ଯୁଗଳ ସମାନ୍ତରାଳ ଭାବେ ନରହି କିଞ୍ଚିତ ତଳ ଉପର ହୋଇ ରହିଛି ଏବଂ ଏହାଙ୍କର ଚକ୍ଷୁଦ୍ୱୟ ଉଭୟପାର୍ଶ୍ୱକୁ ଅତିମାତ୍ରାରେ ବିସ୍ତାରିତ ହୋଇଥିବା ସ୍ପଷ୍ଟ ବାରି ହୋଇପଡ଼େ । ମନ୍ଦିରର ଦକ୍ଷିଣ କାନ୍ଥରେ ଥିବା ଏକ କ୍ଷୁଦ୍ର ବାତାୟନ ପଥ ଦେଇ ମହାବୀର ଶ୍ରୀଜୀଉଙ୍କୁ ମାଗିଥିବା ବର ଅନୁଯାୟୀ ତାଙ୍କର ବାମଚକ୍ଷୁ ସର୍ବଦାନ ନୀଳଚକ୍ର ତଳ ଦଧିନଉତି ଉପରେ ଚିତ୍ରିତ ରାମାନନ୍ଦୀ ଚିତା ଉପରେ କେନ୍ଦ୍ରୀଭୂତ ହୋଇଥିବା ସ୍ଥଳେ ଦକ୍ଷିଣ ନେତ୍ର ବିଭୀଷଣ ଶାସିତ ଲଙ୍କା ଉପରେ ନିବଦ୍ଧ ରହିଛି । ପୁନଶ୍ଚ ଏହି ବିଗ୍ରହଙ୍କର ଲାଞ୍ଜ ଭୂମି ତଳେ ତଳେ ଲମ୍ବିଯାଇ ପାଞ୍ଚ କି.ମି. ଦୂରସ୍ଥ କାଣ୍ଡଗୋଦାଠାରେ ବାହାରି ପୂଜା ପାଉଥିବା ଜଣାଯାଏ । ତଥାପି ଏ ଦୀର୍ଘକାୟ ମୂର୍ତ୍ତି ଦର୍ଶନରେ ଭକ୍ତ

ବିମୁଗ୍ଧ ହେବା ସହିତ ବିସ୍ଫାରିତ ନେତ୍ର ଦେଖିବାମାତ୍ରେ ସତେ ଯେପରିକି ସଙ୍କଟ ସବୁ ଭୟରେ ପଳାୟନ କରେ । ନିର୍ଜନ ଖରାବେଳେ ଏବଂ ନିଶବ୍ଦ ରାତ୍ରିରେ ଏହି ମନ୍ଦିର ମଧ୍ୟରୁ ଘୁଙ୍ଗୁଡ଼ି ଶବ୍ଦ ଶୁଣାଯିବାର ଲୋକେ କହିଥାନ୍ତି । ଓଡ଼ିଶାରେ ଯେତେଗୁଡ଼ିଏ ହନୁମାନ ମନ୍ଦିର ବିଦ୍ୟମାନ ତନ୍ମଧ୍ୟରେ ଶିରୁଳି ମହାବୀର ଅତ୍ୟନ୍ତ ପ୍ରସିଦ୍ଧ । ଶ୍ରୀଜୀଉଙ୍କ ପ୍ରତିଶ୍ରୁତି ଅନୁସାରେ ପୂର୍ବେ ସେବକମାନେ ଶ୍ରୀମନ୍ଦିରରୁ ଲଡୁ ଓ ଅନ୍ନ ମହାପ୍ରସାଦ ଆଣି ମହାବୀରଙ୍କୁ ଲାଗି କରିବାର ବ୍ୟବସ୍ଥା ଥିଲା । ପରବର୍ତ୍ତୀ କାଳରେ ଏକ ମଠଦ୍ୱାରା ଏହା ଯୋଗାଇ ଦିଆଯାଉଥିଲା, ମାତ୍ର ସମ୍ପ୍ରତି ଦେବୋତ୍ତର ବିଭାଗ କେବଳ ଲଡୁ ମହାପ୍ରସାଦ ଯୋଗାଇ ଆସୁଛନ୍ତି । ଭକ୍ତଗଣ କେହି କେବେ ପୁରୀରୁ ଶିରୁଳି ଯିବାବେଳେ କିଛି କିଛି ମହାପ୍ରସାଦ ନେଇ ମହାବୀରଙ୍କୁ ଲାଗି କରିଥାନ୍ତି । ଏତଦ୍‌ବ୍ୟତୀତ ଠାକୁରଙ୍କୁ ଦୈନନ୍ଦିନ ଲାଗି ହେବା ପାଇଁ କିଛି ଶୁଖିଲି ମହାପ୍ରସାଦ ଗଚ୍ଛିତ ରଖାଯାଇଥାଏ । ଏହି ହନୁମାନଙ୍କୁ ନିୟମିତ ବଲ୍ଲଭ ଉଖୁଡ଼ା, ଅନ୍ନ, ଡାଲମା, ଏଣ୍ଡୁରିପିଠା, ମାଣ୍ଡୁଅ, ପଇଡ଼ ପ୍ରଭୃତି ଭୋଗ ଲାଗିଥାଏ । ବିଶେଷତଃ ଭକ୍ତଗଣ ମାନସିକ କରି ପ୍ରତ୍ୟହ ମହାବୀରଙ୍କୁ ଚୁଡ଼ାଘସା ଓ ପାଚିଲା କଦଳୀ ଭୋଗ ଦେଇଥାନ୍ତି । ପ୍ରତିବର୍ଷ ଦଶହରା, ଦୋଳପୂର୍ଣ୍ଣମୀ ଓ ମହାବିଷୁବ ସଂକ୍ରାନ୍ତିରେ ଶିରୁଳି ମହାବୀରଙ୍କୁ ସୁନାବେଶ କରାଯାଉଥିବା ସ୍ଥଳେ ରାମନବମୀରେ ନାଗାବେଶରେ ଭୂଷିତ କରାଯାଇଥାଏ । ରାମନବମୀଠାରୁ ସାତଦିନ ବ୍ୟାପୀ ଏଠାରେ ରାମଚରିତ୍ର ମାନସ ପାରାୟଣ କରାଯାଇଥାଏ । ସର୍ବୋପରି ଶିରୁଳି ମହାବୀରଙ୍କଠାରେ ପ୍ରତିବର୍ଷ ପଣାସଂକ୍ରାନ୍ତିଠାରୁ ପ୍ରାୟ ଏକମାସ ପର୍ଯ୍ୟନ୍ତ ଜନ୍ମଯାତ୍ରା ବହୁ ଜନସମାବେଶରେ ଅନୁଷ୍ଠିତ ହୋଇଥାଏ, ଯାହାକୁ ସ୍ଥାନୀୟ ଲୋକେ ଶିରୁଳି ମେଳା କହିଥାନ୍ତି ।

ଶ୍ରୀକ୍ଷେତ୍ର ସଂସ୍କୃତିରେ ଶ୍ରୀଜଗନ୍ନାଥ ଓ ଶ୍ରୀରାମଙ୍କ ଅଭେଦତ୍ୱ ତଥା ଅଭିନ୍ନଭାବ ଯୁଗେ ଯୁଗେ ଭକ୍ତମନକୁ ଆଧ୍ୟାତ୍ମିକ ଚେତନାରେ ଉଦ୍‌ବୁଦ୍ଧ କରିଆସିଛି । ଶ୍ରୀମନ୍ଦିରରେ ହନୁମାନ ସଂପୃକ୍ତିଥିବା ପର୍ବନୀତି ସମ୍ବନ୍ଧରେ ଅନୁଧ୍ୟାନ କଲେ ଜଣାଯାଏ ଯେ ପୌଷ ପୂର୍ଣ୍ଣିମାରେ ରାଜାଧିରାଜ ଶ୍ରୀଜଗନ୍ନାଥଙ୍କର ଘୃତାଭିଷେକ ସମାପନାନ୍ତେ ଅଯୋଧ୍ୟାଧିପତି ଶ୍ରୀରାମଚନ୍ଦ୍ର ରୂପେ ପ୍ରତିଭାତ ହୋଇଥାନ୍ତି । ମା' ଲକ୍ଷ୍ମୀ ସୀତା ରୂପେ ରତ୍ନସିଂହାସନ ମଣ୍ଡନ କରିବା ସହିତ ଭିତରଛ ମହାପାତ୍ର ମହାପ୍ରଭୁଙ୍କ ବାଡ଼ରେ ଦଣ୍ଡାୟମାନ ଥାଇ ଲକ୍ଷ୍ମଣ ରୂପେ ଶ୍ୱେତ ଛତ୍ର ଧାରଣ କରନ୍ତି ଓ ପାଳିଆ ମେକାପ ହନୁମାନ ରୂପେ ସେବାକାର୍ଯ୍ୟ ନିର୍ବାହ କରିଥାନ୍ତି । ଗୁରୁବାର ଏକାଦଶୀ ପଡ଼ିଲେ ଶ୍ରୀମନ୍ଦିରରେ ଦଣ୍ଡଛତ୍ର ନୀତି ପାଳନ କରାଯାଏ । ଏଥିରେ ମଧ୍ୟ ଶ୍ରୀରାମଙ୍କ ପଟ୍ଟାଭିଷେକରେ ହନୁମାନ ସେବା କରିବା ସଦୃଶ ପାଳିଆ ସେବକ ବୀରାସନରେ ବସି ଦଣ୍ଡଛତ୍ରର ପାଦପୀଠକୁ ହସ୍ତରେ ଧାରଣ କରନ୍ତି । ରାମନବମୀଠାରୁ ସାତଦିନ ପର୍ଯ୍ୟନ୍ତ ରାମ, ଲକ୍ଷ୍ମଣ, ସୀତା ଓ ହନୁମାନଙ୍କ ଅର୍ଚ୍ଚା ପ୍ରତିମା ପ୍ରତ୍ୟହ ଦକ୍ଷିଣଘରୁ ରତ୍ନସିଂହାସନକୁ ବିଜେ କରିବା ପରେ ଆଜ୍ଞାମାଳ ନେଇ ବିମାନରେ ନନ୍ଦିଗ୍ରାମ ଜଗନ୍ନାଥ ବଲ୍ଲଭ ମଠକୁ ଯାତ୍ରା କରନ୍ତି । ସେଠାରେ ବଡ଼ ମହାବୀରଙ୍କୁ ଶ୍ରୀଜୀଉଙ୍କର ଆଜ୍ଞାମାଳ ଲାଗି କରାଯାଏ । ସାତଦିନ ପର୍ଯ୍ୟନ୍ତ ରାମାୟଣର ବିଭିନ୍ନ ପ୍ରକରଣ କ୍ରମାନ୍ୱୟରେ ଶ୍ରୀକ୍ଷେତ୍ରର ସାହିମାନଙ୍କରେ ଅଭିନୀତ ହୋଇଥାଏ, ଯାହାକୁ ସାହିଯାତ୍ରା କୁହାଯାଏ । ସାହିଯାତ୍ରାରେ ହନୁମାନ ବେଶରେ ବଳିଷ୍ଠ ପୁରୁଷ ବହୁ ଲୋମହର୍ଷଣକାରୀ ଖେଳକୌଶଳ ପ୍ରଦର୍ଶନ କରିଥାନ୍ତି । ଦୋଳମଣ୍ଡପ ସାହିର ଜହ୍ନିମୁଣ୍ଡିଆ ଆଖଡ଼ା ତରଫରୁ ଲଙ୍କା ଦହନ ପ୍ରସ୍ତାବ ବେଶ ଉପଭୋଗ୍ୟ ହୋଇଥାଏ ।

ପୁରାଣ ପୃଷ୍ଠାରେ ମହାବୀର ହନୁମାନଙ୍କ ଜନ୍ମ ସମ୍ବନ୍ଧୀୟ ସ୍ଥାନିତ ଉପାଖ୍ୟାନମାନଙ୍କ ମଧ୍ୟରେ ଯେଉଁ ତିନିଗୋଟି ପ୍ରମୁଖ ରୂପେ ଉଲ୍ଲେଖଯୋଗ୍ୟ ତାହା ହେଉଛି ଶିବାବତାର ମହାଦେବଙ୍କଠାରୁ ଅବତୀର୍ଣ୍ଣ ହେତୁ ସେ ଶଙ୍କରତନୟ, ପବନଙ୍କର ଜନ୍ମସାର୍ଥକକାରୀ ପ୍ରେମିକାର ପୁତ୍ର ହେତୁ ସେ ପବନସୁତ ଏବଂ କେଶରୀ ବାନରଦ୍ୱାରା ଲାଳନପାଳନ ଯୋଗୁଁ ସେ କେଶରୀ ନନ୍ଦନ ନାମରେ ସର୍ବଜନବିଦିତ । ସଂକ୍ଷେପତଃ ଈଶ୍ୱରବୀର୍ଯ୍ୟ, ପବନପ୍ରେମ ଓ କେଶରୀ ପରିପାଳନରୁ ଏହି ମହାକପି ହନୁମାନଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ବିକଶିତ ହୋଇଥିଲା । ଆନନ୍ଦ ରାମାୟଣ ବର୍ଣ୍ଣନାନୁଯାୟୀ ଚୈତ୍ର ପୂର୍ଣ୍ଣିମାଦିନ ମଙ୍ଗଳ ବେଳାରେ ଯଜ୍ଞୋପବୀତ ଧାରଣ ପୂର୍ବକ ଶ୍ରୀହନୁମାନ ଜନ୍ମ ନେଇଥିବାରୁ ଏହି ଦିନ ଭାରତବର୍ଷରେ ସର୍ବତ୍ର ହନୁମାନ ଜୟନ୍ତୀ ପାଳନ କରାଯାଇଥାଏ । ବାୟୁପୁରାଣରେ 'ଆଶ୍ୱିନସ୍ୟାସିତେ ପକ୍ଷେ ସ୍ୱାତ୍ୟାଂ ଭୌମେ ଚ ମାରୁତି, ମେଷ ଲଗ୍ନେ ଅଞ୍ଜନା ଗର୍ଭତ ସ୍ୱୟଂ ଜାତ ହର ଶିବଃ' - ଅର୍ଥାତ୍ ଆଶ୍ୱିନ କୃଷ୍ଣ ଚତୁର୍ଦ୍ଦଶୀ ତିଥି ସ୍ୱାତୀନକ୍ଷତ୍ର ଯୁକ୍ତ ମେଷ ଲଗ୍ନରେ ମାତା ଅଞ୍ଜନାଙ୍କ ଗର୍ଭରୁ ସ୍ୱୟଂ ଭଗବାନ ଶିବ ହନୁମାନ ସ୍ୱରୂପରେ ପ୍ରକଟ ହୋଇଥିବାରୁ ଅନେକତ୍ର ଏହି ପୁଣ୍ୟ ତିଥିରେ ମଧ୍ୟ ହନୁମାନ ଜୟନ୍ତୀ ପାଳନ କରାଯାଇଥାଏ । ମାତ୍ର ମହାବଳୀ ହନୁମାନ ମହାବିଷୁବ ସଂକ୍ରାନ୍ତିଦିନ ମାତା ଅଞ୍ଜନାଙ୍କ ଗର୍ଭରୁ ବଜ୍ରକାଛା ପରିଧାନ ପୂର୍ବକ ମହେନ୍ଦ୍ରାଚଳରେ ଜନ୍ମ ଗ୍ରହଣ କରିଥିବା ଘଟଣା ଉତ୍କଳୀୟ ଜନମାସନରେ ସ୍ୱୀକୃତିଲାଭ କରିଅଛି । କଥିତ ଅଛି, ମହାବିଷୁବ ସଂକ୍ରାନ୍ତିଠାରୁ ବାୟୁପ୍ରବାହ ଅଧିକ ହେବା ସହିତ ସୂର୍ଯ୍ୟ ତାପ ବୃଦ୍ଧିପ୍ରାପ୍ତ ହୋଇଥାଏ । ପବନସୁତ ହନୁମାନ ସୂର୍ଯ୍ୟ ଦେବତାଙ୍କୁ କରାୟତ କରିବାରେ ସକ୍ଷମ ହୋଇଥିବାରୁ ବାୟୁ ତଥା ଉତାପରୁ ରକ୍ଷା ପାଇବା ନିମିତ୍ତ ଓଡ଼ିଶାରେ ସର୍ବତ୍ର ବର୍ଷାରମ୍ଭର ପ୍ରଥମ ଦିବସ ଏହି ପଣାସଂକ୍ରାନ୍ତିରେ ହନୁମାନଙ୍କ ଜନ୍ମୋତ୍ସବ ସମସ୍ତ ମହାବୀର ମନ୍ଦିରରେ ମହାସମାରୋହରେ ଅନୁଷ୍ଠିତ ହୋଇଥାଏ । ଏହି ପବିତ୍ର ଦିବସରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସକାଳଧୂପ ସମାପନାନ୍ତେ ଶ୍ରୀଜୀଉଙ୍କ ଆଜ୍ଞାମାଳ ନେଇ ଦକ୍ଷିଣଘରେ ଅବସ୍ଥାପିତ ହନୁମାନଙ୍କ ଚଳନ୍ତି ପ୍ରତିମା ଅଷ୍ଟରତ୍ନ ମହାବୀରଙ୍କୁ ଝୁଲଣ ମଣ୍ଡପ ତଳେ ଥିବା ସୁସଜ୍ଜିତ ବିମାନରେ ବିଜେ କରାଇ ଘଣ୍ଟ-ଛତ୍ର-କାହାଳୀ ସହ ମେଘନାଦ ପ୍ରାଚୀର ସଂଲଗ୍ନ

ଚାରିମୁଖ୍ୟ ଦ୍ୱାର ପ୍ରଦକ୍ଷିଣକରି ସେଠାରେ ବିରାଜିତ ଚାରି ମହାବୀରଙ୍କୁ ଶ୍ରୀଜୀଉଙ୍କ ଆଜ୍ଞାମାଳ ପଣ୍ଡାସେବକ ଲାଗି କରାଇବା ପରେ ବାରଭାଇ ହନୁମାନଙ୍କୁ ମଧ୍ୟ ଲାଗି କରାଇଥାନ୍ତି । ତତ୍ପରେ ବିମାନବଡୁ ଅର୍ଚ୍ଚା ମହାବୀରଙ୍କୁ ପଟୁଆରରେ ନେଇ ଜଗନ୍ନାଥ ବଲ୍ଲଭ ଉଦ୍ୟାନରେ ବିଜେ କରାଇବା ପରେ ସେଠାରେ ବଡ଼ ମହାବୀର (ସୁଗ୍ରୀବ), ଗୁମ୍ଫା ମହାବୀର ଓ ଗୁଆବାଡ଼ି ମହାବୀରଙ୍କୁ ଆଜ୍ଞାମାଳ ଦେବାପରେ ଘଣ୍ଟ-ଛତା-କାହାଳୀ ସହ ପଟୁଆରରେ ଯାଇ ସମୁଦ୍ରତଟରେ ଦରିଆମହାବୀରଙ୍କୁ ଆଜ୍ଞାମାଳ ଦେଇଥାନ୍ତି । ସେଠାରେ ହନୁମାନଙ୍କ ବନ୍ଦାପନା ପରେ ଚଳନ୍ତି ପ୍ରତିମା ହନୁମାନଙ୍କୁ ବାହୁଡ଼ାବିଜେ କରାଇ ବ୍ରହ୍ମାଜାଗା ମହାବୀର ଓ ବଳଭଦ୍ର ବଲ୍ଲଭ ମହାବୀରଙ୍କୁ ଆଜ୍ଞାମାଳ ଦେବା ପରେ ପୁନର୍ବାର ଜଗନ୍ନାଥ ବଲ୍ଲଭ ମଠ ଉଦ୍ୟାନକୁ ପ୍ରତ୍ୟାବର୍ତ୍ତନ କରାଇ ସେଠାରେ ବିଶେଷ ଉତ୍ସବାନୁଷ୍ଠାନ ମାଧ୍ୟମରେ ଅଷ୍ଟରତ୍ନ ମହାବୀରଙ୍କୁ ପନ୍ତିଭୋଗ ଓ ବନ୍ଦାପନା କରାଯିବା ପରେ ତାଙ୍କୁ ଆଣି ଦକ୍ଷିଣଘରେ ଅବସ୍ଥାପିତ କରାଯାଇଥାଏ । ଏତଦ୍‌ବ୍ୟତୀତ ପଣା ସଂକ୍ରାନ୍ତିଦିନ ହନୁମାନ ଜୟନ୍ତୀ ଅବସରରେ ଶ୍ରୀକ୍ଷେତ୍ର ଜାତୀୟ ବ୍ୟାୟାମ କ୍ରୀଡ଼ା ପରିଷଦ ତଥା ବିଭିନ୍ନ ଜାଗା, ଆଖଡ଼ା, ପଞ୍ଚାୟତ ଓ ଅନ୍ୟାନ୍ୟ ଅନୁଷ୍ଠାନମାନଙ୍କରେ ବିଦ୍ୟମାନ ଥିବା ମହାବୀରମାନଙ୍କୁ ନିଷ୍ଠାର ସହିତ ସଭକ୍ତି ପୂଜାର୍ଚ୍ଚନା କରାଯାଇଥାଏ । ମଲ୍ଲମାନେ ଉକ୍ତ ଦିବସରେ ପବିତ୍ର ଶରୀରରେ ମହାବୀରମାନଙ୍କୁ ଚୂଡ଼ାଘଷା ଓ ଭାଙ୍ଗପଣାଦି ସମର୍ପଣ ପୂର୍ବକ ବଳପ୍ରାପ୍ତି ନିମିତ୍ତ ଶରଣାପନ୍ନ ହୋଇ ମଲ୍ଲ ବିଦ୍ୟାରମ୍ଭ ଅଭ୍ୟାସ କରିଥାନ୍ତି । ଏହି ସମୟରେ ପୁରୀ ତଥା ପାର୍ଶ୍ୱବର୍ତ୍ତୀ ଗାଁର ଯୁବକମାନେ ଶିରୁଳି ମହାବୀରଙ୍କୁ କାଛା ଲାଗିପରେ ତାହାକୁ ପରିଧାନ ପୂର୍ବକ କୁସ୍ତି କସରତ ଶିକ୍ଷା ଅଭ୍ୟାସ କରିଥାନ୍ତି । ରାତ୍ରିରେ ଶ୍ରୀକ୍ଷେତ୍ରରେ ବିଭିନ୍ନ ମହାବୀରଙ୍କୁ ନାଗାବେଶରେ ସୁସଜ୍ଜିତ କରାଯାଇଥାଏ । ତନ୍ମଧ୍ୟରେ ଦକ୍ଷିଣ ଦ୍ୱାରରେ ଦଣ୍ଡାୟମାନ ବୃହତ୍ତମ ବିଗ୍ରହ କାନପାତା ହନୁମାନଙ୍କ ନାଗାବେଶ ସର୍ବୋତ୍କୃଷ୍ଟ ଓ ଆକର୍ଷଣୀୟ ହୋଇଥାଏ । ଏହିଦିନ ବିଭିନ୍ନ ହନୁମାନ ମନ୍ଦିରରେ ମହାବୀର ଭକ୍ତଗଣ ତୁଳସୀ ରାମାୟଣ, ରାମଚରିତ ମାନସ, ହନୁମନ୍ତ ସହସ୍ରନାମ ଓ ହନୁମାନ ଚାଳିଶା ପ୍ରଭୃତି ପାଠ କରିବା ଫଳରେ ହନୁମାନ ଜୟନ୍ତୀ ଅନୁଷ୍ଠାନ ମାଧ୍ୟମରେ ଉଭୟ ଶ୍ରୀରାମ ଓ ହନୁମାନଙ୍କ ପ୍ରତି ଭକ୍ତିଭାବ ପ୍ରକଟିତ ହୋଇଥାଏ ।

ଶ୍ରୀକ୍ଷେତ୍ରରେ ହନୁମାନ ଉପାସନା ପରମ୍ପରା ବହୁପ୍ରାଚୀନ । ପୁରାଣ ଯୁଗରୁ ଲୋକପ୍ରିୟତା ଲାଭ କରି ଆସିଥିବା ମହାବୀର ଉପାସନା ଆଜି ମଧ୍ୟ ଓଡ଼ିଆ ଜନଜୀବନରେ ବେଶ ପ୍ରାଧାନ୍ୟ ବିସ୍ତାର କରିଛି । ମହାଭାରତ ଯୁଦ୍ଧରେ ପାର୍ଥସାରଥି ଶ୍ରୀକୃଷ୍ଣଙ୍କ ନନ୍ଦିଘୋଷ ଚୂଡ଼ାରେ ଅବସ୍ଥାନ ପୂର୍ବକ ରଥକୁ ନିୟନ୍ତ୍ରଣ କରୁଥିଲେ କପିଶ୍ରେଷ୍ଠ ହନୁମାନ । ସମ୍ପ୍ରତି ସେହି ସ୍ମୃତିକୁ ଉଜ୍ଜୀବିତ ରଖି ଶ୍ରୀକ୍ଷେତ୍ରର ବଡ଼ଦାଣ୍ଡରେ ଶ୍ରୀଜଗନ୍ନାଥଙ୍କ ଶ୍ରୀନନ୍ଦିଘୋଷ ରଥ ଶୀର୍ଷରେ ଉଡ୍ଡୀୟମାନ କପିଧ୍ୱଜ ଓଡ଼ିଆ ଜନସାଧାରଣଙ୍କୁ ରାମଭକ୍ତି ତଥା ମହାବୀର ଚେତନାରେ ଅବଗାହନ ନିମିତ୍ତ ସାଦର ଆମନ୍ତ୍ରଣ ଜଣାଉଛି । ଶ୍ରୀକ୍ଷେତ୍ରରେ ଅବସ୍ଥିତ କେତେକ ବିଷ୍ଣୁ ମନ୍ଦିର ସମ୍ମୁଖରେ ଏବେ ମଧ୍ୟ ଗରୁଡ଼ ସହିତ ହନୁମାନ ବିଗ୍ରହ ଏକତ୍ର ଅବସ୍ଥାପିତ ହୋଇ ଧାର୍ମିକ ସହାବସ୍ଥାନ ଉଦ୍‌ଘୋଷଣ କରୁଛନ୍ତି । ଆଲୋଚ୍ୟ ହନୁମାନଙ୍କ ବ୍ୟତୀତ ଆହୁରି ଅନେକ ମହାବୀର ବିଗ୍ରହ ଯେ ଶ୍ରୀକ୍ଷେତ୍ରରେ ଉପାସିତ ହେଉଛନ୍ତି, ତାହାର ତାଲିକା ପ୍ରସ୍ତୁତ କଲେ ପ୍ରବନ୍ଧର କଳେବର ସ୍ଫୀତିକୃତ ହେବା ଅବଶ୍ୟମ୍ଭାବୀ । ସଙ୍କଟମୋଚନକାରୀ ହନୁମାନ ପୂଜାର୍ଚ୍ଚନା ଏଠାରେ ଶ୍ରୀଜଗନ୍ନାଥ ଉପାସନା ସହିତ ସମ୍ମିଳିତ ହେବା ହେଉଛି ଶ୍ରୀକ୍ଷେତ୍ର ସଂସ୍କୃତିର ଅନ୍ୟତମ ସ୍ୱକୀୟତା । ପୂର୍ବରୁ ଶ୍ରୀକ୍ଷେତ୍ରରେ ବହୁଳ ଭାବେ ସ୍ଥାପିତ ଆଲୋଚ୍ୟ ହନୁମାନ ବିଗ୍ରହ ସମେତ ସମ୍ପ୍ରତି ଭକ୍ତଗଣଙ୍କ ଦ୍ୱାରା ଏହି କ୍ଷେତ୍ରର ବିଭିନ୍ନ ପ୍ରାନ୍ତରେ ପ୍ରତିଷ୍ଠିତ ଅଗଣିତ ମହାବୀର ମୂର୍ତ୍ତି ପୂଜା ଆରାଧନା ଅବ୍ୟାହତ ଥିବା ଦୃଷ୍ଟିରୁ, ଏହା ଯେ ହନୁମାନ ଉପାସନା ପାଇ ପ୍ରକୃଷ୍ଟ କ୍ଷେତ୍ର ତାହା ହିଁ ପ୍ରମାଣିତ । ସର୍ବୋପରି ଶ୍ରୀକ୍ଷେତ୍ରର ପ୍ରତ୍ୟେକ ଅଧିବାସୀ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ହନୁମାନଙ୍କ ଭକ୍ତ ରୂପେ ଧାର୍ମିକ ସଂହତି ପ୍ରତିଷ୍ଠା କ୍ଷେତ୍ରରେ ସହାୟକ ହୋଇଛନ୍ତି । ପରିଶେଷରେ ଅଷ୍ଟସିଦ୍ଧି ନବନିଧିଦାତା ସେହି ସେବକ ମୂର୍ତ୍ତି ହନୁମାନଙ୍କ ପଦାରବିନ୍ଦରେ ବିନମ୍ର ପ୍ରାର୍ଥନା -

'ମଙ୍ଗଳ ମୂରତି ମରୁତ ନନ୍ଦନ
ସକଳ ଅମଙ୍ଗଳ ମୂଳ ନିସୂଦନ ।
ମହାବୀର ବିକ୍ରମ ବଜରଙ୍ଗୀ
କୁମତି ନିୱାର ସୁମତି କେ ସଙ୍ଗୀ ॥'

**ଉପାଦନ ଉତ୍ସ :**


୧. ଶ୍ରୀକ୍ଷେତ୍ରରେ ହନୁମାନ ପୂଜା - ଶ୍ରୀକ୍ଷେତ୍ର ଶ୍ରୀଜଗନ୍ନାଥ, ଦ୍ୱିତୀୟ ସ୍ତବକ, ପୃ.୩୪୨ ଓ ପୃ.୩୪୮ (ଉ.ପା.ସଂ) ।

୨. ଶ୍ରୀକ୍ଷେତ୍ରରେ ହନୁମାନ ମନ୍ଦିର - ଶ୍ରୀକ୍ଷେତ୍ର ଶ୍ରୀଜଗନ୍ନାଥ, ତୃତୀୟ ସ୍ତବକ, ପୃ.୧୧୪ (ଉ.ପା.ସଂ) ।

୩. ଶ୍ରୀଜଗନ୍ନାଥ ମନ୍ଦିର ସ୍ୱତ୍ୱଲିପି ।

୪. ଶ୍ରୀକ୍ଷେତ୍ରର ମଠ ସଂସ୍କୃତି - ଭାସ୍କର ମିଶ୍ର ।

୫. ହନୁମାନ ଜୟନ୍ତୀ ସ୍ମରଣିକା, ପୁରୀ- ୧୯୮୩ ।

୬. ଶ୍ରୀମନ୍ଦିରରେ ହନୁମାନ ପୂଜାର ପରମ୍ପରା - ଦୀପ୍ତି ସିହ୍ନା, ଦୈନିକ ସମୟ, ତା.୧୪.୪.୯୮ ।

୭. ରଥ, ପଥ, ନାଥ ଓ ଭକ୍ତ - ହରିହର ବାହିନୀପତି, ନିର୍ମାଲ୍ୟ, ଏକାଦଶ ସଂଖ୍ୟା, ପୃ.୨୯-୩୪ ।



ନୂଆଗାଁ, ଇଟିପୁର
ଭୁବନେଶ୍ୱର - ୨

# ଶାସ୍ତ୍ରୀୟ ପରମ୍ପରାର ଲୌକିକିକରଣ ଶୀତଳଷଷ୍ଠୀ ଏକ ଆଲୋଚନା

ଡକ୍ଟର ଚିତ୍ରସେନ ପଶାୟତ

ଅବ୍ରାହ୍ମଣ ତଥା ଆଦିବାସୀ ବହୁଳ ସମ୍ବଲପୁର ଅଞ୍ଚଳରେ ଆବହମାନ କାଳରୁ ଅଗଣିତ ଆଦିବାସୀ ଓ ଲୋକ ଦେବାଦେବୀ ଏକତ୍ର ସହାବସ୍ଥାନ ପୂର୍ବକ ଲୋକରୀତି ଓ ଲୋକଦର୍ଶନ ଅନୁଯାୟୀ ପୂଜା ପାଆନ୍ତି । ଶ୍ରମ ବିଭାଜନ ପାଇଁ ଗୁଣ କର୍ମାନୁସାରେ ଅବ୍ରାହ୍ମଣ ଦିସାରୀ ଓ ଦେହୁରୀମାନେ ଏହି ପୀଠଗୁଡ଼ିକରେ ପୂଜକ । ତନ୍ମଧ୍ୟରୁ ଅଧିକାଂଶ ଶୈବ ଓ ଶକ୍ତିପୀଠ ରୂପେ ଖ୍ୟାତ, ଯେଉଁଠି ବିଭିନ୍ନ ପୀଠ ଓ ଦର୍ଶନର ସମବିକାଶ ନିମିତ୍ତ ସ୍ଥାନୀୟ ଆଦିବାସୀ ଓ ଅବ୍ରାହ୍ମଣମାନେ ଧାର୍ମିକ ବ୍ୟବସ୍ଥାରେ ସଂଶ୍ଲିଷ୍ଟ । ଏହି ପୀଠମାନଙ୍କରେ ଦେବତାଙ୍କ ସେବାପୂଜା ନିମିତ୍ତ ଗ୍ରହଣ କରାଯାଇଥିବା ବ୍ୟବସ୍ଥାରେ ଉପରୋକ୍ତ ଦେହୁରୀ ଓ ଦିସାରୀମାନେ ପୂଜକ ରୂପେ ନିୟୋଜିତ । ଅନ୍ୟ ଅର୍ଥରେ ସମ୍ବଲପୁରକୁ ଏକ ଧର୍ମ ନିରପେକ୍ଷ ଅଞ୍ଚଳ ରୂପେ ପରିଗଣିତ କରିବା ପାଇଁ ଆଦି ଦେବତା ଶିବ ଓ ଶକ୍ତି ସର୍ବଦା ବଳିଷ୍ଠ ଭୂମିକା ନିର୍ବାହ କରି ଆସିଛନ୍ତି, କହିବା ବାହୁଲ୍ୟ ମାତ୍ର । ଏହି ପୃଷ୍ଠଭୂମି ଉପରେ ଆଲୋଚ୍ୟ ପ୍ରବନ୍ଧଟି ପର୍ଯ୍ୟବସିତ ।

ସମୟାନୁକ୍ରମେ ଏହି ଅଞ୍ଚଳକୁ ବ୍ରାହ୍ମଣମାନଙ୍କ ଆଗମନ ହେତୁ ହିନ୍ଦୁ ଧର୍ମଶାସ୍ତ୍ର ସମର୍ଥିତ ଶିବ ଓ ଶକ୍ତିଙ୍କ ପୂଜା ଆରାଧନା ପ୍ରଚଳିତ ହୋଇଛି ବୋଲି ଅନୁମେୟ । ବ୍ରାହ୍ମଣ ପାଖରେ ପ୍ରତିଷ୍ଠା ଥିଲା ଏବଂ ବେଦବିଦ୍ୟା ବ୍ରାହ୍ମଣ ପାଇଁ ସର୍ବସତ୍ତ୍ୱ ସଂରକ୍ଷିତ ହୋଇ ରହିଥିଲା । ତେଣୁ ବେଦ ଓ ଧର୍ମଶାସ୍ତ୍ର ଅଧ୍ୟୟନ ବା ଅଧ୍ୟାପନ ବ୍ରାହ୍ମଣ ସମାଜର ନିର୍ଦ୍ଦିଷ୍ଟ ଓ ଏକାନ୍ତ ପରିବେଶ ଓ ପରିସର ମଧ୍ୟରେ ସୀମିତ ରହିବା ସ୍ୱାଭାବିକ । ମନ୍ଦିର ପ୍ରବେଶ, ମନ୍ଦିର ମଧ୍ୟରେ ପୂଜାପାଠ ଇତ୍ୟାଦି କର୍ମ ସଂପାଦନ କରିବା ପାଇଁ ଏହି ନିର୍ଦ୍ଦିଷ୍ଟ ଶ୍ରେଣୀର ଲୋକମାନେ ସାମାଜିକ ମଂଜୁରୀପ୍ରାପ୍ତ ହୋଇଥିଲେ । ଅବ୍ରାହ୍ମଣଙ୍କ ପକ୍ଷେ ବ୍ରାହ୍ମଣ ନିୟୋଜିତ ମନ୍ଦିର ଗୃହକୁ ପ୍ରବେଶ, ପୂଜାପାଠ କର୍ମାଦି ଆଚରଣ ତତ୍କାଳୀନ ହିନ୍ଦୁ ସମାଜରେ ଆଚାର ବିରୁଦ୍ଧ ବୋଲି ଧରା ଯାଉଥିଲା । ଫଳତଃ ଧର୍ମକୁ ବହୁ ଲୋକଙ୍କ ସମ୍ମୁଖରେ ଆନୁଷ୍ଠାନିକ ଭାବେ ପ୍ରକାଶ କରିବା ପାଇଁ ଅନେକ ବାରଣ ବା ସାମାଜିକ ପ୍ରତିବନ୍ଧକମାନ ରହିଥିଲା । ତଥାକଥିତ ରକ୍ଷଣଶୀଳ, ଜାତିଭିତ୍ତିକ ସମାଜରେ ଆଚାରଭ୍ରଷ୍ଟ ହୋଇଯିବା ଭୟ ଯୋଗୁଁ ସମସ୍ତବର୍ଗର ଲୋକମାନେ ସମାନ ଅଧିକାର ପାଇବାରୁ ବଞ୍ଚିତ ଥିଲେ । ସମାଜର ଏକ ବୃହତ୍ତର ଭାଗ ସାଧାରଣ ଜନତା ଓ ଭଗବାନଙ୍କ ମଧ୍ୟରେ ଅନେକଗୁଡ଼ିଏ ପ୍ରତିବନ୍ଧକ ପରିଦୃଷ୍ଟ ହେଉଥିଲା । ତତ୍କାଳୀନ ରକ୍ଷଣଶୀଳ ସମାଜ ବ୍ୟବସ୍ଥାପକମାନେ ଏହି ବିଷୟ ପ୍ରତି ଅନଭିଜ୍ଞ ଅଥବା ଅଚେତ ଥିଲେ ବୋଲି ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ଉପନୀତ ହୋଇପାରିବା ନାହିଁ । ନିଶ୍ଚିତ ଭାବେ ଅନେକଙ୍କୁ ଏହା ଏକ ଅମାନୁଷିକ ଆନୁଷ୍ଠାନିକ ଧାର୍ମିକ ବ୍ୟବସ୍ଥା ମନେ ହୋଇଥିବ ଏବଂ ସେମାନଙ୍କ ହୃଦୟକୁ ଆହତ କରିଥିବ । କିନ୍ତୁ ଅବଧାରିତ ସାମାଜିକ ଖସଡ଼ାକୁ ପରିବର୍ତ୍ତନ କରିବା ସେମାନଙ୍କ ପକ୍ଷେ ସହଜ ମଧ୍ୟ ହୋଇନଥିବ । ସମ୍ଭବତଃ ଏ ଦିଗରେ କୌଣସି ପ୍ରକାର ପଦକ୍ଷେପ ଗ୍ରହଣ କଲାବେଳକୁ ଅତ୍ୟନ୍ତ ପ୍ରତିରୋଧ ସୃଷ୍ଟି ହୋଇଥିବ । ଏହି ଅଧିକାରକୁ ନେଇ ଅନେକ ସ୍ଥଳରେ ତଥାକଥିତ ଉଚ୍ଚବର୍ଗ ଓ ନିମ୍ନବର୍ଗଙ୍କ ମଧ୍ୟରେ ତୀବ୍ର ଅସନ୍ତୋଷ ମଧ୍ୟ ପ୍ରକାଶ ପାଇଥିବ ।

ପ୍ରକାଶ ଥାଉ କି ସମାଜରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନିମିତ୍ତ ବିଭିନ୍ନ ଶ୍ରେଣୀର ଲୋକଙ୍କ ମଧ୍ୟରେ ଏକତା, ସମନ୍ୱୟ ଓ ସଂହତିର ଆବଶ୍ୟକତାକୁ ସବୁ ଯୁଗରେ ଉପଲବ୍ଧି କରାଯାଇ ଆସିଛି । ସେଥିପାଇଁ ବିଭିନ୍ନ ଯୁଗରେ ବିଭିନ୍ନ ସ୍ଥାନରେ ବିଭିନ୍ନ ଲୋକ ପରମ୍ପରା ପ୍ରଚଳିତ । କିନ୍ତୁ ସଚେତନ ମନରେ କେହି ଏହି ପରମ୍ପରାକୁ ଜନ୍ମ ଦେଇନାହିଁ । ଏହି ଦୃଷ୍ଟିରୁ ଶୀତଳଷଷ୍ଠୀ ପରମ୍ପରା ପଛରେ ଏକ ସାର୍ବଜନୀନ ଆକାଂକ୍ଷା ନିହିତ । ମଣିଷର ଆବଶ୍ୟକତାକୁ କେନ୍ଦ୍ର କରି ଦୀର୍ଘ ବିବର୍ତ୍ତନରେ ଏହି ପରମ୍ପରାର ସୃଷ୍ଟି ବୋଲି ନିଃସନ୍ଦେହରେ କୁହାଯାଇପାରେ । ଏହା ଧାର୍ମିକ ଔଦାର୍ଯ୍ୟର ମୂର୍ତ୍ତିମନ୍ତ ପ୍ରତୀକ । ଏଥିରେ ବ୍ରାହ୍ମଣ ଓ ଅବ୍ରାହ୍ମଣ ଧର୍ମର ସମନ୍ୱୟ ସଂସାଧିତ ଘଟିଛି । ପ୍ରକୃତିର ଧାରାଭଳି ଏହି ସମନ୍ୱୟ ସ୍ୱାଭାବିକ ରୀତିରେ ଚାଲିଛି । ସବୁଶ୍ରେଣୀର ଲୋକଙ୍କ ଧାର୍ମିକ ଅଭିଳାଷା ସହିତ ମନୋରଞ୍ଜନକୁ ଦୃଷ୍ଟିରେ ରଖି ସମ୍ବଲପୁର ସହରରେ ପାଳିତ ହେଉଥିବା ଶୀତଳଷଷ୍ଠୀ ପର୍ବ ଏହି ସାର୍ବଜନୀନ ଆକାଂକ୍ଷାର ପୂର୍ତ୍ତି ପାଇଁ ଏକ ନିରୂପମ ତଥା ଯଥାର୍ଥ ପଦକ୍ଷେପ । ଉଲ୍ଲେଖନୀୟ ବିଷୟ ଏହିକି ଯେ ଓଡ଼ିଶାର ଅନ୍ୟତ୍ର ଯଥା : ବରପାଲି, ରାଉରକେଲା, ସୋନପୁର, ନୟାଗଡ଼, ପୁରୀ ଓ ଗଂଜାମ ଜିଲ୍ଲାର ବିଭିନ୍ନ ବ୍ରାହ୍ମଣ ଶାସନରେ ମଧ୍ୟ ଶୀତଳଷଷ୍ଠୀ ଉତ୍ସବ ପାଳନ

କରାଯାଇଥାଏ । ଶ୍ରୀକ୍ଷେତ୍ର ପୁରୀରେ ଉକ୍ତ ଦିବସରେ ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ଶ୍ରୀଜଗନ୍ନାଥ ମହାପ୍ରଭୁ ନବବିବାହିତ ଶିବ-ପାର୍ବତୀଙ୍କୁ ସମାଦରରେ ଅଣାଇ ଶ୍ରୀମନ୍ଦିରରେ ସମ୍ବର୍ଦ୍ଧିତ କରନ୍ତି । ଶ୍ରୀକ୍ଷେତ୍ରରେ ଥିବା ପଞ୍ଚମହାଦେବ ଯଥା- ଶ୍ରୀମାର୍କଣ୍ଡେଶ୍ୱର, ଶ୍ରୀଲୋକନାଥ, ଶ୍ରୀନୀଳକଣ୍ଠେଶ୍ୱର, ଶ୍ରୀକପାଳଲୋଚନ ଓ ଶ୍ରୀଯମେଶ୍ୱରଙ୍କୁ ଶ୍ରୀଜଗନ୍ନାଥଙ୍କ ଆଜ୍ଞାମାଳ ପ୍ରଦାନ କରାଯାଇ ସେମାନଙ୍କୁ ନିମନ୍ତ୍ରଣ କରାଯାଏ । ପଞ୍ଚ ମହାଦେବ ନିଜ ନିଜ ନବପରିଣିତା ପାର୍ବତୀଙ୍କ ସହିତ ବିମାନରେ ବିଜେକରି ଆସି ଶ୍ରୀମନ୍ଦିର ଜଗମୋହନ ନିକଟରେ ପହଞ୍ଚନ୍ତି । ସ୍ଥାନୀୟ ଦେଉଳିଆ ଭାଷାରେ ଏହାକୁ 'ଦୋହଲା' ବୋଲି କୁହାଯାଏ । ଶ୍ରୀବିଗ୍ରହମାନେ ଦୋହଲ ମାରି ଆସି ଜଗମୋହନରେ ପହଞ୍ଚିବା ଦୃଶ୍ୟ ଅତ୍ୟନ୍ତ ମନୋହର । ସେଠାରୁ ଆଜ୍ଞାମାଳ ପାଇ ପଞ୍ଚମହାଦେବ ଲକ୍ଷ୍ମୀଙ୍କ ମନ୍ଦିରକୁ ବିଜେ କରନ୍ତି । ସେଠାରେ ପଞ୍ଚମହାଦେବଙ୍କର ମେଳଣ ହୋଇଥାଏ ଏବଂ ଶୀତଳଭୋଗ (ନିସଂଖୁଡ଼ି) ଲାଗିହୁଏ, ବନ୍ଦାପନା ହୁଏ । ପଞ୍ଚମହାଦେବ ସେଠାରେ ତା'ପରଦିନ ବଲ୍ଲଭ ଭୋଗ ସରିବା ପରେ ନଗର ଭ୍ରମଣ କରି ସ୍ୱ ସ୍ୱ ମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରନ୍ତି । ଶିବ-ପାର୍ବତୀଙ୍କ ବିବାହ ପରେ ଶ୍ରୀଜଗନ୍ନାଥଙ୍କ ଦ୍ୱାରା ସ୍ୱାଗତ ତଥା ସମ୍ବର୍ଦ୍ଧିତ ହେବାର ପରମ୍ପରାରେ ଶୈବ ଓ ବୈଷ୍ଣବ ଧର୍ମର ସମନ୍ୱୟ ଚେତନା ନିହିତ ।

ଯୁଗେ ଯୁଗେ ମଣିଷ କୌଣସି ନା କୌଣସି ଶକ୍ତିର ଆରାଧନା କରିଆସିଛି । ତେଣୁ ସୃଷ୍ଟି ଓ ସ୍ରଷ୍ଟା ମଧ୍ୟରେ ସର୍ବଦା ଆବେଗ, ଆନ୍ତରିକତା ଓ ଭଲ ପାଇବାର ନିବିଡ଼ ସଂପର୍କ ଗଢ଼ି ଉଠିଛି । ଜୀବନର ସୁଖ, ଦୁଃଖ, ଯନ୍ତ୍ରଣା, ଅଭାବ ଓ ଅନଟନ ଭିତରେ ମଧ୍ୟ ମଣିଷ ବିଭିନ୍ନ ରୂପରେ ନିଜ ସ୍ରଷ୍ଟାର ଉପସ୍ଥିତିକୁ ଅନୁଭବ କରିଛି । ଏହି ଦୃଷ୍ଟିରୁ ଅତି ପୁରାକାଳରୁ ଏକ ବଳିଷ୍ଠ ଧର୍ମୀୟ ପରମ୍ପରା ଉପରେ ଶୀତଳଷଷ୍ଠୀ ଯାତ୍ରା ସୁପ୍ରତିଷ୍ଠିତ କଳ୍ପନାତୀତ କାଳରୁ ଭାରତବର୍ଷରେ ଶିବ ଓ ଶକ୍ତିଙ୍କ ପୂଜା ପରମ୍ପରା ପ୍ରଚଳିତ ହୋଇ ଆସୁଥିବା ବିଷୟକୁ ଅସ୍ୱୀକାର କରିବା ଅପରାଧ ହେବ । ଆଦିବାସୀର କାଠଗଣ୍ଡି ସ୍ୱରୂପ ଦାରୁଦେବତା ପ୍ରାକ ଆର୍ଯ୍ୟଯୁଗରେ ଲିଙ୍ଗ ରୂପେ ଉପାସିତ ହେଉଥିଲେ ବୋଲି ବିଶ୍ୱାସ କରାଯାଏ । ଐତିହାସିକ ତଥା ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିକୋଣରୁ ଶିବ ଓ ଅମ୍ବାଙ୍କର ପୂଜା ପ୍ରାଚୀନ ସମାଜରେ ଅଙ୍ଗୀକୃତ ଥିଲା । ମହେଞ୍ଜୋଦାରୋ ଓ ହରପ୍ପା ଖନନକାଳରେ ଆବିଷ୍କୃତ ଅବଶେଷ ମଧ୍ୟରୁ ଏହି ବିଷୟରେ ପ୍ରାପ୍ତ ସୂଚନା ଅତିରଞ୍ଜିତ ବୋଲି କହିବା ଐତିହାସିକ ତଥ୍ୟ ପ୍ରତି ଅବମାନନା ବା ଅମର୍ଯ୍ୟାଦା ହୋଇପାରେ । ମିଶରର ଆଇରିଶ ମଧ୍ୟ ଶିବ-ପାର୍ବତୀଙ୍କ ସହିତ ତୁଳନୀୟ ବୋଲି ପଣ୍ଡିତମାନେ ମତବ୍ୟକ୍ତ କରନ୍ତି । କାଳର ବିବର୍ତ୍ତନର ଶୈବ ଓ ଶାକ୍ତ ସଂସ୍କୃତିର ପରିବର୍ତ୍ତିତ, ପରିବର୍ଦ୍ଧିତ ଓ ପରିମାର୍ଜିତ ରୂପ ବ୍ରାହ୍ମଣ୍ୟଗୋଷ୍ଠୀର ନିଜସ୍ୱ ହୋଇ ପଡ଼ିବା ସହିତ ତାହା ଆର୍ଯ୍ୟସ୍ୱୀକୃତି ଲାଭ କରିଛି ବୋଲି କୁହାଯାଏ ।

ପୌରାଣିକ ଧର୍ମଶାସ୍ତ୍ର ତଥା ଲୋକମୁଖରୁ ଜଣାଯାଏ ଯେ, ସମ୍ବଲପୁର ଏକ ଶକ୍ତିପୀଠ । ଦକ୍ଷ ଯଜ୍ଞରେ ସତୀ ଝାସ ଦେବା ପରେ ମହାଦେବ କ୍ରୋଧାନ୍ୱିତ ହୋଇ ଦକ୍ଷ ଯଜ୍ଞ ଧ୍ୱଂସ କରିବା ସାଙ୍ଗେ ସାଙ୍ଗେ ସତୀଙ୍କର ଶରୀରକୁ କାନ୍ଧରେ ଧରି ତ୍ରିଭୁବନ ଭ୍ରମଣ କଲେ । ଦେବାଧିଦେବ ମହାଦେବଙ୍କର ଏତାଦୃଶ ଅବସ୍ଥା ଦେଖି ବିଷ୍ଣୁ ସୁଦର୍ଶନ ଚକ୍ରକୁ ଆଜ୍ଞା ଦେଲେ ସତୀଙ୍କର ମୃତ ଶରୀରକୁ ଖଣ୍ଡ ଖଣ୍ଡ କରି କାଟି ଦେବା ପାଇଁ । ଯେଉଁସବୁ ସ୍ଥାନରେ ସତୀଙ୍କର ଅବୟବ ପଡ଼ିଲା ତାହା ଗୋଟିଏ ଗୋଟିଏ ଶକ୍ତିକ୍ଷେତ୍ର ରୂପେ ପରିଗଣିତ ହେଲା । ସମ୍ବଲପୁରରେ ସତୀଙ୍କ ମୁଣ୍ଡ ପଡ଼ିଥିଲା । ସତୀ ଏହି କ୍ଷେତ୍ରରେ ସମଲେଶ୍ୱରୀ ହେଲେ । ପରେ ଶିବ ଶାନ୍ତ ହେବାରୁ ହିମାଳୟକୁ ପ୍ରତ୍ୟାବର୍ତ୍ତନ କରି ତପସ୍ୟାରତ ହେଲେ । ପରବର୍ତ୍ତୀ କାଳରେ ତାରକାସୁରର ପ୍ରଭାବ ବୃଦ୍ଧି ପାଇଲା । ସେ ବର ପାଇଥିଲା ଯେ ଶିବଙ୍କ ଔରସରୁ ଜାତ ସନ୍ତାନ ହସ୍ତରେ ହିଁ କେବଳ ତା'ର ମୃତ୍ୟୁ ଘଟିବ । ଇତିମଧ୍ୟରେ ସତୀ ପାର୍ବତୀ ରୂପେ ହିମାଳୟଙ୍କ ଘରେ ଜନ୍ମ ଗ୍ରହଣ କରିଥିଲେ । ଶିବ ଓ ପାର୍ବତୀଙ୍କ ଜନ୍ମିତ ସନ୍ତାନ ଏହି ମହାପ୍ରତାପୀ ତାରକାସୁରକୁ ବଧ କରିପାରିବ ବୋଲି ଜାଣିବା ପରେ ତାରକାସୁରର ନିର୍ଯ୍ୟାତନାରୁ ତ୍ରାହି ପାଇବା ନିମିତ୍ତ ଦେବତାମାନେ ଶିବ-ପାର୍ବତୀଙ୍କର ବିବାହ ଅନିବାର୍ଯ୍ୟ ବୋଲି ଅନୁଭବ କଲେ ଏବଂ ସେମାନେ ପାର୍ବତୀଙ୍କ ଶରଣ ପଶିଲେ । ତେଣୁ ତପସ୍ୟାରତ ଶିବଙ୍କୁ ତପସ୍ୟାରୁ ବିରତ କରାଇ ତାଙ୍କୁ ପତି ରୂପେ ପ୍ରାପ୍ତି ନିମନ୍ତେ ପର୍ବତକନ୍ୟା ଜଗତଜନନୀ ମାତା ପାର୍ବତୀ ହିମାଳୟର ଘଞ୍ଚବନାନୀ ମଧ୍ୟରେ ବରଫ ଲିଙ୍ଗ ସ୍ଥାପନ ପୂର୍ବକ ଆରାଧନା କରି କଠୋର ତପସ୍ୟାରତ ହେଲେ । ପରିଶେଷରେ ଜ୍ୟେଷ୍ଠ ମାସ ଶୁକ୍ଳ ପଞ୍ଚମୀ ତିଥିରେ ଦେବତାଙ୍କ ଆୟୋଜନରେ ଅରଣ୍ୟରେ ଭଗବାନ ଶିବଙ୍କ ସହିତ ପାର୍ବତୀଙ୍କ ବିବାହ ସମ୍ପନ୍ନ ହୋଇ ତା'ପରଦିନ ଷଷ୍ଠୀ ତିଥିରେ ପର୍ବ ପାଳିତ ହେଲା । ଦକ୍ଷକନ୍ୟା ସତୀଙ୍କୁ ହରାଇବା ପରେ ମହାରୁଦ୍ରଙ୍କ ଯେଉଁ ଉଗ୍ରରୂପ ପ୍ରକାଶ ପାଇଥିଲା, ତାହା ପାର୍ବତୀଙ୍କୁ ପାଇ ଶାନ୍ତ ବା ଶୀତଳ ହୋଇଗଲା । ଅନ୍ୟ ଅର୍ଥରେ ବିବାହ ଉପରାନ୍ତେ ମହାରୁଦ୍ରଙ୍କ ସତୀ-ବିରହ କ୍ରୋଧ ଶୀତଳତା ଲାଭ କରିଥିବାରୁ ଉକ୍ତ ପର୍ବ ଶୀତଳଷଷ୍ଠୀ ନାମରେ ପ୍ରଖ୍ୟାତ ବୋଲି କୁହାଯାଏ । ଶିବ-ପାର୍ବତୀଙ୍କ ବିବାହ ଫଳରେ କୁମାର ଜନ୍ମ ନେଲେ । କୁମାର ତାରକାସୁରକୁ ବଧ କରି ଅଶାନ୍ତ ପୃଥିବୀକୁ ଶାନ୍ତ କଲେ । ଏତଦ୍‌ଦ୍ୱାରା ଶିବ-ପାର୍ବତୀଙ୍କ ବିବାହ ଶାନ୍ତିପ୍ରଦ ଓ ସଫଳ ହେଲା । ଧରାବକ୍ଷ ମଧ୍ୟ ଶାନ୍ତ ହେଲା, ଶୀତଳ ହେଲା । ସେହି ଶୀତଳତାର ଚରମ ସ୍ପର୍ଶର ସ୍ମୃତିରେ ପ୍ରାଚୀନ କାଳରୁ ସମ୍ବଲପୁର ସମାଜରେ ଶିବକୈନ୍ଦ୍ରିକ ପର୍ବପର୍ବାଣି ମଧ୍ୟରେ ଶୀତଳଷଷ୍ଠୀ ଉତ୍ସବ ଶିବ-ପାର୍ବତୀ ବିବାହର ମହୋତ୍ସବ ରୂପେ ବାଣ ରୋଷଣୀ ସହିତ ମହାସମାରୋହରେ ପାଳିତ ହୋଇଥାଏ ବୋଲି ମଧ୍ୟ କୁହାଯାଇପାରେ ।

ଜ୍ୟେଷ୍ଠ ଶୁକ୍ଳପକ୍ଷ ଷଷ୍ଠୀ ତିଥିରେ ଅନୁଷ୍ଠିତ ହେଉଥିବା ଶିବ-ପାର୍ବତୀ ବିବାହ ପର୍ବ ଶିବ ଓ ଶକ୍ତିଙ୍କର ଏକ ଅନନ୍ୟ ତଥା ତୁଳନା

ରହିତ ପର୍ବ । ତେଣୁ ଏହି ଉତ୍ସବର ସ୍ୱାତନ୍ତ୍ର୍ୟ ପଣ୍ଡିତମାନଙ୍କ ଦ୍ୱାରା ମଧ୍ୟ ସ୍ୱୀକୃତ । ସଂପ୍ରତି ସମ୍ବଲପୁର ସହରର ନନ୍ଦପଡ଼ା, ଝାଡ଼ୁଆପଡ଼ା, ମୁଦିପଡ଼ା ଓ ଦଶମତି କଲୋନିସ୍ଥିତ ମହାଦେବଙ୍କ ପୀଠରେ ଶୀତଳଷଷ୍ଠୀ ଯାତ୍ରା ଅନୁଷ୍ଠିତ ହେଉଥିବାର ସୂଚନା ମିଳେ । କିନ୍ତୁ ନନ୍ଦପଡ଼ା ଓ ଝାଡ଼ୁଆପଡ଼ାର ଶୀତଳଷଷ୍ଠୀ ଯାତ୍ରା ଶତାଧିକ ବର୍ଷଧରି ପାଳିତ ହୋଇ ଆସୁଥିବା ବେଳେ ମୁଦିପଡ଼ା ଓ ଦଶମତି କଲୋନିରେ ଏହି ଯାତ୍ରା ସ୍ୱାଧୀନୋତ୍ତର କାଳରେ ଆରମ୍ଭ ହୋଇଥିବା ବିଷୟ ସୁସ୍ପଷ୍ଟ ଜଣାପଡ଼େ । ସର୍ବୋପରି ଶୀତଳଷଷ୍ଠୀ ଯାତ୍ରା ବହୁଜନ ସମର୍ଥିତ ଯାହାକି ସାର୍ବଜନୀନ । ସମ୍ବଲପୁରରେ ଶୀତଳଷଷ୍ଠୀ ଯାତ୍ରାର ସାମାଜିକ ପ୍ରାସଙ୍ଗିକତାକୁ ଉପଲବ୍‌ଧି କରିବାକୁ ପଡ଼ିବ । ନିଦାଘର ପ୍ରଚଣ୍ଡ ରୌଦ୍ରତାପ ସୃଷ୍ଟିର ବୃକ୍ଷଲତା, ଜୀବଜନ୍ତୁ ଓ ମଣିଷର ପ୍ରାଣକୁ ଅସହ୍ୟ କଷ୍ଟ ପ୍ରଦାନ କରିଥାଏ । ଶୀତଳଷଷ୍ଠୀ ଅବସରରେ ପ୍ରକୃତିର ସବୁଠାରୁ ଲାସ୍ୟମୟୀ ବର୍ଷାଋତୁର ପ୍ରଥମ ବର୍ଷା ସମସ୍ତଙ୍କ ପ୍ରାଣରେ ଶୀତଳସ୍ପର୍ଶ ଆଣି କଷ୍ଟ ଦୂର କରେ ଓ ମନହୃଦୟ ପୁଲକିତ ହୋଇଉଠେ ବୋଲି ଲୋକ ବିଶ୍ୱାସ ରହିଥିବାରୁ ଏହା ଶୀତଳଷଷ୍ଠୀ ନାମରେ ପ୍ରଖ୍ୟାତ ବୋଲି ମଧ୍ୟ କୁହାଯାଇପାରେ । ଅନ୍ୟ ଅର୍ଥରେ ଏହାର ସର୍ବପ୍ରଥମେ ବର୍ଷାର ଆଗମନୀ ବାର୍ତ୍ତାକୁ ବହନ କରି ଧରାବକ୍ଷରେ ପ୍ରାଣର ସଞ୍ଚାର କରେ । ତେଣୁ ଏହାକୁ ପୁରୁଷ ଓ ପ୍ରକୃତିର ଅପୂର୍ବ ମିଳନର ପର୍ବ ବୋଲି କୁହାଯାଇପାରେ ।

ସ୍ଥାନୀୟ ସମ୍ବଲପୁର ସମାଜରେ ଅନୁସୃତ ଲୋକ ପରମ୍ପରା ଶିବ-ପାର୍ବତୀଙ୍କ ବିବାହ ସମୟରେ ଯଥାରୀତି ପାଳିତ ହୁଏ । ଅକ୍ଷୟ ତୃତୀୟାରୁ ଜ୍ୟେଷ୍ଠ ଶୁକ୍ଳ ସପ୍ତମୀ ପର୍ଯ୍ୟନ୍ତ ମାସାଧିକ କାଳ ଧରି ସଂପୂର୍ଣ୍ଣ ଲୌକିକ ରୀତିରେ ଆୟୋଜିତ ହେଉଥିବା ଏହି ଯାତ୍ରାକୁ ନେଇ ସମ୍ବଲପୁରରେ ଭିନ୍ନ ଏକ ଉଦ୍ଦୀପନା ଓ ଆଗ୍ରହ ପ୍ରକାଶ ପାଏ । ଏହି ଯାତ୍ରାର ମୁଖ୍ୟ ନୀତିଗୁଡ଼ିକ ହେଲା ଥାଳଉଠା, ପତରପେଁଡ଼ି, ନିଉତା ଓ ଗୁଆଗୁଁଡ଼ା, ଶିବ ବିବାହ ଓ ଶୀତଳଷଷ୍ଠୀ ଯାତ୍ରା । ଏଥିରୁ ସ୍ପଷ୍ଟ ମନେହୁଏ ଯେ ଆଧୁନିକ ଶୀତଳଷଷ୍ଠୀ ଯାତ୍ରା ଡିସ୍‌କୋ ତଥା ରେକର୍ଡ଼ ଡ୍ୟାନ୍ସ ପରି କିଛିଟା ନୂତନତ୍ୱକୁ ଗ୍ରହଣ କରି ନେଇଥିଲେ ମଧ୍ୟ ମୌଳିକତାକୁ ଦୂରେଇ ଦେଇନାହିଁ । ତେଣୁ ସମ୍ବଲପୁରର ଗଣପର୍ବ ଶୀତଳଷଷ୍ଠୀ ଯାତ୍ରା ଅନ୍ୟ ଅଞ୍ଚଳ ଅପେକ୍ଷା ସଂପୂର୍ଣ୍ଣ ନିଆରା ଅଟେ । ଶୀତଳଷଷ୍ଠୀ ଯାତ୍ରାର ପ୍ରସ୍ତୁତି ପର୍ବ ଆରମ୍ଭ ହୁଏ ବୈଶାଖ ଶୁକ୍ଳ ତୃତୀୟା ଅର୍ଥାତ୍ ଅକ୍ଷୟ ତୃତୀୟା ଦିନ । ଏହି ନୀତିକୁ 'ଥାଳଉଠା' କୁହାଯାଏ । ଏହିଦିନ ଆୟୋଜନକାରୀ ପଡ଼ାର ବ୍ରାହ୍ମଣମାନେ ଘରକୁ ଘର ବୁଲି ଚାନ୍ଦା ଆଦାୟ କରନ୍ତି ଏବଂ ମହାଦେବଙ୍କ ଶ୍ୱଶୁରଘର ଖୋଜା ମଧ୍ୟ ଆରମ୍ଭ ହୁଏ । ବାସ୍ତବରେ ଦେଖିବାକୁ ଗଲେ ପାର୍ବତୀଙ୍କୁ କନ୍ୟା ରୂପେ ଗ୍ରହଣ କରି ଶିବଙ୍କ ହସ୍ତରେ ଅର୍ପଣ କରିବାକୁ ଆଗ୍ରହୀ ଥିବା ଭକ୍ତମାନେ ଯାତ୍ରା କମିଟିଗୁଡ଼ିକୁ ଦରଖାସ୍ତ କରିଥାନ୍ତି । ଅକ୍ଷୟ ତୃତୀୟା ଦିନ ଉକ୍ତ ଦରଖାସ୍ତଗୁଡ଼ିକୁ ବିଚାରକୁ ନିଆଯାଇ କନ୍ୟାପକ୍ଷ ନିର୍ଦ୍ଧାରଣ କରାଯାଏ । ପାର୍ବତୀଙ୍କ ପିତାମାତା କିଏ ହେବେ, ତାହା ନିଷ୍ପତ୍ତି ହେବାପରେ ଦେବ ଦେବ ମହାଦେବଙ୍କ ପୂଜାର୍ଚ୍ଚନା ହୋଇ ଯାତ୍ରାପାଇଁ ଚାନ୍ଦା ସଂଗ୍ରହର ଅନୁକୂଳ କରାଯାଏ । ଏହି ନୀତିକୁ 'ଥାଳଉଠା' କୁହାଯାଏ ଏବଂ ଥାଳ ପଡ଼ାର ଘରକୁ ଘର ବୁଲିଥାଏ ଓ ଲୋକେ ନିଜ ସାଧ୍ୟମତେ ଯାତ୍ରା ପାଇଁ ଅର୍ଥଦାନ କରିଥାଆନ୍ତି । ଶାଶୁ, ଶ୍ୱଶୁର ଠିକଣା ହେବାପରେ କନ୍ୟାପିତା ଭାବରେ ସେ ପାର୍ବତୀଙ୍କ ବିବାହ ପାଇଁ ସମସ୍ତ ଆୟୋଜନ କରନ୍ତି ଏବଂ ପୂର୍ବବର୍ଷ ଯେଉଁ ଦମ୍ପତ୍ତି ପାର୍ବତୀଙ୍କ ମାତାପିତା ହୋଇଥିଲେ ତାଙ୍କ ଘରକୁ ପଡ଼ାର କେତେଜଣ ମୁଖିଆ ବା ଗଣ୍ୟମାନ୍ୟ ବ୍ୟକ୍ତି ଯାଇ 'ଗଠଁଲହିଟା' ବା ସମ୍ବନ୍ଧ ତୁଟେଇବା କାର୍ଯ୍ୟ କରନ୍ତି । ନୂଆ ବାପାଘରକୁ ଯିବାପାଇଁ ପୂର୍ବ ପିତାମାତାଙ୍କ ସହିତ ପାର୍ବତୀ ନିଜର ସଂପର୍କ ଛିନ୍ନ କରିବା ବା ନୂଆ ଶାଶୁ ଶ୍ୱଶୁରଙ୍କ ଘରକୁ ବିବାହ ଉଦ୍ଦେଶ୍ୟରେ ଯିବାପାଇଁ ପୂର୍ବ ଶାଶୁ-ଶ୍ୱଶରଙ୍କ ସହିତ ଶିବ ନିଜର ସଂପର୍କ ଛିନ୍ନ କରିବା ନୀତିକୁ 'ଗଠଁଲହିଟା' କହନ୍ତି ।

ଏହାର ପରବର୍ତ୍ତୀ ନୀତିକୁ 'ପତରପେଁଡ଼ି' କହନ୍ତି ଯାହାକି ଜ୍ୟେଷ୍ଠ ଶୁକ୍ଳ ଦ୍ୱିତୀୟ ତିଥିରେ କରାଯାଏ । ଆୟୋଜନକାରୀ ପଡ଼ାର କେତେଜଣ ନେତୃସ୍ଥାନୀୟ ବ୍ୟକ୍ତି ଉଦ୍ଦିଷ୍ଟ ଦିନ ଦୁଲଦୁଲି, ଶଙ୍ଖ ଓ ଘଣ୍ଟବାଦ୍ୟ ସହିତ ନାନାଦି ଫଳମୂଳ ଧରି ଏକ ବର୍ଣ୍ଣାଢ଼୍ୟ ଶୋଭାଯାତ୍ରାରେ ପାର୍ବତୀଙ୍କ ପିତାମାତାଙ୍କ ଘରକୁ କୁଣିଆ ବା ଅତିଥି ହୋଇ ଯାଆନ୍ତି । ସେଠାରେ ପ୍ରାଥମିକ ଔପଚାରିକତା ପରେ ଶିବ-ପାର୍ବତୀ ବିବାହର ସ୍ୱୀକୃତି ସ୍ୱରୂପ ବରପିତା କନ୍ୟାପିତାଙ୍କୁ ସରଗି ବା ଶାଳପତ୍ର ଗୋଟିଏ 'ପେଁଡି' (ବିଡ଼ାଏ ବା ବିଣ୍ଡାଏ) ପ୍ରଦାନ କରିଥାନ୍ତି । ଅନ୍ୟ ଅର୍ଥରେ ଏହାକୁ ନିର୍ବନ୍ଧ କୁହାଯାଏ । ଏହି ଦିନ କନ୍ୟା ପାର୍ବତୀଙ୍କ ପାଇଁ ଚୁଡ଼ି, ସିନ୍ଦୂର, ଅଙ୍ଗବସ୍ତ୍ର ପ୍ରଭୃତି ବିବାହ ସାମଗ୍ରୀ କନ୍ୟାପିତାଙ୍କୁ ପ୍ରଦାନ କରାଯାଏ ଏବଂ ବିବାହ ଲଗ୍ନ ସଂପର୍କରେ ଆଲୋଚନା କରାଯାଏ । 'ପତରପେଁଡ଼ି' ନୀତି ସମ୍ବଲପୁରରେ ପାଳିତ ହେଉଥିବା ଶୀତଳଷଷ୍ଠୀ ଉତ୍ସବର ଏକ ଅନନ୍ୟ ଓ ଅବ୍ୟକ୍ତ ପରମ୍ପରା । ପ୍ରକାଶ ଥାଉକି ଘରେ କନ୍ୟା ସନ୍ତାନଟିଏ ଜନ୍ମ ହେବା ପରେ କନ୍ୟାପିତା ମାତା ଆଖପାଖ ଅଞ୍ଚଳରେ ବାସ କରୁଥିବା ନିଜ ଜାତିରେ ପୂର୍ବରୁ ଜନ୍ମ ହୋଇଥିବା ପୁତ୍ର ସନ୍ତାନର ପିତାମାତାଙ୍କୁ ନିଜ କନ୍ୟାର ବିବାହ ପାଇଁ ସର୍ଗିପତ୍ର ଗୋଟିଏ ପେଁଡ଼ି ଦେଇ ପ୍ରସ୍ତାବ ଦେବା ଲୋକ ପରମ୍ପରା ପୂର୍ବେ ସମ୍ବଲପୁର ଅଞ୍ଚଳରେ ପ୍ରଚଳିତ ଥିଲା । ଏହାକୁ 'ପତରପେଁଡ଼ି' କୁହାଯାଉଥିଲା । କିନ୍ତୁ ଶୀତଳଷଷ୍ଠୀ ଯାତ୍ରାରେ ଏହି ନୀତି ହେଉଛି କନ୍ୟା ଖୋଜା ପର୍ବ ଯାହାକି ବ୍ରାହ୍ମଣ ସଂସ୍କୃତିର ପରିଚାୟକ । ମହାଦେବଙ୍କ ପିତା ଭାବରେ ଜଣେ ମୁରବୀଙ୍କୁ ପଡ଼ାର ଅନ୍ୟ ମୁରବୀମାନେ ଶଙ୍ଖ, ଘଣ୍ଟ, ଦୁଲଦୁଲି ବାଜା ଓ ଗଁଡ଼ିଆ (ମାଇଚିଆ)ମାନଙ୍କର ନାଚ ମଧ୍ୟରେ ଏକ ଶୋଭାଯାତ୍ରାରେ ନେଇ ଥାଳଉଠା ଦିନ ଧାର୍ଯ୍ୟ କନ୍ୟାପକ୍ଷ ଘରକୁ ଯାଇଥାନ୍ତି । ସେଠାରେ କନ୍ୟାପକ୍ଷ ସେମାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା କରି ଘରକୁ ପାଛୋଟି ନେଇ

ଆସିବାର କାରଣ ପଚାରନ୍ତି । ବରପକ୍ଷ ଶ୍ଳୋକ ମାଧ୍ୟମରେ ତାଙ୍କ ପୁତ୍ର ପାଇଁ କନ୍ୟା ଖୋଜି ବାହାରିଥିବା ଓ ଆପଣଙ୍କ ଘରେ ସର୍ବଗୁଣା ସଂପନ୍ନା ସୁନ୍ଦରୀ କନ୍ୟା ରହିଥିବା ଖବର ପାଇ ଆସିଛୁ ବୋଲି କହି ବିବାହ ପ୍ରସ୍ତାବ ଦିଅନ୍ତି । କନ୍ୟାପକ୍ଷ ବର ବିଷୟରେ ପଚାରନ୍ତି । ଶ୍ଳୋକ ମାଧ୍ୟମରେ ବରପକ୍ଷ କହନ୍ତି - ଆମ୍ଭପୁତ୍ର କୈଳାସ ଅଧିପତି, ଶ୍ମଶାନବାସୀ, ଦେହରେ ଭସ୍ମ ଓ ସର୍ପ ରୂପକ ଅଳଙ୍କାର ଧାରଣ କରନ୍ତି । ପବିତ୍ର ଗଙ୍ଗାଙ୍କୁ ମସ୍ତକରେ ବହନ କରନ୍ତି ଓ ତାଙ୍କ ମସ୍ତକରେ ଚନ୍ଦ୍ର ଶୋଭା ପାଆନ୍ତି । ସେ ହେଲେ ପରମପିତା ପରମେଶ୍ୱର । ତାଙ୍କଠାରୁ ଯୋଗ୍ୟପାତ୍ର ଆଉ କାହୁଁ ମିଳିବ । କନ୍ୟାପକ୍ଷ ଏଥିରେ ଆନନ୍ଦ ପ୍ରକାଶ କରି ବିବାହ ପ୍ରସ୍ତାବରେ ରାଜି ହୁଅନ୍ତି । ବରପକ୍ଷରୁ ସର୍ଗିପତ୍ର ପେଁଡି ଓ ପ୍ରସ୍ତାବ ପ୍ରଦାନ କରାଯାଏ । କନ୍ୟାପକ୍ଷ କନ୍ୟାମୂଲ୍ୟ ବାବଦରେ ଅର୍ଥ ପ୍ରଦାନ କରନ୍ତି । ନନ୍ଦପଡ଼ା ବମବରାଡ଼ ବାଲୁଙ୍କେଶ୍ୱର ବାବାଙ୍କ ପତରପେଁଡି ଜ୍ୟେଷ୍ଠ ପ୍ରତିପଦା, ଝାଡୁଆପଡ଼ାର ଲୋକନାଥ ବାବା ଓ ମୁଦିପଡ଼ାର ଜାଗେଶ୍ୱର ବାବାଙ୍କ 'ପତରପେଁଡି' ଜ୍ୟେଷ୍ଠ ତୃତୀୟା ତିଥିରେ ଅନୁଷ୍ଠିତ ହୋଇଥାଏ । ଏହିଦିନ ବିବାହ ତିଥି ଓ ଲଗ୍ନ ଗଣନା କରାଯାଇ ସ୍ଥିର କରାଯାଏ ।

ଶିବ-ପାର୍ବତୀଙ୍କ ବିବାହ ଉତ୍ସବର ଲଗ୍ନ ସ୍ଥିର ହେବାପରେ ନନ୍ଦପଡ଼ାର ଶ୍ରୀବାଲୁଙ୍କେଶ୍ୱର ଦେବଙ୍କ ପକ୍ଷରୁ ଶ୍ରୀନୃସିଂହ ମହାପ୍ରଭୁ ଜ୍ୟେଷ୍ଠ ଦ୍ୱିତୀୟା ତିଥିରେ, ଝାଡୁଆପଡ଼ାର ଶ୍ରୀଲୋକନାଥ ଦେବ ଓ ମୁଦିପଡ଼ାର ଶ୍ରୀଜାଗେଶ୍ୱର ବାବାଙ୍କ ପକ୍ଷରୁ ହନୁମାନ ଜ୍ୟେଷ୍ଠ ଚତୁର୍ଥୀ ତିଥିରେ ସମ୍ବଲପୁର ସହରର ଅଧିଷ୍ଠାତ୍ରୀ ଦେବୀ ସମଲେଶ୍ୱରୀ, ପାଟଣେଶ୍ୱରୀ ସମେତ ସମସ୍ତ ଦେବ, ଦେବୀଙ୍କୁ ବରପକ୍ଷ ପକ୍ଷରୁ ଗୁଆ, ହଳଦୀ, ଲୁଗା ଓ ମିଷ୍ଟାନ୍ନ ପ୍ରଦାନ କରି ଶିବ-ପାର୍ବତୀଙ୍କ ବିବାହରେ ଯୋଗଦେବା ପାଇଁ ଆମନ୍ତ୍ରଣ କରିଥାନ୍ତି । ନିଚ୍ଛକ ମଣିଷ ପଣିଆର ଶ୍ରେଣୀହୀନ ସଂପର୍କ ଓ ଦ୍ୱିଧାହୀନ ଆମନ୍ତ୍ରଣ ଶିବ-ପାର୍ବତୀଙ୍କ ମିଳନର ବାର୍ତ୍ତାବହ ବୋଲି କୁହାଯାଇପାରେ । ଶୀତଳଷଷ୍ଠୀ ଏପରି ଏକ ଯାତ୍ରା ଯେଉଁଠି ମାନବବାଦୀ ଚେତନାର ପ୍ରାବଲ୍ୟ ପରିସ୍ଫୁଟ । ଏତଦ୍‌ଦ୍ୱାରା ସମ୍ବଲପୁର ସହରର ବିଭିନ୍ନ ପଡ଼ା ବା ସାହି ମଧ୍ୟରେ ମଧୁର ସମନ୍ୱୟ ସଂସାଧିତ ହୋଇଥାଏ । ଏହା ସାଂସ୍କୃତିକ ଅଖଣ୍ଡତାର ଏକ ଅନନ୍ୟ ଝଙ୍କାର । ଅନ୍ୟ ଅର୍ଥରେ ବିଭିନ୍ନ ଗୋଷ୍ଠୀ ଓ ଜାତିର ଏକ ସମ୍ବନ୍ଧିତ ସୂତ୍ର । ଝାଡୁଆପଡ଼ା ଓ ମୁଦିପଡ଼ାର ଏହିନୀତିକୁ 'ଗୁଆଗୁଁଡ଼ା' କହନ୍ତି । ନନ୍ଦପଡ଼ାରେ ଏହି ନୀତିକୁ 'ଶ୍ରୀନୃସିଂହ-ନିଉତା' କୁହାଯାଏ । ହନୁମାନ ଏବଂ ଶ୍ରୀନୃସିଂହ ମହାପ୍ରଭୁଙ୍କ ଏହି ଅନୁପମ ନିଉତାଯାତ୍ରା ଜ୍ୟେଷ୍ଠ ଶୁକ୍ଳ ଦ୍ୱିତୀୟା ଓ ଚତୁର୍ଥୀ ଦୁଇଦିନ ଧରି ସମ୍ବଲପୁର ସହରର ଗଳିକନ୍ଦିକୁ ଉତ୍ସବ ମୁଖରିତ କରି ଗଢ଼ି ତୋଳେ । ଶୋଭାଯାତ୍ରାକୁ ଦେଖିଲେ ମନେହୁଏ ସମ୍ବଲପୁରର ସମସ୍ତ ଦେବ, ଦେବୀ ଓ ଧର୍ମଚେତନା ଶୀତଳଷଷ୍ଠୀ ଲୋକ ପରମ୍ପରାର ଉଦାର ଦୃଷ୍ଟଭଙ୍ଗୀ ଦ୍ୱାରା ଗୋଟିଏ ସୂତ୍ରରେ ଗ୍ରଥିତ । ଶିବ-ପାର୍ବତୀଙ୍କୁ ମାନବୀୟ ରୂପ ଦେଇ ଶୀତଳଷଷ୍ଠୀ ଯାତ୍ରାରେ ମୈତ୍ରୀ, ସଂହତି ଓ ବିଶ୍ୱଭ୍ରାତୃତ୍ୱର ଯେଉଁ ଝଲକ ଦେଖିବାକୁ ମିଳେ ତାହା ଏକ ମହାନ୍ ସଂସ୍କୃତିର ସ୍ମାରକୀ । ଶୀତଳଷଷ୍ଠୀରେ ପ୍ରଚଳିତ ଥାଳଉଠା, ଗଁଠଲହିଟା, ପତରପେଁଡି, ଗୁଆଗୁଁଡ଼ା ପ୍ରଭୃତି ନୀତିରୁ ବ୍ରାହ୍ମଣ ଓ ଆଦିବାସୀ ସଂସ୍କୃତିର ବିନିମୟ ତଥା ସମନ୍ୱୟ ହିଁ ସୂଚିତ ହୋଇଥାଏ ।

ଏହାପରେ ଜ୍ୟେଷ୍ଠ ଶୁକ୍ଳ ପଞ୍ଚମୀ ତିଥିରେ ଶିବ ମହାପ୍ରଭୁ ବରଯାତ୍ରୀଙ୍କ ସହିତ ନୃତ୍ୟ, ସଙ୍ଗୀତ ଓ ଆତସବାଜିର କଳରୋଳ ମଧ୍ୟରେ ଏକ ଶୋଭନୀୟ ଶୋଭାଯାତ୍ରାରେ ବୃଷଭ ପୃଷ୍ଠରେ ଆରୂଢ଼ ହୋଇ କନ୍ୟାଘରକୁ ଗମନ କରନ୍ତି । ସ୍ୱତନ୍ତ୍ର ଭାବେ ସଜ୍ଜିତ ବିବାହ ମଣ୍ଡପରେ ବୈଦିକ ରୀତିରେ ଶିବ-ପାର୍ବତୀଙ୍କ ବିବାହ କର୍ମ ସଂପାଦନ କରାଯାଏ । ପ୍ରକାଶ ଥାଉକି ଅବ୍ରାହ୍ମଣମାନଙ୍କ ସହଯୋଗ ତଥା ଉପସ୍ଥିତି ଏହି ଯାତ୍ରା ପରମ୍ପରାକୁ ମଳିନ ଅଥବା କଳୁଷିତ କରି ନାହିଁ । କାରଣ ଲୋକ ପରମ୍ପରା କାହାରି ବ୍ୟକ୍ତିଗତ ସଂପତ୍ତି ନୁହେଁ, କାହାରି ଇଚ୍ଛାଧୀନ ନୁହେଁ । ଏହା ଜନତାଙ୍କର, ସର୍ବସାଧାରଣଙ୍କର । ମନେହୁଏ ଏକ ବୃହତ୍ତର ସାଂସ୍କୃତିକ ଚେତନା ପ୍ରବାହରେ ଶୀତଳଷଷ୍ଠୀ ପରମ୍ପରା ହେଉଛି ଏକ ସଂଯୋଗ ସେତୁ । ତେଣୁ ଶୀତଳଷଷ୍ଠୀ ଏକ ଗଣପର୍ବ, ଅହଂକାର ସହିତ ଏହାର ସଂପର୍କ ନାହିଁ । ଅନୈକ୍ୟ ମଧ୍ୟରେ ଐକ୍ୟ, ବୈସାଦୃଶ୍ୟ ମଧ୍ୟରେ ସାଦୃଶ୍ୟ ପ୍ରତିଷ୍ଠା ହିଁ ଲୋକ ପରମ୍ପରାର ମୂଳଭିତ୍ତି । ସାଧାରଣ ଜାତି ବା ବର୍ଗର ଯେକୌଣସି ଦଂପତ୍ତି ଏହି ଅବସରରେ କନ୍ୟାର ପିତା, ମାତା ହେବାର ସୌଭାଗ୍ୟ ଲାଭ କରନ୍ତି ଏବଂ କନ୍ୟା ବିବାହରେ ଯେଉଁ ସାମଗ୍ରୀ ଆବଶ୍ୟକ ହୁଏ, ଠିକ୍ ସେହିଭଳି ଆୟୋଜନ କରନ୍ତି । ଯୌତୁକ ସ୍ୱରୂପ ଯଥାଶକ୍ତି ସ୍ୱର୍ଣ୍ଣ ଓ ରୌପ୍ୟ ଅଳଙ୍କାର ସହିତ ଅନ୍ୟାନ୍ୟ ଘରକରଣା ସାମଗ୍ରୀ ମଧ୍ୟ ପ୍ରଦାନ କରନ୍ତି । ନିଜ କନ୍ୟା ବିବାହ କଲାପରି ଶିବ-ପାର୍ବତୀଙ୍କ ବିବାହ ଅବ୍ରାହ୍ମଣ ହାତରେ ସମାପନ ହେବା ନୀତି ଅଶୁଦ୍ଧ ଅଥବା ଅପବିତ୍ର ବୋଲି ଅପଯଶ ବହନ କରିନାହିଁ । ତେଣୁ ସର୍ବସାଧାରଣରେ ଏହି ପରମ୍ପରା ଯେପର୍ଯ୍ୟନ୍ତ ରହିଛି ସେ ପର୍ଯ୍ୟନ୍ତ ବ୍ରାହ୍ମଣ-ଅବ୍ରାହ୍ମଣ ସମନ୍ୱୟାତମକ ଆଦର୍ଶକୁ ମଜବୁତ୍ କରିଛି ବୋଲି କୁହାଯାଇପାରେ । ଏକଦା ଅବ୍ରାହ୍ମଣ ବହୁଳ ସମ୍ବଲପୁର ଅଞ୍ଚଳରେ ବ୍ରାହ୍ମଣ ଗୋଷ୍ଠୀର ବ୍ରାତ୍ୟମାନଙ୍କ ଦ୍ୱାରା ବ୍ରାହ୍ମଣ ଓ ଅବ୍ରାହ୍ମଣମାନଙ୍କ ମଧ୍ୟରେ ସଂହତି ସ୍ଥାପନ ପୂର୍ବକ ସେମାନଙ୍କ ମଧ୍ୟରେ ଜାତିଆଣ ଭେଦଭାବକୁ ଲଘୁ କରିବା ପାଇଁ ଜାତିଆଣ ଭେଦଭାବର ବିଷମୟ ପରିଣତିକୁ ଏଡ଼େଇ ଏକ ଆଦର୍ଶ ସମ୍ବଲପୁର ସମାଜ ଗଠନ କରାଯାଇଛି । ଆଦର୍ଶ ସହିତ ଆଦର୍ଶର ସଂହତି ପ୍ରତିଷ୍ଠା ହିଁ ସମନ୍ୱୟର ମୁଖ୍ୟ ଅଭିଧାନ । ବ୍ରାହ୍ମଣ ଓ ଅବ୍ରାହ୍ମଣ ଭାବର ଅପୂର୍ବ ସମାହାର ଓ ସମୀକରଣର ଝଙ୍କାର ହେଉଛି ଶୀତଳଷଷ୍ଠୀ ଯାତ୍ରା । ତେଣୁ ଏହି ପରମ୍ପରା ହେଉଛି ସାମାଜିକ ଐକ୍ୟର ପ୍ରତୀକ । ଲୋକଯାତ୍ରା ପରମ୍ପରାର ଏହା ଏକ ବିଶେଷତ୍ୱ । କିନ୍ତୁ ବ୍ରାହ୍ମଣ ଓ ଅବ୍ରାହ୍ମଣ ଆଶ୍ରିତ ତଥା ସମର୍ଥିତ ପୂଜା ପରମ୍ପରାକୁ ଅବ୍ରାହ୍ମଣ ସମାଜର ପୃଷ୍ଠପୋଷକତା

ଏବଂ ସାମାଜିକ ସହାବସ୍ଥାନର ଭାବ ଏଥିରେ ପ୍ରତିଫଳିତ ହୋଇଛି ବୋଲି କହିବା ଅସଙ୍ଗତ ମନେହୁଏ ନାହିଁ । ସମନ୍ୱୟବାଦର ସଜ୍ଞା ଏହା ଅପେକ୍ଷା ଉତ୍କୃଷ୍ଟ କଣ ହୋଇପାରେ ? ପରିଣୟ ଉତ୍ସବ ପରେ ଜ୍ୟେଷ୍ଠ ଶୁକ୍ଳ ଷଷ୍ଠୀ ତିଥିରେ ମହାଦେବ ପାର୍ବତୀଙ୍କୁ ସାଙ୍ଗରେ ନେଇ ଏକ ବିରାଟ ଶୋଭଯାତ୍ରାରେ ନିଜ ଦେବାଳୟକୁ ବାହୁଡ଼ିଥାନ୍ତି ।

ଶୀତଳଷଷ୍ଠୀ ଯାତ୍ରାର ରାଜନୈତିକ ପୃଷ୍ଠଭୂମି ଅନ୍ୟପ୍ରକାର ମନେହୁଏ । ଷଷ୍ଠଦଶ ଶତାବ୍ଦୀର ମଧ୍ୟଭାଗରେ ଯେତେବେଳେ ବଳରାମ ଦେବ ସମ୍ବଲପୁର ଗଡ଼ର ରାଜା ଥିଲେ ସେତେବେଳେ ସେ ପୁରୀ ଗଜପତି ମହାରାଜା ଶ୍ରୀରାମଚନ୍ଦ୍ର ଦେବ (ପ୍ରଥମ)ଙ୍କୁ ଯବନମାନଙ୍କ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ସାହାଯ୍ୟ କରିଥିଲେ । ଏହି ବଂଶରେ ସପ୍ତଦଶ ଶତାବ୍ଦୀର ମହାରାଜା ବଳିଆର ସିଂ ବିଶେଷ ପରାକ୍ରମଶାଳୀ ଥିଲେ । ତାଙ୍କ ପରାକ୍ରମ ଏବଂ ସାହସିକତାକୁ ମାନ୍ୟତା ପ୍ରଦାନ କରି ପୁରୀ ଗଜପତି ମହାରାଜା ତାଙ୍କୁ 'ହୀରାଖଣ୍ଡ ଛତ୍ରପତି ମହାରାଜା' ଉପାଧି ପ୍ରଦାନ କରିଥିଲେ । ଏଥିରୁ ଗୋଟିଏ କଥା ସୁସ୍ପଷ୍ଟ ଜଣାପଡ଼େ ଯେ ଶ୍ରୀକ୍ଷେତ୍ର ପୁରୀ ସହିତ ସମ୍ବଲପୁର ରାଜ୍ୟର ସଂପର୍କ ଅତି ପୁରୁଣା । ସଂପର୍କ କେବଳ ରାଜନୈତିକ ସ୍ତରରେ ସୀମିତ ନଥିଲା, ଉଭୟ ଅଞ୍ଚଳ ମଧ୍ୟରେ ସାମାଜିକ, ଧାର୍ମିକ ଓ ସାଂସ୍କୃତିକ ସଂପର୍କର ଦିଗଗୁଡ଼ିକ ମଧ୍ୟ ଉନ୍ମୋଚିତ ହୋଇଥିଲା । ଉଦାହରଣ ସ୍ୱରୂପ ସପ୍ତଦଶ ଶତାବ୍ଦୀରେ ରାଜା ମଧୁକର ସାଏଙ୍କ ଚତୁର୍ଥ ପୁତ୍ର ବଂଶୀ ଗୋପାଳ ସମ୍ବଲପୁର ସହରରେ ଏବଂ ସୋନପୁରରେ ଅବସ୍ଥିତ ଗୋପାଳଜୀ ମଠ ଏବଂ ଶ୍ରୀକ୍ଷେତ୍ର ପୁରୀଠାରେ ରାମଜୀ ମଠ ପ୍ରତିଷ୍ଠା କରିଥିଲେ । ପୁନଶ୍ଚ ସମ୍ବଲପୁର ସହରରେ ଅବସ୍ଥିତ ଗୋପାଳଜୀ ମଠରେ ସନ୍ନ୍ୟାସ ଜୀବନ ଯାପନ କରି ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ । ସମ୍ବଲପୁର ଓ ସୋନପୁର ଅଞ୍ଚଳରୁ ଯେଉଁ ଭକ୍ତ ଓ ଯାତ୍ରୀମାନେ ଶ୍ରୀଜଗନ୍ନାଥଙ୍କ ଦର୍ଶନାର୍ଥେ ଶ୍ରୀକ୍ଷେତ୍ରକୁ ଆସୁଥିଲେ ସେମାନେ ରାମଜୀ ମଠରେ ଆଶ୍ରମ ନେଉଥିଲେ । ଅଷ୍ଟାଦଶ ଶତାବ୍ଦୀରେ ଏହି ରାଜବଂଶର ରାଜା ଛତ୍ରସାଏ ଅନୁଗୁଳ ଓ ଭୀମନଗରୀ (ବର୍ତ୍ତମାନର ତାଳଚେର ଓ ହିନ୍ଦୋଳ) ଆକ୍ରମଣ କରି ଜୟ କରିଥିଲେ । ପରେ ଗଜପତି ମହାରାଜାଙ୍କ ଅନୁରୋଧକ୍ରମେ ରାଜା ଛତ୍ରସାଏ ତାଙ୍କ ଅଧିକାର ତ୍ୟାଗ କରି ଦେଇଥିଲେ । ରାଜା ଛତ୍ରସାଏ ତାଙ୍କ ଜୀବନର ଶେଷକାଳ ଶ୍ରୀକ୍ଷେତ୍ର ପୁରୀରେ କଟାଇଥିବାର ଜନଶ୍ରୁତି ରହିଛି ।

ରାଜା ଛତ୍ରସାଏଙ୍କ ପୁତ୍ର ରାଜା ଅଜିତ ସିଂ ମଧ୍ୟ ଜଣେ ବିଷ୍ଣୁଭକ୍ତ ଥିଲେ ଏବଂ ବର୍ଷର ଅଧିକାଂଶ ସମୟ ଶ୍ରୀକ୍ଷେତ୍ର ପୁରୀରେ କଟାଉଥିଲେ ବୋଲି ମଧ୍ୟ ଜନଶ୍ରୁତି ରହିଛି । ସେ ବ୍ରାହ୍ମଣ ସଂସ୍କୃତିର ଉଦାର ପୃଷ୍ଠପୋଷକ ଥିଲେ ଏବଂ ପୁରୀରୁ କେତେକ ନୈଷ୍ଠିକ ବ୍ରାହ୍ମଣ ପରିବାରଙ୍କୁ ଆଣି ନିଜ ନାମରେ ନାମିତ ଅଜିତପୁର ଶାସନ ବା ଆଧୁନିକ ଶାସନ ପ୍ରତିଷ୍ଠା କରିଥିଲେ । ଏଠାରେ ପ୍ରକାଶଯୋଗ୍ୟ ଯେ ଆତ୍ମପ୍ରୀତି ଏକ ମାନବୀୟ ଦୁର୍ବଳତା । ରାଜା, ଗଉଁତିଆ, ଜମିଦାରମାନଙ୍କ କ୍ଷେତ୍ରରେ ଏହାର ପରିମାଣ ବେଶୀ ଲକ୍ଷ୍ୟ କରାଯାଏ । ଅଧିକାଂଶ ଲୋକ ବହୁ ସମୟରେ ନିଜ ସଂପର୍କରେ ଭାବ ଧାରଣା ପୋଷଣ କରନ୍ତି । ଦୁର୍ଗୁଣ ତୁଳନାରେ ତାଙ୍କର ଯଥେଷ୍ଟ ଅଧିକ ସୁଗୁଣ ରହିଥିବାର ବିଶ୍ୱାସ ରଖନ୍ତି । ଅନ୍ୟମାନେ ସେମାନଙ୍କୁ ପ୍ରଶଂସା କରନ୍ତି ବୋଲି ଧରି ନିଅନ୍ତି ଏବଂ ଆତ୍ମତୋଷାମଦକୁ ଭଲ ପାଆନ୍ତି । ସମ୍ଭବତଃ ଚୌହାଣ ଶାସନ କାଳରେ ଶ୍ରୀକ୍ଷେତ୍ର ପୁରୀର ପୁରୁଷୋତ୍ତମପୁର, ବୀରରାମଚନ୍ଦ୍ରପୁର, ପ୍ରତାପରାମଚନ୍ଦ୍ରପୁର, ଶ୍ରୀମୁକୁନ୍ଦପୁର, ଓଷଣା, ବରପଦା ପ୍ରଭୃତି ବ୍ରାହ୍ମଣ ଶାସନରୁ ବ୍ରାହ୍ମଣମାନେ ସମ୍ବଲପୁର ଅଞ୍ଚଳକୁ ଆସି ରାଜ୍ୟ ଗଠନ (State Formation) ପ୍ରକ୍ରିୟାରେ ସହାୟକ ହୋଇଥିଲେ । ଏଠାର ରାଜା, ଗଉଁତିଆ ଓ ଜମିଦାରମାନଙ୍କ ଗୁଣଗାନ ପୂର୍ବକ କାବ୍ୟାଦି ରଚନା କରି ସେମାନଙ୍କ ଦ୍ୱାରା ଅନୁଗୃହୀତ ହୋଇ ସମ୍ବଲପୁର ଅଞ୍ଚଳରେ ବସତି ସ୍ଥାପନ କରିଥିଲେ । ସମ୍ବଲପୁର ଗଡ଼ଜାତ ଶାସକମାନେ ଗ୍ରାମାଦି ଦାନ କରି ସେମାନଙ୍କୁ ନିଜ ଦରବାରରେ ସମ୍ମାନିତ ମଧ୍ୟ କରିଥିଲେ ଏବଂ ସେହିମାନଙ୍କ ଦ୍ୱାରା ସର୍ବପ୍ରଥମେ ଆଦିବାସୀ ତଥା ଅବ୍ରାହ୍ମଣ ବହୁଳ ସମ୍ବଲପୁର ଅଞ୍ଚଳରେ ଶାସ୍ତ୍ର ମତରେ ଶୀତଳଷଷ୍ଠୀ ଯାତ୍ରାର ଆୟୋଜନ ହୋଇଥିଲା । ବ୍ରାହ୍ମଣ ଓ ଅବ୍ରାହ୍ମଣମାନଙ୍କ ମିଳିତ ଉଦ୍ୟମରେ/ପ୍ରଚେଷ୍ଟାରେ ଏହା ଆୟୋଜନ ହେବା ଦ୍ୱାରା ସେମାନଙ୍କ ମଧ୍ୟରେ ମଧୁର ସମନ୍ୱୟ ଓ ସଂପର୍କ ସଂସାଧିତ ହୋଇଥିଲା ଯାହାକି ଏକ ଶାନ୍ତିପୂର୍ଣ୍ଣ ସମାଜ ଗଠନପାଇଁ ଅପରିହାର୍ଯ୍ୟ । ଏହି ଦୃଷ୍ଟିରୁ ଏକଦା ସମଗ୍ର ସମ୍ବଲପୁର ଗଡ଼ଜାତ ଅଞ୍ଚଳରେ ଧର୍ମ ସଂସ୍କୃତିଗତ ଐକ୍ୟ ତଥା ସଂହତି ପ୍ରତିଷ୍ଠା ଶୀତଳଷଷ୍ଠୀ ପରମ୍ପରାର ମୌଳିକ ବିଭାବ ।

ଲୋକମୁଖରୁ ଶୁଣାଯାଏ ଯେ ସର୍ବପ୍ରଥମେ ସମ୍ବଲପୁର ବାଲିବନ୍ଧାଠାରେ ଥିବା ସାମିଆ ବା ସୋମନାଥଙ୍କ ପୀଠରେ ଶୀତଳଷଷ୍ଠୀ ଉତ୍ସବ ନିକଟସ୍ଥ ହୋତାପଡ଼ା ଏବଂ କୁଞ୍ଜେଲପଡ଼ାର ବାସିନ୍ଦାମାନଙ୍କ ସହାୟତା ଓ ସହଯୋଗରେ ଆୟୋଜିତ ହେଉଥିଲା । ଏହି ମନ୍ଦିରଟି ରାଜା ବଳଭଦ୍ର ଦେବଙ୍କ ରାଜତ୍ୱ କାଳରେ ନିର୍ମିତ ହୋଇଥିବାର କିମ୍ବଦନ୍ତୀ ଶୁଣାଯାଏ । ବଳଭଦ୍ର ଦେବ ଜଣେ ପ୍ରତାପୀ ରାଜା ଏବଂ ଶିବଭକ୍ତ ଥିଲେ । ପ୍ରତିଦିନ ସକାଳେ ସେ ମାନେଶ୍ୱରଠାରେ ସ୍ଥିତ ମାନଧାତାବାବାଙ୍କୁ ଦର୍ଶନ କରୁଥିଲେ । ଏକଦା ଏହି ପୀଠ ନିକଟ ଦେଇ ପ୍ରବାହିତ ମାଳତୀ ଯୋରରେ ବଢ଼ିପାଣି ଆସିବାରୁ ରାଜା ଯୋରପାରି ହୋଇନପାରି ବାବାଙ୍କୁ ଦର୍ଶନକରି ପାରିଲେ ନାହିଁ । ବଢ଼ିପାଣି ଅପସରିବା ପରେ ଯୋରପାରି ହୋଇ ବାବାଙ୍କୁ ଦର୍ଶନ କଲାପରେ ଯାଇ ନିଜ ଗଡ଼କୁ ପ୍ରତ୍ୟାବର୍ତ୍ତନ କରିବା ପାଇଁ ମନେ ମନେ କାମନା କରି ରାଜା ତିନିଦିନ କାଳ ଅଖିଆ ଅପିଆ ମାଳତୀ ଯୋର କୂଳରେ ଅଟକି ରହିଲେ । କିନ୍ତୁ ବଢ଼ିପାଣି କମିଲା ନାହିଁ । ରାଜାଙ୍କ ଦୃଢ଼ ମନୋବଳ, ନିଷ୍ଠା ଓ ଭକ୍ତି ଦେଖି ମହାଦେବ ରାଜାଙ୍କୁ ସ୍ୱପ୍ନାଦେଶ ଦେଲେ, ମୁଁ ତୋ' ଗଡ଼ ଭିତରେ ଆବିର୍ଭାବ ହେବି । ଏଣିକି

ତୁ ଏଠାକୁ ଆସି ସେଠି ମୋତେ ପୂଜା କରିବୁ । ମନର ବିଧାତା ମାନଧାତା ବାବା ରାଜାଙ୍କ ମନସ୍କାମନା ପୂର୍ଣ୍ଣ କରିଥିବାରୁ ମହାପ୍ରଭୁ ଏଠି ମାନେଶ୍ୱର ନାମରେ ପରିଚିତ ହେଲେ । ତା'ପରେ ରାଜା ସୋମନାଥ ଦେବଙ୍କୁ ବାଲିବନ୍ଧାଠାରେ ଠାବକରି ସେଠାରେ ଦେଉଳଟିଏ ନିର୍ମାଣ କଲେ । ଦେବତା ପ୍ରତିଷ୍ଠା ସହିତ ଦେବତାଙ୍କ ସେବାପୂଜା ନିମିତ୍ତ ସାର୍ଥକ ବ୍ୟବସ୍ଥା ଗ୍ରହଣ କରିବା ଅପରିହାର୍ଯ୍ୟ । ତେଣୁ ଠାକୁରଙ୍କ ଦୈନନ୍ଦିନ ପୂଜା ନିମିତ୍ତ ରାଜା ଜଣେ ହୋତା ବ୍ରାହ୍ମଣଙ୍କୁ ନିଯୁକ୍ତ କଲେ । ଯାହା ମନେହୁଏ, ତାଙ୍କ ଉଦ୍ୟମରେ ଶୀତଳଷଷ୍ଠୀ ଉତ୍ସବ ସର୍ବପ୍ରଥମେ ସାମିଆ ମନ୍ଦିରରେ ପାଳିତ ହେଉଥିଲା । ଅଧୁନା ଏଠାରେ ସାର୍ବଜନୀନ ଉତ୍ସବ ବନ୍ଦ ହୋଇ କେବଳ ଶିବ-ପାର୍ବତୀ ବିବାହ ରୀତି ଅନୁସୃତ ହେଉଥିବାର ସୂଚନା ମିଳେ ।

ନନ୍ଦପଡ଼ାର ଶୀତଳଷଷ୍ଠୀ ଉତ୍ସବ ସଂପର୍କରେ ଶୁଣାଯାଏ ଯେ, ପୁରୀ ଶ୍ରୀକ୍ଷେତ୍ର ନିକଟସ୍ଥ ବୀରରାମଚନ୍ଦ୍ରପୁର ନାମକ ବ୍ରାହ୍ମଣ ଶାସନରେ ଜନୈକ ଜଗନ୍ନାଥ ମିଶ୍ର ବାସ କରୁଥିଲେ । ପାଟଣାଗଡ଼ରେ ପ୍ରତିଷ୍ଠିତ ଚୌହାଣ ରାଜବଂଶର ରାଜଗୁରୁ ଭାବେ ସେ ପ୍ରତିଷ୍ଠା ପାଇଥିଲେ । ପରବର୍ତ୍ତୀ କାଳରେ ଷଷ୍ଠଦଶ ଶତାବ୍ଦୀର ମଧ୍ୟଭାଗରେ ଏହି ରାଜବଂଶର ବଳରାମ ଦେବ ପାଟଣାଗଡ଼ରୁ ସମ୍ବଲପୁରକୁ ଆସି ଏକ ସ୍ୱତନ୍ତ୍ର ସ୍ୱାଧୀନ ସମ୍ବଲପୁର ରାଜ୍ୟ ପ୍ରତିଷ୍ଠା କରିଥିଲେ ଏବଂ ପାଟଣାଗଡ଼ ରାଜଗୁରୁ ବଂଶର ତ୍ରିବିକ୍ରମ ମିଶ୍ରଙ୍କୁ ସମ୍ବଲପୁର ରାଜ୍ୟର ରାଜଗୁରୁ କରି ଆଣିଥିଲେ । ପରବର୍ତ୍ତୀ କାଳରେ ସେ ତ୍ରିବିକ୍ରମ ଗୁରୁ ନାମରେ ପରିଚିତ ହେଲେ ଏବଂ ସେ ଯେଉଁଠି ବସତି ସ୍ଥାପନ କଲେ ତାହା ଗୁରୁପଡ଼ା ନାମରେ ନାମିତ ହେଲା ବୋଲି ଶୁଣାଯାଏ । ତ୍ରିବିକ୍ରମଙ୍କର ଦୁଇକନ୍ୟା ଥିଲେ । ପରିଣୟ ବୟସ ଉପନୀତ ହେବାରୁ ଅବ୍ରାହ୍ମଣ ବହୁଳ ସମ୍ବଲପୁର ରାଜ୍ୟରେ ସେମାନଙ୍କ ପାଇଁ ବ୍ରାହ୍ମଣ ଜାତିରୁ ସୁଯୋଗ୍ୟ ବରପାତ୍ର ଖୋଜିବା କଷ୍ଟସାଧ୍ୟ ଥିଲା । ପରିଶେଷରେ ଶ୍ରୀକ୍ଷେତ୍ର ପୁରୀ ନିକଟସ୍ଥ ବ୍ରାହ୍ମଣ ଶାସନ ଓଷଣା ବରପଦା ଶ୍ରୀମୁକୁନ୍ଦପୁର ନିବାସୀ ଜନୈକ ବାସୁଦେବ ନନ୍ଦ ତ୍ରିବିକ୍ରମ ଗୁରୁଙ୍କ ଏକ କନ୍ୟାଙ୍କ ପାଣିଗ୍ରହଣ କରିଥିଲେ ଏବଂ ସମ୍ବଲପୁରକୁ ଆସି ମହାନଦୀ କୂଳେ ବସତି ସ୍ଥାପନ କଲେ । ସମୟାନୁକ୍ରମେ ସେଠି ଯେଉଁ ବ୍ରାହ୍ମଣ ବସତି ଗଢ଼ି ଉଠିଲା, ତାହା ନନ୍ଦପଡ଼ା ନାମରେ ପରିଚିତ ହେଲା । ପ୍ରସଙ୍ଗକ୍ରମେ ଏଠାରେ ଉଲ୍ଲେଖନୀୟ ଯେ, ଶ୍ରୀକ୍ଷେତ୍ର ପୁରୀର ବ୍ରାହ୍ମଣ ଶାସନମାନଙ୍କରେ ଅଦ୍ୟାବଧି ଶୀତଳଷଷ୍ଠୀ ପର୍ବ ପାଳିତ ହୋଇଥାଏ । ୧୬ଶ ଶତାବ୍ଦୀ ପ୍ରାରମ୍ଭରୁ ଶିବ-ପାର୍ବତୀ ବିବାହ ଓ ଶୀତଳଷଷ୍ଠୀ ପର୍ବ ପୁରୀ ଜିଲ୍ଲାର ବିଶେଷ କରି ଓଡ଼ିଶାର ଗଜପତି ଶାସନରେ ପ୍ରତିଷ୍ଠିତ ବିଭିନ୍ନ ବ୍ରାହ୍ମଣ ଶାସନରେ ମହାସମାରୋହରେ ପାଳିତ ହୋଇ ଆସୁଥିବାର ଜଣାପଡ଼େ । ବୀରହରେକୃଷ୍ଣପୁର, ବୀରଗୋବିନ୍ଦପୁର, ବୀରନରସିଂହପୁର, ବୀରପୁରୁଷୋତ୍ତମପୁର, ବୀରବଳଭଦ୍ରପୁର, ରାଉତରାପୁର, ବୀରରାମଚନ୍ଦ୍ରପୁର ପ୍ରଭୃତି ଷୋହଳ ପ୍ରମୁଖ ବ୍ରାହ୍ମଣ ଶାସନ ଏବଂ କରବାଡ଼ରେ ଏହି ପର୍ବର ସ୍ୱତନ୍ତ୍ର ଆକର୍ଷଣ ରହିଛି । ପ୍ରତ୍ୟେକ ବ୍ରାହ୍ମଣ ଶାସନର ପୂର୍ବରେ ଶିବ ଓ ପଶ୍ଚିମରେ ଦୁର୍ଗା, ପାର୍ବତୀ ରହିଥିବାର ଜଣାଯାଏ । ଶୀତଳଷଷ୍ଠୀ ସମୟରେ ବ୍ରାହ୍ମଣ ଶାସନଗୁଡ଼ିକ ଦୁଇଭାଗରେ ବିଭକ୍ତ ହୋଇଯାଏ । ଗୋଟିଏ ଖଣ୍ଡ ବରପକ୍ଷ ଏବଂ ଅନ୍ୟ ଖଣ୍ଡ କନ୍ୟାପକ୍ଷର ଭୂମିକା ନିର୍ଭେଇଥାନ୍ତି । ଗ୍ରାମର ବରିଷ୍ଠ ବ୍ରାହ୍ମଣ ଦମ୍ପତିମାନେ ଶିବ-ପାର୍ବତୀଙ୍କ ପିତା-ମାତା ଭାବେ ସମସ୍ତ ବିବାହ କର୍ମ ସଂପାଦନ କରିଥାନ୍ତି । ବିବାହ ପରେ ଶୀତଳଷଷ୍ଠୀ ଦିନ ବରକନ୍ୟା (ଶିବ-ପାର୍ବତୀ) ସାଧାରଣଙ୍କ ଦର୍ଶନ ପାଇଁ ଗ୍ରାମ ପରିଦର୍ଶନରେ ବାହାରନ୍ତି ।

ଉପରୋକ୍ତ ବାସୁଦେବ ନନ୍ଦଙ୍କ ପୈତୃକ ଗ୍ରାମରେ ସ୍ଥିତ ଶ୍ରୀବାଲୁଙ୍କେଶ୍ୱର ଦେବଙ୍କ ପୀଠରେ ଶୀତଳଷଷ୍ଠୀ ଯାତ୍ରା ଆୟୋଜନ ହେଉଥିଲା । ସମ୍ବଲପୁରକୁ ଆଗମନ ପରେ ତାହାଁର ପ୍ରଭାବରେ ମହାନଦୀ କୂଳେ ନନ୍ଦପଡ଼ାରେ ଶ୍ରୀବାଲୁଙ୍କେଶ୍ୱର ମହାଦେବଙ୍କ ପୀଠ ପ୍ରତିଷ୍ଠା ହେଲା ଓ ଶାସ୍ତ୍ରାନୁମୋଦିତ ଶୀତଳଷଷ୍ଠୀ ଯାତ୍ରାର ଶୁଭାରମ୍ଭ ହେଲା । ତେଣୁ ଏହି ଦୃଷ୍ଟିରୁ ବିଚାର କଲେ ସମ୍ବଲପୁରରେ ପାଳିତ ହେଉଥିବା ଶୀତଳଷଷ୍ଠୀ ଯାତ୍ରାର ସଂପର୍କ ଶ୍ରୀକ୍ଷେତ୍ର ପୁରୀ ସହିତ ରହିଛି ବୋଲି କୁହାଯାଇପାରେ । ପରବର୍ତ୍ତୀ କାଳରେ ଠେମରା ଗ୍ରାମର ଜନୈକ ଦିବ୍ୟସିଂହ ମିଶ୍ର ନନ୍ଦପଡ଼ାସ୍ଥିତ ଶ୍ରୀବାଲୁଙ୍କେଶ୍ୱର ମନ୍ଦିର ପ୍ରତିଷ୍ଠା କରିଥିବାର ଜନଶ୍ରୁତି ରହିଛି । ଆଉ କେତେଜଣଙ୍କ ମତରେ ଅଭୟ ସିଂହଙ୍କ ରାଜତ୍ୱ କାଳରେ ଜନୈକ ବାବାଜୀ ବଳରାମ ଦାସଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଏଠାରେ ଶ୍ରୀବାଲୁଙ୍କେଶ୍ୱର ଦେବଙ୍କ ମନ୍ଦିର ପ୍ରତିଷ୍ଠା ହୋଇଥିଲେ ହେଁ ଦେବାନ ଆକବର ରାୟ ଏହାକୁ ନିର୍ମାଣ କରିଥିଲେ ବୋଲି ଶୁଣାଯାଏ । ପ୍ରକାଶ ଥାଉକି ରାଜା ଅଜିତ ସିଂ ସମ୍ବଲପୁର ରାଜ୍ୟର ନାମକୁ ମାତ୍ର ଶାସକ ଥିଲେ । ତାଙ୍କ ଶାସନ କାଳରେ ପ୍ରଥମେ ଦେବାନ ଦକ୍ଷିଣ ରାୟ ଓ ପରେ ଦେବାନ ଆକବର ରାୟ ପରୋକ୍ଷ ଭାବେ ସମ୍ବଲପୁରର ଶାସକ ଥିଲେ । ଅଜିତ ସିଂଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ଅଭୟ ସିଂ ଯେତେବେଳେ ରାଜ ସିଂହାସନ ଆରୋହଣ କଲେ ସେ ଦେବାନ ଆକବର ରାୟଙ୍କୁ ପ୍ରତ୍ୟକ୍ଷ ଭାବେ ବିରୋଧ କଲେ । ଏତଦ୍‌ଦ୍ୱାରା ଗୃହଯୁଦ୍ଧ ଓ ହିଂସାକାଣ୍ଡ ଘଟି ସମ୍ବଲପୁରରେ ଘୋର ଅରାଜକତା ସୃଷ୍ଟି ହୋଇଥିଲା ଏବଂ ସାମାଜିକ ବିଶୃଙ୍ଖଳା, ଗୋଷ୍ଠୀ ବିବାଦ ଚରମସୀମାରେ ଯାଇ ପହଞ୍ଚିଥିଲା । ଦେବାନ ଆକବର ରାୟ ଅଭୟ ସିଂଙ୍କ ବିଶ୍ୱସ୍ତ ଲୋକମାନଙ୍କୁ ହତ୍ୟା କଲେ ଏବଂ ଅଭୟ ସିଂଙ୍କୁ ବନ୍ଦୀ କଲେ । ତା'ପରେ ନିଜକୁ ସମ୍ବଲପୁର ରାଜ୍ୟର ରାଜା ବୋଲି ଘୋଷଣା କଲେ । ପରେ ରାଜା ଅଜିତ ସିଂଙ୍କ ବିଧବା ରାଣୀଙ୍କୁ ମଧ୍ୟ ହତ୍ୟା କଲେ । ଏହିପରି ଭାବରେ ଦେବାନ ଆକବର ରାୟ ସମ୍ବଲପୁର ଗଡ଼ର ଶାସନକୁ ନିଜ କରମୁଠାରେ ରଖିବାକୁ ସକ୍ଷମ ହୋଇଥିଲେ । ସମ୍ଭବତଃ ନିଜର ସ୍ଥିତିକୁ ସୁଦୃଢ଼ କରିବା ପାଇଁ ଏବଂ ବ୍ରାହ୍ମଣମାନଙ୍କର ସମର୍ଥନ ଓ ଅନୁମୋଦନ ହାସଲ କରିବା ପାଇଁ ଦେବାନ ଆକବର

ରାୟଙ୍କ ଦ୍ୱାରା ବ୍ରାହ୍ମଣ ପୂଜିତ ଶ୍ରୀବାଲୁଙ୍କେଶ୍ୱର ଦେବଙ୍କ ମନ୍ଦିର ନିର୍ମିତ ହେବା ଘଟଣା ଅତି ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଏହିପରି ଅନୁକୂଳ ପରିବେଶ ଓ ପରିସ୍ଥିତିରେ ରାଜପୃଷ୍ଠପୋଷକତା ଲାଭ କରି ବ୍ରାହ୍ମଣ ଆଶ୍ରିତ ଓ ସମର୍ଥିତ ଶୀତଳଷଷ୍ଠୀ ଯାତ୍ରା ଆହୁରି ପ୍ରତିଭାତ ହୋଇ କ୍ରମେ ସବୁରି ହୃଦୟକୁ ଏକ ମହାନ ଭାବଧାରାରେ ଅନୁପ୍ରାଣିତ କରି ଆସିଛି । କାଳକ୍ରମେ ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ଏହା ସମସ୍ତଙ୍କୁ ଆବୋରି ନେଇ ଏକ ଗଣପର୍ବ ରୂପେ ପ୍ରକାଶିତ ଓ ପ୍ରତିଷ୍ଠିତ ହୋଇଛି ବୋଲି କୁହାଯାଇପାରେ ।

ନନ୍ଦପଡ଼ାରେ ଶୀତଳଷଷ୍ଠୀ ଯାତ୍ରା ଆରମ୍ଭ ହେବାର କିଛିବର୍ଷ ପରେ ସମ୍ବଲପୁର ସହରର ଝାଡୁଆପଡ଼ାଠାରେ ଶ୍ରୀଲୋକନାଥଙ୍କ ମନ୍ଦିର ନିର୍ମିତ ହୋଇ ସେଠାରେ ମଧ ଶୀତଳଷଷ୍ଠୀ ଯାତ୍ରାର ଆୟୋଜନ କରାଗଲା । ପ୍ରସଙ୍ଗକ୍ରମେ ଏଠାରେ ସୂଚନାଯୋଗ୍ୟ ଯେ, ସମ୍ବଲପୁର ଦୁଇ ମୁଖ୍ୟ ବ୍ରାହ୍ମଣ ଗୋଷ୍ଠୀ ମଧ୍ୟରୁ ଆରଣ୍ୟକ (ଝାଡୁଆ) ବ୍ରାହ୍ମଣମାନେ ଝାଡୁଆପଡ଼ାରେଏବଂ ଉତ୍କଳୀୟ (ଓଡ଼ିଆ) ବ୍ରାହ୍ମଣମାନେ ନନ୍ଦପଡ଼ାରେ ଶତାଧିକ ବର୍ଷଧରି ପୁରୁଷାନୁକ୍ରମେ ନିଜକୁ ଶ୍ରେଷ୍ଠ ବୋଲି ମନେ କରିବା ଏବଂ ଏହି ଭାବନା ନନ୍ଦପଡ଼ା ଓ ଝାଡୁଆପଡ଼ାର ଶୀତଳଷଷ୍ଠୀ ଯାତ୍ରାରେ ପ୍ରତିଯୋଗିତାମୂଳକ ତତ୍ପରତା ମାଧ୍ୟମରେ ପ୍ରକାଶ ପାଉଥିବା ବିଷୟ ବୟୋଜ୍ୟେଷ୍ଠ ବ୍ୟକ୍ତିଙ୍କ ମୁଖରୁ ଶୁଣିବାକୁ ମିଳେ । ଏହି ବିଷୟ ସମ୍ବଲପୁର ଗେଜେଟିୟର ପୃଷ୍ଠା-୧୧୨ରୁ ମଧ ସୂଚନା ମିଳିଥାଏ । ପରବର୍ତ୍ତୀ ପର୍ଯ୍ୟାୟରେ ବୋଧହୁଏ ସ୍ୱାଧୀନୋତ୍ତର କାଳରେ ମୁଦିପଡ଼ାର ଶ୍ରୀଯୋଗେଶ୍ୱର ବାବା ଏବଂ ଦଶମତି କଲୋନୀର ଶିବ ମନ୍ଦିରରେ ଶିବ-ପାର୍ବତୀ ବିବାହ ସାର୍ବଜନୀନ ଆକାରରେ ଆୟୋଜନ କରାଯାଉଅଛି । ଏହି ଭାବରେ ବର୍ତ୍ତମାନ ସମ୍ବଲପୁର ସହରର ଚାରିଗୋଟି ମହାଦେବ ମନ୍ଦିରରେ ଶୀତଳଷଷ୍ଠୀ ଯାତ୍ରା ଆନୁଷ୍ଠାନିକ ଭାବରେ ବୈଦିକ ରୀତିରେ ପାଳନ କରାଯାଉଥିବାର ଦୃଷ୍ଟାନ୍ତ ଦେଖିବାକୁ ମିଳେ । ସମ୍ବଲପୁର ସହରରେ ଶୀତଳଷଷ୍ଠୀ ଯାତ୍ରା ଅୟମାରମ୍ଭର ନିର୍ଦ୍ଦିଷ୍ଟ ଇତିହାସ ଯଦିଓ ପରିଷ୍କୃତ ନୁହେଁ ତଥାପି ବିଗତ ପ୍ରାୟ ଚାରିଶତ ବର୍ଷକାଳ ଧରି ନିରବଚ୍ଛିନ୍ନ ଭାବେ ଏହି ପରମ୍ପରା ଲୋକ ଜୀବନକୁ ପରିପ୍ଳୁତ କରି ଆସୁଅଛି ବୋଲି ପରୋକ୍ଷରେ କୁହାଯାଇପାରେ ।

ସର୍ବୋପରି ଶୀତଳଷଷ୍ଠୀ ପରି ଲୋକଯାତ୍ରା ପରମ୍ପରା ଅପରିଣାମଦର୍ଶିତାର ପରିଚୟ ବୋଲି ମନେହୁଏ ନାହିଁ କିମ୍ବା ଏହାର ଆରମ୍ଭ ଅକସ୍ମାତ ହୋଇ ବୋଲି କୁହାଯାଇନପାରେ । ଶୀତଳଷଷ୍ଠୀ ପରମ୍ପରା ହିଁ ଆର୍ଯ୍ୟ ଆର୍ଯ୍ୟୋତ୍ତର ସଂସ୍କୃତିର ସମନ୍ୱିତ ରୂପ । ବର୍ତ୍ତମାନ ସୁଦ୍ଧା ହୋଇଥିବା ଆଲୋଚନା ଓ ତଥ୍ୟକୁ ପର୍ଯ୍ୟବସିତ କରି କୁହାଯାଇପାରେ ଯେ ସମ୍ବଲପୁର ରାଜ୍ୟର ଚୌହାଣବଂଶୀୟ ରାଜା ବଳରାମ ଦେବଙ୍କ ସମୟରେ ଆରମ୍ଭ ହୋଇଥିବା ଶୀତଳଷଷ୍ଠୀ ଯାତ୍ରା ସବୁରି ହୃଦୟକୁ ଅନୁପ୍ରାଣିତ କରି ସମୟାନୁକ୍ରମେ ସାଧାରଣ ଲୋକଙ୍କ ପୃଷ୍ଠପୋଷକତା ଲାଭ କରି ଏକ ସାର୍ବଜନୀନ ପରମ୍ପରା ଭାବେ ପରିମାର୍ଜିତ ହୋଇଛି । ସମ୍ଭବତଃ ଗଡ଼ଜାତ ଶାସନ କାଳରେ ସମ୍ବଲପୁରରେ ଧର୍ମଶାସ୍ତ୍ର ଓ ସଂସ୍କୃତ ବିଦ୍ୟାର ଅଧ୍ୟୟନ, ଅଧ୍ୟାପନ ଓ ଆଲୋଚନା ହେଉଥିଲେ ହେଁ ତାହା ଅବ୍ରାହ୍ମଣଙ୍କ ପାଇଁ ନିଷିଦ୍ଧ ଥିଲା । ମନ୍ଦିର ପ୍ରବେଶ ତଥା ମନ୍ଦିର ମଧ୍ୟରେ ପୂଜା, ପାଠ ଇତ୍ୟାଦି କର୍ମରୁ ମଧ ଅବ୍ରାହ୍ମଣମାନେ ବଞ୍ଚିତ ଥିଲେ । କିନ୍ତୁ ବ୍ରାହ୍ମଣମାନେ ଏହି ଅଞ୍ଚଳକୁ ଆଗମନ କରିବାର ବହୁ ପୂର୍ବରୁ ଶିବ ଓ ଶକ୍ତିଙ୍କ ପୂଜା ଏହି ଅଞ୍ଚଳର ସାଧାରଣ ଲୋକ ଜୀବନରେ ଅଙ୍ଗୀକୃତ ଥିଲା । ସମ୍ବଲପୁର ଇତିହାସର ବିଭିନ୍ନ ଅଧ୍ୟାୟରେ ଏହି ଅଞ୍ଚଳ ଶକ୍ତିପୀଠ ରୂପେ ପ୍ରସିଦ୍ଧିଲାଭ କରିଥିଲା । ପ୍ରାସଙ୍ଗିକତାକୁ ବଜାୟ ରଖି ଏଠାରେ ଉଲ୍ଲେଖନୀୟ ଯେ, କେବଳ ସମଲେଶ୍ୱରୀ ପରି ଶକ୍ତିପୀଠ ନୁହେଁ, ଏହି ଅଞ୍ଚଳର ଅଗଣିତ ଶୈବପୀଠରେ ମଧ ଆଦିବାସୀ ଓ ଅବ୍ରାହ୍ମଣ ଜାତିର ଲୋକେ ପୂଜକ ଭାବେ ଆବହମାନ କାଳରୁ ନିୟୋଜିତ ହୋଇଥିଲେ । ଅନ୍ୟ ଅର୍ଥରେ ସମ୍ବଲପୁରର ଧର୍ମଧାରାରେ ଆଦିବାସୀଠାରୁ ବ୍ରାହ୍ମଣ ପର୍ଯ୍ୟନ୍ତ ପ୍ରାୟ ସବୁ ଜାତିର ଲୋକେ ନିଜକୁ ନିୟୋଜିତ କରିଥାନ୍ତି ।

ସମ୍ବଲପୁର ଏକ ଅବ୍ରାହ୍ମଣ ଆଦିବାସୀ ବହୁଳ ଅଞ୍ଚଳ ହୋଇଥିବାରୁ ବ୍ରାହ୍ମଣ ସମର୍ଥିତ ପୂଜାପାଠ, ବେଦ ଅଧ୍ୟୟନ ପ୍ରତି ଗଡ଼ଜାତ ରାଜାମାନଙ୍କ ଅନୁରାଗ ଓ ଅନୁଗ୍ରହକୁ ଦେଖି ସମ୍ଭବତଃ ସାଧାରଣ ଜନତା ପରୋକ୍ଷଭାବେ ଅସନ୍ତୋଷ ବ୍ୟକ୍ତ କରୁଥିଲେ । ଉଭୟ ଗୋଷ୍ଠୀ ମଧ୍ୟରେ ଧାର୍ମିକ ଅସହିଷ୍ଣୁତାର ପ୍ରାଚୀର ଯେମିତି ମଜବୁତ ଓ ଉଚ୍ଚ ନହେବ ସେଥିପ୍ରତି ଦୃଷ୍ଟିରଖି ଗଡ଼ଜାତ ଶାସକଙ୍କ ଧର୍ମନୀତିରେ ପରିବର୍ତ୍ତନ ଘଟିଥାଇ ପାରେ । ସମ୍ବଲପୁରରେ ସଂଖ୍ୟାଲଘୁ ବ୍ରାହ୍ମଣ ଓ ଅବ୍ରାହ୍ମଣ ବହୁଳ ସମାଜର ଶାନ୍ତିପୂର୍ଣ୍ଣ ସାମାଜିକ ସହାବସ୍ଥାନ ନିମିତ୍ତ ଶୀତଳଷଷ୍ଠୀର ଶାସ୍ତ୍ରୀୟ ନୀତିକୁ ଲୌକିକିକରଣ କରି ପ୍ରତିଷ୍ଠିତ କରିବା ପାଇଁ ସମାଜର ବ୍ୟବସ୍ଥାପକମାନଙ୍କ ନିରୂତା ଉଦ୍ୟମ ନିଶ୍ଚିତ ଭାବେ ପ୍ରଶଂସନୀୟ । ଅନ୍ୟ ଅର୍ଥରେ ସମ୍ବଲପୁରକୁ ଏକ ଧର୍ମନିରପେକ୍ଷ ସାମାଜିକ ଖସଡ଼ାରେ ପରିଣତ କରିବା ପାଇଁ ସାଂସ୍କୃତିକ ଦେବତା ଶିବ-ଶକ୍ତି ସର୍ବଦା ବଳିଷ୍ଠ ଭୂମିକା ନିର୍ବାହ କରିଆସିଛନ୍ତି । ଗ୍ରୀଷ୍ମର ପ୍ରଚଣ୍ଡ ରୌଦ୍ରତାପର ଅବସାନ ତଥା ବର୍ଷାର ପ୍ରଥମ ବାରିଧାରାର ଆର୍ଦ୍ରତାର ବାର୍ତ୍ତାକୁ ବହନ କରି ଶୀତଳଷଷ୍ଠୀ ପରମ୍ପରା ସମାଜର ସବୁଶ୍ରେଣୀର ଲୋକଙ୍କୁ ଏକୀଭୂତ କରିଛି । ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ଈଶ୍ୱରଙ୍କ ନିକଟରେ ସମସ୍ତ ମନୁଷ୍ୟ ସମାନ । ମାତ୍ର ବୈଦିକ ରୀତି ଅନୁଯାୟୀ ହିନ୍ଦୁ ସମାଜରେ ଛୁଆଁ, ଅଛୁଆଁ ଭେଦଭାବ ଯୋଗୁଁ ଏକଦା ଅବ୍ରାହ୍ମଣମାନେ ମନ୍ଦିର ପ୍ରବେଶ, ଦିଅଁ ଦର୍ଶନ, ଠାକୁର ପୂଜା କରିପାରୁନଥିଲେ । ସାଂପ୍ରତିକ କାଳରେ ହରିଜନ ଶ୍ରେଣୀର ଲୋକଙ୍କୁ ବାଦ ଦେଲେ ଏହିଭଳି ଅଭାବନୀୟ ଘଟଣାକ୍ରମରେ ଢେର ପରିବର୍ତ୍ତନ ଘଟିଛି । କେବଳ ବ୍ରାହ୍ମଣମାନେ ଯେ ଠାକୁରଙ୍କୁ ପୂଜା କରିପାରିବେ ତା'ର କିଛିମାନେ ନାହିଁ ବୋଲି ମାନ୍ୟବର ସୁପ୍ରିମକୋର୍ଟ ମଧ କିଛିଦିନ ତଳେ ଏକ ଐତିହାସିକ ରାୟ ପ୍ରଦାନ କରିଛନ୍ତି ।

ଯେକୌଣସି ଲୋକର ମନରେ ଭକ୍ତି ଥିଲେ ସେ ଠାକୁରଙ୍କୁ ପୂଜା କରିପାରିବ । ମନ୍ତ୍ର ଜାଣିଥିଲେ ପୂଜା କରିପାରିବ । ମନ୍ତ୍ର ନଜାଣି ମଧ୍ୟ ଠାକୁରଙ୍କୁ ନିଜ ମନକଥା ଜଣାଇ ପୂଜା କରିପାରିବ । ମନ୍ଦିରରେ ପୂଜା କରିବାର ଅଧିକାର ଯେ କେବଳ ପଇତା ପକେଇଥିବା ବ୍ରାହ୍ମଣର ରହିବ, ତା'ମଧ୍ୟ ନୁହେଁ । ଯେକୌଣସି ଲୋକ ସେହି କାର୍ଯ୍ୟ କରିପାରିବ ।

ବୈଦିକ ରୀତିରେ ଅନୁସୃତ ଶୈବ ଓ ଶାକ୍ତ ପରମ୍ପରାକୁ ସମ୍ବଲପୁରର ଅବ୍ରାହ୍ମଣ ତଥା ଆଦିବାସୀ ବହୁଳ ସମାଜରେ ଲୌକିକ ରୀତିରେ ବହୁ ଲୋକଙ୍କ ସମ୍ମୁଖରେ ଆନୁଷ୍ଠାନିକ ଭାବେ ପ୍ରକାଶ କରିବା ପାଇଁ ଗଡ଼ଜାତ ଶାସକମାନଙ୍କ ନିଷ୍ଠା ଓ ଉଦ୍ୟମ ଗୁରୁତ୍ୱପୂର୍ଣ୍ଣ । ଏହାର ପ୍ରଭାବ ସୁଦୂର ପ୍ରସାରୀ ଥିଲା । କାଳର ବିବର୍ତ୍ତନରେ ଶୀତଳଷଷ୍ଠୀ ପରମ୍ପରା ସମାଜର ସବୁଶ୍ରେଣୀର ଲୋକଙ୍କୁ ଆମୃଷ୍ଟ କରିଛି । ପ୍ରକାଶ ଥାଉକି, ମୂଳ ଭାରତ ଭୂଖଣ୍ଡ ବହୁ ଧର୍ମ ଓ ସଂସ୍କୃତିର ମିଳନସ୍ଥଳୀ ଏବଂ ଶତାବ୍ଦୀ ଶତାବ୍ଦୀ ଧରି ବିଭିନ୍ନ ମତାବଲମ୍ବୀ ଏଠାରେ ଏକତ୍ର ବସବାସ କରି ଆସୁଛନ୍ତି । ଏହି ଅବଧାରିତ ସତ୍ୟ ଶୀତଳଷଷ୍ଠୀ ଯାତ୍ରାରେ ମଧ୍ୟ ଉଦ୍‌ଭାସିତ । ସମାଜର ସବୁଶ୍ରେଣୀର ଲୋକମାନେ ଏହି ଲୋକଯାତ୍ରାରେ ସାମିଲ ହୋଇପାରିଛନ୍ତି । ସର୍ବୋପରି ସାଂସ୍କୃତିକ ସମନ୍ୱୟ ଓ ସାମାଜିକ ସହାବସ୍ଥାନ କ୍ଷେତ୍ରରେ ଶୀତଳଷଷ୍ଠୀ ଲୋକଯାତ୍ରାର ଅବଦାନ ଅନସ୍ୱୀକାର୍ଯ୍ୟ । ଯେଉଁସବୁ ସାଂସ୍କୃତିକ ଚିହ୍ନଗୁଡ଼ିକୁ ନେଇ ପଶ୍ଚିମ ଓଡ଼ିଶା ବା କୋଶଳର ସାଂସ୍କୃତିକ ସ୍ୱାତନ୍ତ୍ର୍ୟ ଆଜି ପ୍ରତିଷ୍ଠିତ ସେଥି ମଧ୍ୟରେ ଶୀତଳଷଷ୍ଠୀ ଯାତ୍ରା ଅନ୍ୟତମ । ଆଦିବାସୀ ବହୁଳ ସମ୍ବଲପୁର ଅଞ୍ଚଳରେ ଶୀତଳଷଷ୍ଠୀ ଯାତ୍ରା ଏକଦା ଶ୍ରୀକ୍ଷେତ୍ରର ବ୍ରାହ୍ମଣ ଶାସନରୁ ଆସିଥିବା ଓ ବ୍ରାହ୍ମଣମାନଙ୍କ ଦ୍ୱାରା ଆରମ୍ଭ ହୋଇ ସାଂପ୍ରତିକ କାଳରେ ଏକ ଗଣପର୍ବ ରୂପେ ପ୍ରତିଷ୍ଠିତ ହୋଇଛି । ଏଠାରେ ସୂଚନାଯୋଗ୍ୟ ଯେ ଶ୍ରୀକ୍ଷେତ୍ରରେ ରାଜାଶ୍ରିତ ଶ୍ରୀଜଗନ୍ନାଥ ମତବାଦ ପ୍ରାଧାନ୍ୟ ଲାଭ କରିଥିବାରୁ ତୁଳନାତ୍ମକ ଭାବେ ସେଠାରେ ଶୈବ ସଂସ୍କୃତିର ମାନ୍ୟତା ବିଶେଷଭାବେ ଅନୁଭୂତ ହୁଏ ନାହିଁ । କିନ୍ତୁ ଶକ୍ତିପୀଠ ସମ୍ବଲପୁର ଅଞ୍ଚଳରେ ଶୈବ ସଂସ୍କୃତିର ଉତ୍କର୍ଷତା ଚରମ ସୀମାରେ ପହଞ୍ଚିବାକୁ ବେଶୀ ସମୟ ଲାଗି ନଥିଲା । ଏହି ଦୃଷ୍ଟିକୋଣରୁ ବିଚାରିଲେ ପଶ୍ଚିମାଞ୍ଚଳର ସାଂସ୍କୃତିକ ସ୍ୱାତନ୍ତ୍ର୍ୟ ପଛରେ ପୂର୍ବାଞ୍ଚଳର ପ୍ରଭାବକୁ ଉପେକ୍ଷା କରାଯାଇନପାରେ ।

**ସହାୟକ ଲେଖା**


୧. ଚିତ୍ରସେନ ପଶାୟତ (୧୯୯୪), ସମ୍ବଲପୁରର ଶୀତଳଷଷ୍ଠୀ ପର୍ବ, ଅଭିନବ, ରଥସଂଖ୍ୟା, ପୃ.୨୭-୩୦ ।

୨. ନିମାଇଁ ଚରଣ ପଣ୍ଡା ଓ କୁମୁଦ ରଞ୍ଜନ ପାଣିଗ୍ରାହୀ (୧୯୮୬), ଲୋକନାଟ୍ୟ ପରମ୍ପରାରେ ଶୀତଳଷଷ୍ଠୀ ଓ ଧନୁଯାତ୍ରା, ସ୍ମରଣିକା, ଓଡ଼ିଶାର ଲୋକ ସଂସ୍କୃତି ଜାତୀୟ ସଂପାନ, ଓଡ଼ିଆ ବିଭାଗ, ସମ୍ବଲପୁର ବିଶ୍ୱବିଦ୍ୟାଳୟ ।

୩. ଶିବ ପ୍ରସାଦ ଦାଶ (୧୯୬୨), ସମ୍ବଲପୁର ଇତିହାସ, ବିଶ୍ୱଭାରତୀ ପ୍ରେସ, ସମ୍ବଲପୁର ।

୪. ଶ୍ରଦ୍ଧାକର ସୂପକାର (୧୯୯୫), ସମ୍ବଲପୁରରେ ଶୀତଳଷଷ୍ଠୀ ଯାତ୍ରା, ଓଡ଼ିଶାର ଆଞ୍ଚଳିକ ପର୍ବପର୍ବାଣି ଓଷା-ବ୍ରତ ଯାନିଯାତ୍ରା, ଉତ୍କଳ ପାଠକ ସଂସଦ, ଓଡ଼ିଶା ବୁକ୍ ଷ୍ଟୋର, କଟକ, ପୃ.୬-୮ ।

୫. Chitrasen Pasayat (1998), Tribe, Caste and Folk Culture, Rawat Publications, Jaipur / New Delhi.

୬. Chitrasen Pasayat (2003), Glimpses of Tribal and Folk Culture, Anmol Publications Pvt. Ltd., New Delhi.

୭. L.K. Mahapatra (1974), Determining Social Types on the Tribe-Peasant Continuum, Journal of the Indian Anthropological Society, Vol.9(1), p.71-83.

୮. N. Senapati and B. Mahanti (eds.) (1971), Orissa District Gazetteers, Sambalpur, Orissa Government Press, Cuttack.



ସହକାରୀ ପ୍ରଶାସକ
ଶ୍ରୀମନ୍ଦିର କାର୍ଯ୍ୟାଳୟ, ପୁରୀ




# ଓଡ଼ିଶାରେ ଉଲ୍‌କା ପାତ

ନିକୁଞ୍ଜ ବିହାରୀ ସାହୁ

ଗତ ୨୦୦୩ ମସିହା ସେପ୍ଟେମ୍ବର ୨୭ ତାରିଖ ସନ୍ଧ୍ୟା ୬ଟା ୩୦ ମିନିଟ୍ । ଏହି ସମୟରେ ଆମ ରାଜ୍ୟରେ ଏକ ବିରଳ ଘଟଣା ଦେଖିବାକୁ ମିଳିଥିଲା । ଆକାଶରୁ ଏକ ବିଶାଳ ଅଗ୍ନିପିଣ୍ଡୁଳା ପୃଥିବୀ ଆଡ଼କୁ ଖସିଥିଲା । ଏହି ଦୃଶ୍ୟ ଖୋର୍ଦ୍ଧା, ପୁରୀ, କଟକ, କେନ୍ଦ୍ରାପଡ଼ା, ଜଗତସିଂହପୁର ସମେତ ଅଧିକାଂଶ ଉପକୂଳବର୍ତ୍ତୀ ଜିଲ୍ଲାରେ ଦୃଶ୍ୟ ହୋଇଥିଲା । ରାଜଧାନୀରେ ଏହା ଉତ୍ତର ଆକାଶରେ ଛୁଟି ଯାଉଥିବା ଏକ ଗଦା ଆକାରର ଗୋଜିଆ ଆଲୁଅ ରୂପେ ଦେଖାଯାଇଥିଲା । କେନ୍ଦ୍ରାପଡ଼ା ଅଞ୍ଚଳରେ ଲୋକେ ଏହି ଆଲୁଅକୁ ଆକାଶରେ ବୋମା ଭଳି ଠୋ-ଠା ଶବ୍ଦ କରି ଫୁଟି ଝରିବାଣ ସଦୃଶ ବିଚ୍ଛୁରିତ ହୋଇ ପଡ଼ିଥିବାର ଦେଖିଥିଲେ । ସାରା ଅଞ୍ଚଳ ଧୂଆଁରେ ଭରି ଯାଇଥିଲା ଓ ପବନରେ ପୋଡ଼ା ବାରୁଦ ଭଳି ଗନ୍ଧ ଭାସି ଆସିଥିଲା । ଏହି ଅଦ୍ୱିତୀୟ ଆଲୁଅରେ ରାସ୍ତାଘାଟ ଚାରିଆଡ଼ ଦିନ ଭଳି ଫର୍ଚ୍ଚା ହୋଇ ଯାଇଥିଲା ଓ ପଥିକମାନେ ଚମକି ଦଣ୍ଡେ ଅଟକି ଯାଇଥିଲେ । ସାଧାରଣ ଲୋକେ ଆତଙ୍କିତ ହୋଇ ପୃଥିବୀର ବିନାଶକାଳ ଆସିଗଲା ବୋଲି ଧରି ନେଇଥିଲେ ଓ ଦେବାଦେବୀ ପୂଜାର୍ଚ୍ଚନା କରିଥିଲେ ।

ଏହି ଆଲୁଅରେ ଥିବା ନିଆଁହୁଳା ସବୁ ଉପକୂଳବର୍ତ୍ତୀ ଜିଲ୍ଲାଗୁଡ଼ିକ ଉପରେ ବିଛାଡ଼ି ହୋଇ ପଡ଼ିଥିଲା । ଏଭଳି ଏକ ନିଆଁହୁଳା ପଡ଼ି ମୟୂରଭଞ୍ଜ ଜିଲ୍ଲାର କପ୍ତିପଦା ଥାନା ଅନ୍ତର୍ଗତ ସୁରୁସୁଦିଆ ଗ୍ରାମର ଜଣେ ଲୋକର ଘର ପୋଡ଼ି ଯାଇଥିଲା । ବୈଜ୍ଞାନିକମାନେ ସଂଗେସଂଗେ ଘଟଣାସ୍ଥଳ ପରିଦର୍ଶନ କରି ଏହି ଆକାଶୀୟ ଆଲୁଅରେ ଥିବା ଅଧାପୋଡ଼ା ପିଣ୍ଡ ସବୁକୁ ସଂଗ୍ରହ କରିଥିଲେ । ସଂଗୃହୀତ ଖଣ୍ଡଗୁଡ଼ିକ ମଧ୍ୟରୁ କେନ୍ଦ୍ରାପଡ଼ା ଜିଲ୍ଲା ମହାକାଳପଡ଼ା ବ୍ଲକ୍ ଅନ୍ତର୍ଗତ ପଶ୍ଚିମ-ସୁନୀତି ଗାଁରୁ ମିଳିଥିବା ଖଣ୍ଡଟି ସର୍ବବୃହତ ଏବଂ ଓଜନରେ ୫ କିଲୋ ୬୦୦ ଗ୍ରାମ ଥିଲା । ଏହା ଏକ ଧାନବିଲରେ ପଡ଼ି ୫ ଫୁଟ ଗଭୀରତାର ଏକ ଗର୍ତ୍ତ କରି ପୋତି ହୋଇ ପଡ଼ିଥିଲା । ଏଥିରୁ ଏହାର ଦୂରନ୍ତ ବେଗ ସମ୍ପର୍କରେ ଧାରଣା କରାଯାଇପାରେ । ଏହି ପଥରଖଣ୍ଡଗୁଡ଼ିକୁ ଭାରତୀୟ ଭୂତାତ୍ତ୍ୱିକ ସର୍ବେକ୍ଷଣ ବିଭାଗର ବୈଜ୍ଞାନିକମାନେ ପରୀକ୍ଷା କରି ଦେଖିଛନ୍ତି । ପରୀକ୍ଷାରୁ ଏହା ମହାକାଶରୁ ଖସିଥିବା ଏକ ଉଲ୍‌କା ବୋଲି ଜଣାପଡ଼ିଛି । ଗଠନଭିତ୍ତିରେ ଉଲ୍‌କାଗୁଡ଼ିକୁ ତିନି ଶ୍ରେଣୀ ଯଥା- ଲୌହ, ପଥୁରିଆ ଓ ଲୌହ-ପଥୁରିଆରେ ବିଭକ୍ତ କରାଯାଏ । ଖସିଥିବା ଉଲ୍‌କାପିଣ୍ଡଟି ଲୌହ ଶ୍ରେଣୀର ଅନ୍ତର୍ଭୁକ୍ତ ବୋଲି ଜଣା ପଡ଼ିଥିଲାବେଳେ ଏଥିରେ ଲୌହ, ନିକେଲ୍ ଆଦି ଧାତୁ ଗଚ୍ଛିତ ଥିବାର ସୂଚନା ମିଳିଛି ।

### ଓଡ଼ିଶାକୁ ଉଲ୍‌କାପିଣ୍ଡ ଫେରିବ କେବେ ?

ମହାକାଶରୁ ଖସିଥିବା ଯେକୌଣସି ବସ୍ତୁ ଭାରତୀୟ ଭୂତାତ୍ତ୍ୱିକ ସର୍ବେକ୍ଷଣ ବିଭାଗଙ୍କ ସମ୍ପତ୍ତି ବୋଲି ସରକାରଙ୍କ ନିୟମ ରହିଛି । ସୁତରାଂ ଆମ ରାଜ୍ୟରୁ ସଂଗୃହୀତ ଉଲ୍‌କାଖଣ୍ଡ ସବୁ କଲିକତାସ୍ଥିତ ଭାରତୀୟ ଭୂତାତ୍ତ୍ୱିକ ସର୍ବେକ୍ଷଣ ବିଭାଗଙ୍କ ମୁଖ୍ୟ କାର୍ଯ୍ୟାଳୟକୁ ଚାଲିଯାଇଛି । ସେଠାକାର ବୈଜ୍ଞାନିକମାନେ ଅହମ୍ମଦାବାଦସ୍ଥିତ ପଦାର୍ଥ ବିଜ୍ଞାନ ପ୍ରୟୋଗଶାଳାର ବିଶେଷଜ୍ଞମାନଙ୍କ ସହ ମିଳିତ ହୋଇ ଉଲ୍‌କାଖଣ୍ଡଗୁଡ଼ିକୁ ପରୀକ୍ଷା କରି ଦେଖୁଛନ୍ତି ।

ଇତିମଧ୍ୟରେ ଆମ ରାଜ୍ୟର ବହୁ ଅନୁଷ୍ଠାନ ସର୍ବସାଧାରଣଙ୍କ ପ୍ରଦର୍ଶନ ନିମନ୍ତେ ଉଲ୍‌କାଖଣ୍ଡର କିଛି ଅଂଶ ଓଡ଼ିଶାକୁ ଫେରାଇ ଦେବା ପାଇଁ ଭାରତୀୟ ଭୂତାତ୍ତ୍ୱିକ ସର୍ବେକ୍ଷଣ ବିଭାଗକୁ ଅନୁରୋଧ କରିଥିଲେ । ମାତ୍ର କର୍ତ୍ତୃପକ୍ଷ ଉଚ୍ଚତର ଗବେଷଣା ନିମନ୍ତେ ଏହି ନମୁନାସବୁ ଆବଶ୍ୟକ ବୋଲି କାରଣ ଦର୍ଶାଇ ଏହାକୁ ହସ୍ତାନ୍ତର କରିବାକୁ ମନା କରି ଦେଇଛନ୍ତି । କର୍ତ୍ତୃପକ୍ଷ ମଧ୍ୟ ସର୍ବସାଧାରଣଙ୍କ ପ୍ରଦର୍ଶନ ଉଦ୍ଦେଶ୍ୟରେ କଲିକତାସ୍ଥିତ ଇଣ୍ଡିଆନ୍ ମ୍ୟୁଜିୟମ୍‌ରେ ଏକ ଉଲ୍‌କା ବିଭାଗ ରହିଥିବାର ଯୁକ୍ତି ବାଢ଼ିଛନ୍ତି । ଯାହା ଜଣାପଡୁଛି, ଆମ ରାଜ୍ୟର ଉଲ୍‌କାପିଣ୍ଡ ମଧ୍ୟ କଲିକତା ସଂଗ୍ରହାଳୟର ଆସନ ଅଳଙ୍କୃତ କରିବ ।

ଘୋର ପରିତାପର ବିଷୟ ଏହି ଯେ, ଯେଉଁ ଉଲ୍‌କା ଆମ ଜନଜୀବନରେ ଅନେକ ଘଟଣା ଦୁର୍ଘଟଣାର ମୂକସାକ୍ଷୀ ତଥା ଅନେକ ଚହଳ ଚମକର କାରଣ, ତା'ର ସ୍ମୃତି ଆମ ରାଜ୍ୟରେ କେଉଁଠି ସାଇତା ହୋଇ ରହିପାରିଲା ନାହିଁ । ସାଧାରଣ ଲୋକେ ଭୁବନେଶ୍ୱରସ୍ଥ ବିଭିନ୍ନ ସଂଗ୍ରହାଳୟ ପରିଦର୍ଶନ କଲାବେଳେ ଉଲ୍‌କାପିଣ୍ଡଟିର ଅବଶେଷ ଦେଖିବା ପାଇଁ କୌତୁହଳ ପ୍ରକାଶ କରୁଛନ୍ତି । ଓଡ଼ିଶାରୁ ସଂଗୃହୀତ ଉଲ୍‌କାପିଣ୍ଡ କଲିକତାରେ ସଂରକ୍ଷିତ ହେବା କଥା ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହେଉଛନ୍ତି । ଏପରି କ୍ଷେତ୍ରରେ ରାଜ୍ୟ ସରକାର ଓଡ଼ିଶାରୁ ମିଳିଥିବା ଉଲ୍‌କାପିଣ୍ଡର କିଛି ଅଂଶ ଆଣି ରାଜ୍ୟର କୌଣସି ଏକ ସଂଗ୍ରହାଳୟରେ ସର୍ବସାଧାରଣଙ୍କ ପ୍ରଦର୍ଶନର ବ୍ୟବସ୍ଥା କଲେ ରାଜ୍ୟବାସୀ ଉପକୃତ ହୋଇପାରନ୍ତେ ।

ଏଜୁକେଶନ୍ ଅଫିସର୍, ଆଞ୍ଚଳିକ ବିଜ୍ଞାନ କେନ୍ଦ୍ର
ପଣ୍ଡିତ ଜବାହରଲାଲ ନେହେରୁ ମାର୍ଗ
ଭୁବନେଶ୍ୱର - ୭୫୧୦୧୩



# ପଲ୍ଲୀଶ୍ରୋତା ମଣ୍ଡଳୀ କଅଣ ଓ କାହିଁକି

ଈଶ୍ୱର ପ୍ରସାଦ ସିଂହ

ଆମ ଦେଶ ଭାରତବର୍ଷ ତଥା ପ୍ରିୟ ପ୍ରଦେଶ ଓଡ଼ିଶାପ୍ରଦେଶରେ ଶତକଡ଼ା ୮୦ ଭାଗ ଗ୍ରାମାଞ୍ଚଳ ଓ ଅବଶିଷ୍ଟ ସହରାଞ୍ଚଳ ଏବଂ ନଗରାଞ୍ଚଳ ଥିବା ଜଣାଯାଏ । ସହରାଂଚଳ ଓ ନଗରାଚଂଳମାନଙ୍କରେ ଆଧୁନିକ ଶିକ୍ଷାର ପ୍ରସାର ଫଳରେ ଏବଂ ପତ୍ରପତ୍ରିକା, ଖବରକାଗଜ, ରେଡ଼ିଓ ଏବଂ ଟି.ଭି. ଇତ୍ୟାଦି ବହୁଳ ଭାବରେ ଜନସାଧାରଣଙ୍କ ନିକଟରେ ପହଞ୍ଚି ପାରୁଥିବାରୁ ସେମାନେ ଗ୍ରାମାଞ୍ଚଳର ଲୋକଙ୍କଠାରୁ ଅପେକ୍ଷା କୃତ ଅଧିକ ସଭ୍ୟ ଶିକ୍ଷିତ । ଏହା ସାଂଗକୁ ବିଜୁଳି ଆଲୁଅର ସୁବିଧା ମଧ ସେମାନେ ପାଇପାରୁଛନ୍ତି । ବିଭିନ୍ନ ସମୟରେ ଅନେକ ପ୍ରକାରର ସଭାସମିତିରେ ଯୋଗଦାନର ସୁବିଧା ସାଂଗକୁ ପାଠାଗାରର ସୁବିଧା ସୁଯୋଗ ଏବଂ ଆଲୋଚନାଚକ୍ରମାନଙ୍କରେ ସହରି ଲୋକ ବିଶେଷ ଭାବରେ ଅଂଶ ଗ୍ରହଣ କରିଥାନ୍ତି । ଏହି ସୁବିଧା ସୁଯୋଗ କିନ୍ତୁ ଗ୍ରାମାଞ୍ଚଳରେ ପ୍ରାୟ ଖୁବ୍‌କମ୍ ଥାଏ । ଏହା ସାଂଗକୁ ଗ୍ରାମାଞ୍ଚଳରେ ଲୋକଙ୍କ ଆର୍ଥିକ ପରିସ୍ଥିତି ସ୍ୱଚ୍ଛଳ ନଥାଏ ଏବଂ ବିଜୁଳି ଆଲୁଅର ମଧ ଅଭାବଥାଏ । ଏହାଛଡ଼ା ଗ୍ରାମାଞ୍ଚଳର ପୁରୁଷ ତଥା ମା ଭଉଣୀମାନଙ୍କର ଏକତ୍ର ବସି ଦୁଃଖସୁଖ ହେବା, ଦେଶବିଦେଶର ଖବର ଜାଣିବା ଏବଂ ପ୍ରତିଦିନ ସରକାରଙ୍କ ମାଧମରେ ଲୋକମାନଙ୍କ ପାଇଁ ହେଉଥିବା ବିଭିନ୍ନ ଉନ୍ନୟନମୂଳକ ଯୋଜନାଗୁଡ଼ିକର ପ୍ରଚାର ପ୍ରସାର ବିଷୟ ଜାଣିବା ପାଇଁ ସେତେଟା ସୁବିଧା ନଥାଏ । ତେଣୁ ଏହି ଶ୍ରେଣୀର ଅବହେଳିତ ଗାଉଁଲି ଲୋକମାନଙ୍କ ସର୍ବବିଧ ଉନ୍ନତି, ଶିକ୍ଷାଦୀକ୍ଷାରେ ଉନ୍ନତି ଏବଂ ଆଧୁନିକ ବିଭିନ୍ନ ପ୍ରଣାଳୀରେ ସଚେତନ କରିବା ପାଇଁ ରାଜ୍ୟ ସରକାରଙ୍କ ଆନୁକୂଲ୍ୟରେ ବିଭିନ୍ନ ସମୟରେ ନୂଆ ନୂଆ ଅନୁଷ୍ଠାନ ଗଢ଼ିବା ପାଇଁ କ୍ରମଶଃ ଉଦ୍ୟମ ହୋଇଆସିଛି । ତେଣୁ ମହିଳାମାନଙ୍କ ପାଇଁ ମହିଳା ସମିତି, ମହିଳା ମଣ୍ଡଳ, ମହିଳା ପଲ୍ଲୀଶ୍ରୋତା ମଣ୍ଡଳୀ ଏବଂ ପୁରୁଷ ତଥା ମହିଳାମାନଙ୍କ ପାଇଁ ମଧ୍ୟ ଯୁବକ ସଂଘ, ପାଠାଗାର, ପଲ୍ଲୀଶ୍ରୋତା ମଣ୍ଡଳୀ, କୃଷିଚର୍ଚ୍ଚା ମଣ୍ଡଳୀ ଇତ୍ୟାଦି ସଂଗଠନ ସବୁ ଗ୍ରାମାଞ୍ଚଳମାନଙ୍କରେ ଗଠନ କରିବା ଯୋଜନା କରାଗଲା । ଏହି ଅନୁଷ୍ଠାନମାନଙ୍କୁ ମଧ ରେଡ଼ିଓ ମଧ ଯୋଗାଇବାର ବ୍ୟବସ୍ଥା ହେଲା । ଗୋଷ୍ଠୀ ଆଲୋଚନା ପାଇଁ ମଧ ଗ୍ରାମପଞ୍ଚାୟତମାନଙ୍କୁ ଏହିଭଳି ଯନ୍ତ୍ରସବୁ ଯୋଗାଇ ଦିଆଗଲା । କିଛି ଆର୍ଥିକ ସ୍ୱଚ୍ଛଳତା ଥିବା ପରିବାର ମଧ ନିଜନିଜ ପାଇଁ ଏହିଭଳି ଯନ୍ତ୍ର ସାଂଗକୁ ବିଭିନ୍ନ ଖବରକାଗଜ ମଗାଇବାର ସୁବିଧା ପାଇଲେ । ତେଣୁ ଗ୍ରାମାଞ୍ଚଳକୁ ସାଧାରଣତଃ ପଲ୍ଲୀ ଅଞ୍ଚଳ ମଧ କୁହାଯାଏ । ତେଣୁ ପୂର୍ବବର୍ଣ୍ଣିତ ପଲ୍ଲୀଶ୍ରୋତା ମଣ୍ଡଳୀ ଭଳି ଅନୁଷ୍ଠାନକୁ ପୁରୁଷ ତଥା ମହିଳାମାନଙ୍କ ପାଇଁ ସ୍ୱତନ୍ତ୍ର ଭାବରେ ଗଠନ ପୂର୍ବକ ସେମାନଙ୍କୁ ସମ୍ମିଳିତ ଭାବରେ ଏକତ୍ର ବସି ଆଲୋଚନାମାନଙ୍କରେ ଭାଗ ନେବା ସହ ସଚେତନତା ସୃଷ୍ଟିର ଉଦ୍ୟମକୁ ପଲ୍ଲୀଶ୍ରୋତା ମଣ୍ଡଳୀ ନାମରେ ନାମିତ କରାଗଲା । ସେହିଭଳି ଭାବରେ ପଲ୍ଲୀଶ୍ରୋତା ମଣ୍ଡଳୀ କାହିଁକି ଯଦି ପ୍ରଶ୍ନ କରାଯାଏ, ତେବେ ଉତ୍ତର ହେବ ଯେ ବିଶେଷ କରି ଗ୍ରାମାଞ୍ଚଳ ତଥା ପଲ୍ଲୀ ଅଂଚଳରେ ଏହିଭଳି ଅନୁଷ୍ଠାନମାନ ବ୍ୟାପକ ଭାବରେ ଗଠନ ମାଧମରେ ସରକାରଙ୍କର ବିଭିନ୍ନ ଜନହିତକର ଯୋଜନା ଏବଂ ବିଶେଷ କରି ସବୁପ୍ରକାରର ଚାଷବାସର ପ୍ରଗତି ପାଇଁ ବିଶେଷଜ୍ଞମାନଙ୍କ ଦ୍ୱାରା ନିର୍ଦ୍ଧାରିତ ସମୟ ଓ ଋତୁମାନଙ୍କୁ ଲକ୍ଷ୍ୟ ରଖି ବିଷୟବସ୍ତୁର ଆଲୋଚନା ରେଡ଼ିଓ ମାଧମରେ ପ୍ରଚାର କରାଯିବାର ବ୍ୟବସ୍ଥା ହେଲା । ସେସବୁକୁ ଏହି ପଲ୍ଲୀଶ୍ରୋତା ମଣ୍ଡଳୀ ସଭ୍ୟ ତଥା ସଭ୍ୟାମାନେ ଏକତ୍ର ବସି ଶୁଣିଲେ ଏବଂ ନିଜର ସନ୍ଦେହ ଥିବା ପ୍ରଶ୍ନମାନ ପଚାରିଲେ । ତେଣୁ ସେହି ସନ୍ଦେହ ଯୁକ୍ତ ପ୍ରଶ୍ନ ସବୁର ସଠିକ୍ ଉତ୍ତରଗୁଡ଼ିକୁ ସଂପୃକ୍ତ ଆଲୋଚକ ଉତ୍ତର ପ୍ରଦାନ କରିବା ହେତୁ ପୁନର୍ବାର ରେଡ଼ିଓ ଓ ଟିଭି ମାଧମରେ ତାହା ପଲ୍ଲୀଶ୍ରୋତା ମଣ୍ଡଳୀଗୁଡ଼ିକ ଶୁଣିପାରିଲେ । ସେମାନଙ୍କର ସନ୍ଦେହମୋଚନ ହେବା ସଂଗେ ସଂଗେ ସେମାନେ ମଧ ନିଜକୁ ଠିକ୍ ଭାବରେ ପ୍ରସ୍ତୁତ କରି ପାରିଲେ । ଚାଷବାସରେ ଉନ୍ନତି ଆଣିବା ସଂଗେସଂଗେ ଅନ୍ୟାନ୍ୟ ଜନହିତକର କାର୍ଯ୍ୟ, ଗରିବି ହଟାଓ କାର୍ଯ୍ୟକ୍ରମ ଓ ଆର୍ଥିକ ବିକାଶ ହେବା ଭଳି ଯୋଜନା ବିଷୟରେ କ୍ରମଶଃ ସଚେତନ ହେଲେ ଏବଂ ନିଜକୁ ସଜାଡ଼ି ନେବାରେ ଉଦ୍ୟମ କଲେ । ତେଣୁ ଅର୍ଥନୈତିକ ବିକାଶର ପଥ କ୍ରମଶଃ ସୁଗମ ହେବାକୁ ଲାଗିଲା । କ୍ରମେ ଲୋକେ ଅଧିକରୁ ଅଧିକ ସଚେତନ ହେବାକୁ ଲାଗିଲେ ଏବଂ ପରିବାରର ସର୍ବବିଧ ଉନ୍ନତି ପାଇଁ ଉଦ୍ୟମ କଲେ ।

ପଲ୍ଲୀଶ୍ରୋତା ମଣ୍ଡଳୀ ଓଡ଼ିଶା ସରକାରଙ୍କ ପ୍ରତ୍ୟେକ ପ୍ରକାର ଯୋଜନାର ରୂପରେଖ ଓ ଜନହିତକର କାର୍ଯ୍ୟସବୁ ଜନସାଧାରଣଙ୍କ

ପାଇଁ ଏବଂ ବିଶେଷକରି ପଲ୍ଲୀ ଅଞ୍ଚଳର ସର୍ବବିଧ ଉନ୍ନତି ପାଇଁ ତଥା ଗ୍ରାମୀଣ ଲୋକଙ୍କ ଅର୍ଥନୈତିକ ବିକାଶ ପାଇଁ କାର୍ଯ୍ୟ ରୂପାୟନକୁ ଲୋକମାନେ ନିଜଗୃହରେ ବସି ଶୁଣିବା ସହ ସଚେତନ ହେବାର ସୁଯୋଗ ପାଇଲେ । ଜିଲ୍ଲାଗ୍ରାମ୍ୟ ଉନ୍ନୟନ ସଂସ୍ଥା ଆନୁକୂଲ୍ୟରେ କାର୍ଯ୍ୟକାରୀ ହେଉଥିବା ସବୁପ୍ରକାରର ଯୋଜନା କାର୍ଯ୍ୟକାରିତାରେ, କୃଷି ଓ ଉଦ୍ୟାନ ବିଭାଗ ମାଧ୍ୟମରେ ଉନ୍ନତ କୃଷି ଯନ୍ତ୍ରପାତି ବ୍ୟବହାର ସାଂଗକୁ ଉନ୍ନତ ସଅଳ ତଥା ଅଧିକ ଅମଳକ୍ଷମ ବିଭିନ୍ନ ଚାଷ ଓ ରବି ଚାଷ, ବିଭିନ୍ନ ସାର ଓ କୀଟନାଶକ ଔଷଧ ବ୍ୟବହାର, ଉନ୍ନତ କପା ଓ ଆଖୁ ଚାଷ, ତୈଳବୀଜ ଜାତୀୟ ଫସଲ ଚାଷ ପ୍ରଭୃତି ବିଷୟରେ ସଚେତନ କରାଇବା ଶିକ୍ଷା ଦିଆଗଲା । ପଶୁସଂପଦର ବିକାଶ ପାଇଁ ଉନ୍ନତ ଜାତୀୟ କିସମ ଗାଈ, ମଇଁଷୀ, ଛେଳି, ମେଣ୍ଢା, କୁକୁଡ଼ା, ବତକ ପାଳନ ଓ ବଂଶ ବୃଦ୍ଧିରେ ଜ୍ଞାନକୌଶଳ ପ୍ରଦାନର ବ୍ୟବସ୍ଥା ହେଲା । ମତ୍ସ୍ୟ ବିଭାଗ ଆନୁକୂଲ୍ୟରେ ଦେଶୀ ମାଛଚାଷ ବଦଳରେ ଉନ୍ନତ ତଥା ଜାତୀୟ କିସମ ମାଛ ଚାଷ, ମଧୁର ଜଳ ଚିଙ୍ଗୁଡ଼ି ଚାଷ ଓ ଉନ୍ନତ କିସମ ମାଗୁର ମାଛ ଚାଷ ପ୍ରଣାଳୀର ବ୍ୟାପକ କ୍ଷେତ୍ର ପ୍ରଦର୍ଶନ ସାଂଗକୁ ଶିକ୍ଷା ଦେବା ଦ୍ୱାରା ଚାଷୀ ନିଜ ଉଦ୍ୟମରେ ବହୁଳ ଭାବରେ ଅଗ୍ରଗତି କରି ଆର୍ଥିକ ବିକାଶ କରିପାରିଲେ । ଶିଳ୍ପୀମାନେ ଶିଳ୍ପ ବିଭାଗ ଆନୁକୂଲ୍ୟରେ ବୃହତ୍ ଶିଳ୍ପ ସାଂଗକୁ କୁଟୀରଶିଳ୍ପ, ଗ୍ରାମ୍ୟ କାରିଗରୀ ଶିଳ୍ପ, ବୟନ ଶିଳ୍ପ, ହସ୍ତ ଶିଳ୍ପ ଇତ୍ୟାଦିରେ ଇଚ୍ଛୁକ ଶିଳ୍ପୀମାନେ ନିଜକୁ ତାଲିମ ପ୍ରାପ୍ତ ହେବା ସହ ଆତ୍ମନିଯୁକ୍ତି କ୍ଷେତ୍ରରେ ବହୁଳ ଭାବରେ ଆଗେଇ ଆସି ନିଜର ଆର୍ଥିକ ମାନଦଣ୍ଡ ଉନ୍ନତ କରିପାରିଲେ । ଏପରି ଭାବରେ ପ୍ରତ୍ୟେକ ବିଭାଗୀୟ ଯୋଜନାମାନଙ୍କରେ ଲୋକେ ନିଜକୁ ସାମିଲ କରିବା ପାଇଁ ଆଗେଇ ଆସିବାରୁ ବିଭିନ୍ନ ଜାତୀୟକରଣ ବ୍ୟାଙ୍କ୍ ଓ ଗ୍ରାମ୍ୟ ବ୍ୟାଙ୍କ୍ ଶାଖାଗୁଡ଼ିକ ସହ ସମବାୟ ବ୍ୟାଙ୍କ୍‌ଗୁଡ଼ିକ ଗ୍ରାମାଞ୍ଚଳରେ ସେମାନଙ୍କ ଶାଖାଗୁଡ଼ିକ ଖୋଲି ହିତାଧିକାରୀ ଚୟନ ସହିତ ବ୍ୟାଙ୍କ୍ ଋଣ ଯୋଗାଣ ଦିଗରେ ଆଗଭର ହେଲେ । ସେହିଭଳି ସ୍ୱାସ୍ଥ୍ୟ ବିଭାଗ ଆନୁକୂଲ୍ୟରେ ଜନସାଧାରଣଙ୍କ ସ୍ୱାସ୍ଥ୍ୟ ସେବା ଦିଗରେ ଉଦ୍ୟମ ଜାରି ରଖି ଚିକିତ୍ସାଳୟ, ସ୍ୱାସ୍ଥ୍ୟ କେନ୍ଦ୍ରମାନଙ୍କରେ ଏବଂ ବିଶେଷ କରି ଗ୍ରାମାଞ୍ଚଳ ଓ ଦୁର୍ଗମ ଅଂଚଳପାଇଁ ଭ୍ରାମ୍ୟମାଣ ସ୍ୱାସ୍ଥ୍ୟ କେନ୍ଦ୍ର ମାଧ୍ୟମରେ ଚିକିତ୍ସା ସୁବିଧା ଯୋଗାଇ ଦିଆଗଲା । ସ୍ୱାସ୍ଥ୍ୟ ମେଳା ମାଧ୍ୟମରେ ଯକ୍ଷ୍ମାରୋଗୀ ସେବା, କୁଷ୍ଠ ରୋଗୀ ସେବା, ମୋତିଆବିନ୍ଦୁ ଆଖି ଅପରେସନ ଦ୍ୱାରା ଚକ୍ଷୁ ଚିକିତ୍ସା କରାଗଲା । ଲୋକମାନଙ୍କୁ ଏବଂ ବିଶେଷକରି ନବଦମ୍ପତିମାନଙ୍କୁ ପରିବାର ନିୟନ୍ତ୍ରଣ ଦିଗରେ ସଚେତନ କରାଯାଇ ସବୁଜ ପତ୍ରିକାଧାରୀ କରିବାରେ ବିଶେଷ ଉଦ୍ୟମ କରାଯିବା ସହ ଜନସଂଖ୍ୟା ନିୟନ୍ତ୍ରଣ ଦିଗରେ ବ୍ୟାପକ ଉଦ୍ୟମ କରାଗଲା । ଦୁରାରୋଗ୍ୟ, ମ୍ୟାଲେରିଆ ନିୟନ୍ତ୍ରଣ ପାଇଁ ବିଶେଷ ଉଦ୍ୟମ କରିବା ସହ ଔଷଧ ବିତରଣ ସାଂଗକୁ ମଶାରୀ ବ୍ୟବହାର ପାଇଁ ଜନସଚେତନ କରାଗଲା ।

ଏଭଳି ଭାବରେ ପଲ୍ଲୀ ଅଂଚଳର ଲୋକମାନଙ୍କୁ ଶିକ୍ଷାଦୀକ୍ଷା ଦିଗରେ ଆଗେଇ ନେବା ସହ ସେମାନଙ୍କର ପାରିବାରିକ ଜୀବନ ସ୍ୱଚ୍ଛଳ ଓ ଆର୍ଥିକ ବିକାଶ ଘଟାଇବାରେ ପଲ୍ଲୀଶ୍ରୋତା ମଣ୍ଡଳୀର ରେଡ଼ିଓ ମାଧ୍ୟମରେ ନିୟମିତ ପ୍ରଚାର କାର୍ଯ୍ୟକ୍ରମ ଚାଲୁ ରହିବାରୁ ଆପେ ଆପେ ସଚେତନତା ବୃଦ୍ଧି ପାଇଲା । ତେଣୁ ସୁଲଭ ମୂଲ୍ୟରେ ମିଳୁଥିବା ରେଡ଼ିଓ ସେଟ୍‌ଟିଏ କିଣିବା ପାଇଁ ପ୍ରତ୍ୟେକ ପଲ୍ଲୀ ଭାଇଭଉଣୀ ନିଜକୁ ସମର୍ଥ କରିପାରିଲେ । ପ୍ରତ୍ୟେକ ଘରେ ରେଡ଼ିଓ ଖଣ୍ଡିଏ ଦେଖିବାକୁ ମିଳିଲା । ଦୁର୍ଗମ ଜଂଗଲ ଅଂଚଳରେ ଏକ ନିରୀହ ପ୍ରଜା ମଧ ରେଡ଼ିଓ ଖଣ୍ଡିଏ ସୁଲଭ ମୂଲ୍ୟରେ କିଣି ମନୋରଂଜନ ପାଇଁ କାର୍ଯ୍ୟକ୍ରମ ଶୁଣିପାରିଲା । ଦେଶବିଦେଶର ଖବର ସମାଚାର ଜାଣିପାରିଲା । ସରକାରଙ୍କ ବିଭିନ୍ନ ଯୋଜନା ବିଷୟରେ ଅବଗତ ହୋଇପାରିଲା । ନିଜର କାର୍ଯ୍ୟଧାରା ଏବଂ ବିକାଶ ପ୍ରଣାଳୀରେ ସଚେତନ ହୋଇ ମାର୍ଜିତ ହେଲା ଏବଂ ଆର୍ଥିକ ଉନ୍ନତି କରି ଉନ୍ନତ ଜୀବନଯାପନ କରି ସୁଖୀ ହୋଇପାରିଲା । ସେଥିପାଇଁ ପଲ୍ଲୀବାସୀ ନିଜ ଉଦ୍ୟମରେ ତଥା ଗୋଷ୍ଠୀଗତ ଭାବରେ ଏକତ୍ରିତ ହୋଇ ପଲ୍ଲୀଶ୍ରୋତା ମଣ୍ଡଳୀମାନ ଗଠନ କରିବାରେ ଲାଗିଲେ । ୨୦ ଜଣ ଚାଷୀଙ୍କୁ ନେଇ ଏହି ପଲ୍ଲୀଶ୍ରୋତା ମଣ୍ଡଳୀମାନ ନିର୍ଦ୍ଧାରିତ ଫର୍ମରେ ଗଠନ କରି ପଂଜୀକରଣ ପାଇଁ ଆଂଚଳିକ ସଂଗଠକ, ପଲ୍ଲୀଶ୍ରୋତା ମଣ୍ଡଳୀଙ୍କ ନିକଟକୁ ପଠାଇଲେ । ତାହା ସଂପୃକ୍ତ କାର୍ଯ୍ୟାଳୟରେ ପଂଜୀକୃତ ହେବା ଫଳରେ ମଣ୍ଡଳୀ ପାଇଁ ଆବଶ୍ୟକ ପ୍ରଶ୍ନପତ୍ର, ଫର୍ମ, ଲଫାଫା ଇତ୍ୟାଦି ମାଗଣାରେ ପାଇପାରିଲେ । ଏହା ସାଂଗକୁ ପ୍ରତ୍ୟେକ ୩ ମାସ ପାଇଁ ପ୍ରତ୍ୟେକ ମଙ୍ଗଳବାର ଓ ଶୁକ୍ରବାର ଦିନମାନଙ୍କ ପାଇଁ ଧାର୍ଯ୍ୟ ଆଲୋଚନାର ବିଷୟବସ୍ତୁ ଓ ଆଲୋଚକଙ୍କ ନାମ ବିଷୟକ ପ୍ରୋଗ୍ରାମ ମଧ ପାଇପାରିଲେ । ନିଜ ରେଡ଼ିଓରୁ ପ୍ରତ୍ୟେକ ମଂଗଳବାର ଓ ଶୁକ୍ରବାର ସନ୍ଧ୍ୟା ଘ.୭.୩୦ ମିନିଟ୍ ସମୟରେ ପଲ୍ଲୀଶ୍ରୋତା ମଣ୍ଡଳୀ କାର୍ଯ୍ୟକ୍ରମ ଶୁଣିପାରିଲେ । ଆଜିକାଲି ଯଦିଓ ଅନେକ ଗଣମାଧ୍ୟମଗୁଡ଼ିକର ପରିଚାଳନା ଦେଖାଯାଉଛି ତଥାପି ରେଡ଼ିଓ ଭଳି ସେଗୁଡ଼ିକ ପଲ୍ଲୀ ଅଞ୍ଚଳରେ ସୁବିଧା ସୁଯୋଗ ଯୋଗାଇ ଦେବା ବ୍ୟୟସାପେକ୍ଷ । ପ୍ରତ୍ୟେକ ପଲ୍ଲୀ ଅଞ୍ଚଳରେ ବିଶେଷ କରି କେ.ବି.କେ. ଅଂଚଳରେ ବା ଜିଲ୍ଲାମାନଙ୍କରେ ନିଶ୍ଚିତ ଭାବରେ ରେଡ଼ିଓ ସେଟ୍‌ର ବ୍ୟାପକ ସୁଲଭତା ଓ ବ୍ୟବହାର ଦେଖିବାକୁ ମିଳେ । ତେଣୁ ରେଡ଼ିଓ ହେଉଛି ପଲ୍ଲୀ ଅଂଚଳମାନଙ୍କ ପାଇଁ ଏକ ବଳିଷ୍ଠ ଉପାଦାନ ଓ ବାର୍ତ୍ତାବହ । ଯାହାକି ପଲ୍ଲୀ ଜୀବନର ସର୍ବଶିକ୍ଷାର ଏକ ମାଧ୍ୟମ ଅଟେ କହିଲେ ଅତ୍ୟୁକ୍ତି ହେବ ନାହିଁ । ପଲ୍ଲୀ ବିକାଶରେ ଏହା ଏବେ ସହାୟକ ଏବଂ ପଲ୍ଲୀଶ୍ରୋତା ମଣ୍ଡଳୀ ଏହାର ଏକ ଘନିଷ୍ଠ ସହଯୋଗୀର ପୃଷ୍ଠଭୂମି ଅଟେ ।

ଆଂଚଳିକ ସଂଗଠକ
ପଲ୍ଲୀଶ୍ରୋତା ମଣ୍ଡଳୀ, ଜୟପୁର

— — —

# ସର୍ବଧର୍ମ ସମନ୍ୱୟ ମତବାଦ

ତାରାକାନ୍ତ ମହାନ୍ତି

ମହାତ୍ମା ଗାନ୍ଧୀଙ୍କ ରାମଧୂନ ଓ ସନ୍ଥ ବିନୋବାଙ୍କ ସର୍ବଧର୍ମ ନାମମାଳା ଓଁ ତତ୍‌ସତ୍ ଶ୍ରୀ ନାରାୟଣ ତୁ, ପୁରୁଷୋତ୍ତମ ଗୁରୁ ତୁ ସିଦ୍ଧ ବୁଦ୍ଧ ତୁ, ସ୍କନ୍ଦ ବିନାୟକ ସବିତା ପାବକ ତୁ, ବ୍ରହ୍ମ ମଜ୍‌ଦା ତୁ, ୟାହୋବ୍ୟ ଶକ୍ତି ତୁ, ଯୀଶୁ ପିତା ପ୍ରଭୁ ତୁ, ରୁଦ୍ର ବିଷ୍ଣୁ ତୁ ରାମକୃଷ୍ଣ ତୁ ରହିମ୍ ତାଓ ତୁ ବାସୁ ଦେବ ଗୋ, ବିଶ୍ୱରୂପ ତୁ, ଚିଦାନନ୍ଦ ହରି ତୁ ଅଦ୍ୱିତୀୟ ତୁ, ଅକାଳ ନିର୍ଭୟ ଆତ୍ମଲିଙ୍ଗ ଶିବ ତୁ ସନ୍ଥ ବିନୋବାଙ୍କ ରଚିତ ସର୍ବଧର୍ମ ନାମ ମାଳାର ମାର୍ମିକ ଅନୁବାଦ ନିମ୍ନରେ ପ୍ରଦତ୍ତ ହେଲା ।

**ଓଁ ତତ୍‌ସତ୍** - ହରି ଓମ୍ ତତ୍‌ସତ୍ । ଏକମାତ୍ର ପରମବ୍ରହ୍ମ ହେଉଛନ୍ତି ସତ୍ୟ, ଆଦିଗୁରୁ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ଭାଷାରେ ବ୍ରହ୍ମ ସତ୍ୟ । ଜଗତ୍ ମିଥ୍ୟା ।

**ଶ୍ରୀ ନାରାୟଣ** - ଶଙ୍ଖ-ଚକ୍ର-ଗଦା-ପଦ୍ମଧାରୀ ଯେକି ଆଦି ହିନ୍ଦୁ ଉପାସ୍ୟ । ହେ ଭଗବାନ୍ ତୁମେ ହେଉଛ ସେହି ସତ୍‌ଚିତ୍ ଆନନ୍ଦ - ଚିଦାନନ୍ଦ ପୁରୁଷୋତ୍ତମ ଗୁରୁ ତୁ ତୁମେ ହେଉଛ ସେହି ମର୍ଯ୍ୟାଦା ପୁରୁଷ ଏବଂ ପୁରୁଷମାନଙ୍କ ମଧ୍ୟରେ ସର୍ବୋତ୍ତମ, ତୁମଠାରେ ସେହି ରାମଙ୍କୁ ଦର୍ଶନ କରୁଛୁ । ସିଦ୍ଧ ବୁଦ୍ଧ ତୁ ତୁମଠାରେ ସେହି ବୁଦ୍ଧ ବା ଜ୍ଞାନୀଙ୍କୁ ସନ୍ଦର୍ଶନ କରୁଛୁ । ତୁମେ ମଧ୍ୟ ସେହି ସିଦ୍ଧି ବୌଦ୍ଧବତାର । ସେହି ଗୌତମ ବା ଶାକ୍ୟ ସିଂହ ।

**ସ୍କନ୍ଦ ବିନାୟକ** - ତୁମେ ହେଉଛ ସେହି ଦେବତାମାନଙ୍କ ସେନାପତି ସେହି କାର୍ତ୍ତିକ, କାର୍ତ୍ତିକେୟ ଓ କାର୍ତ୍ତିକେଶ୍ୱର, ତୁମକୁ ସିଦ୍ଧିପ୍ରଦ, ବିଘ୍ନ ବିନାଶନ ଶ୍ରୀ ଗଣେଶ ରୂପରେ ପ୍ରତିପାତ କରୁଛି ହେ ଗଜାନନ ।

**ସବିତା** - ତୁମେ ହେଉଛ ସେହି ସକଳ ଶକ୍ତିର ଆଧାର ସୂର୍ଯ୍ୟ ଦେବ ।

**ପାବକ** - ତୁମେ ହେଉଛ ସେହି ଅଗ୍ନି । ଈଶ୍ୱରଙ୍କ ସୃଷ୍ଟି ପଞ୍ଚଭୂତର ଶ୍ରେଷ୍ଠଭୂତ । ତୁମେ ପାର୍ସିଙ୍କର (ଇରାନ୍‌ରେ ବସବାସ କରୁଥିବା ଲୋକମାନଙ୍କର ଉପାସ୍ୟ ଦେବତା, ଭଗବତ୍ ସୃଷ୍ଟିର ଶ୍ରେଷ୍ଠ ବିଦ୍ୟା ହେଉଛି ଅଗ୍ନି ବିଦ୍ୟା ।

**ବ୍ରହ୍ମ ମଜ୍‌ଦାତୁ** - ତୁମେ ହେଉଛ ସେହି ଅଗ୍ନି ବ୍ରହ୍ମ ଜୋରାଷ୍ଟର (ପାର୍ସି ଧର୍ମ ପ୍ରଚାରକଙ୍କ) ତୁ ହେଉଛୁ ସେହି ବ୍ରହ୍ମ ।

**ୟାହୋବା ଶକ୍ତି ତୁ** - ତୁମେ ହେଉଛ ସେହି (Je-ho-vah) ଖ୍ରୀଷ୍ଟିୟାନମାନଙ୍କ ଜେହେବା, ଓଲ୍ଡ ଟେଷ୍ଟାମେଣ୍ଟରେ (Old Testament) ବର୍ଣ୍ଣିତ ଈଶ୍ୱର ।

**ଯୀଶୁପିତା ପ୍ରଭୁ ତୁ** - ତୁମେ ସେହି କ୍ଷମାବତାର । ପ୍ରଭୁଙ୍କର ପରମ ପୁତ୍ର ଯୀଶୁଖ୍ରୀଷ୍ଟ ।

**ରୁଦ୍ର ବିଷ୍ଣୁ ତୁ** - ତୁମେ ହେଉଛ ସେହି ସଦାଶିବ, ମଙ୍ଗଳମୟ ଶିବ, ନୀଳକଣ୍ଠ, ତାଣ୍ଡବଧାରୀ ବିଷ୍ଣୁ ଭଗବାନଙ୍କର ସହସ୍ରନାମ ଅଛି । ସେ କ୍ଷୀର ସାଗରରେ ଶୟନ କରିଥାନ୍ତି ଏବଂ ଲକ୍ଷ୍ମୀମାତା ତାଙ୍କର ପାଦ ସେବା କରିଥାନ୍ତି ।

**ରହିମ୍ ତାଓ ତୁ** - ସନ୍ଥ କବୀରଙ୍କ ଭାଷାରେ ଯିଏ ହିନ୍ଦୁର ଉପାସ୍ୟ ରାମ, ସେ ମୁସଲମାନଙ୍କର ରହିମ୍, ଯିଏ ହିନ୍ଦୁମାନଙ୍କର କୃଷ୍ଣ, ସେ ହେଉଛନ୍ତି ମୁସଲମାନଙ୍କର କରିମ୍ ।

**ତାଓ ତୁ** - ଚୀନ୍‌ର ପରମ ନୀତିବାଦୀ ତୁମେ ହେଉଛ ସେହି ତାଓବା ଲାଓତ୍-ଜେ (Laostse)

**ବାସୁଦେବ ଗୋ** - କୃଷ୍ଣ ହେଉଛନ୍ତି, ବସୁଦେବଙ୍କର ପୁତ୍ର । ତେଣୁ ତାଙ୍କର ଅନ୍ୟ ନାମ ବାସୁଦେବ । ଭକ୍ତ ଶ୍ରେଷ୍ଠ ବାଳକ ଧ୍ରୁବ ଦ୍ୱାଦଶାକ୍ଷର ନାମ 'ଓଁ ନମୋ ଭଗବତେ ବାସୁଦେବାୟ' ଜପି ବିଷ୍ଣୁ ଭଗବାନଙ୍କର ସାକ୍ଷାତ୍ ଦର୍ଶନ ଲାଭ କରିଥିଲେ ।

**ବିଶ୍ୱରୂପ** - ତୁ ସେହି ସାକାର ପରଂବ୍ରହ୍ମ ଯେଉଁଠି ନବଗ୍ରହ, ପଞ୍ଚଭୂତ, ସ୍ଥାବର ଜଙ୍ଗମ ସବୁ ଦେବଦେବୀ ସେହି ଉଦର ବ୍ରହ୍ମାଣ, ମଧ୍ୟରେ ଅଛନ୍ତି ।

**ଚିଦାନନ୍ଦ ହରି ତୁ** - ତୁ ହେଉଛୁ ସେହି ଚିତ୍ ଓ ଆନନ୍ଦର ସମଷ୍ଟି । ତେଣୁ ସେହି ସଚ୍ଚିଦାନନ୍ଦ ହରି । ଜୀବର ପାପ ତାପ ଯେ ହରଣ କରନ୍ତି ସେ ହେଉଛନ୍ତି ହରି ।

**ଅଦ୍ୱିତୀୟ** - ତୁ ଏକ, ତୁ ଦୁଇ ନୁହେଁ ବା Dual ନୁହେଁ, ତୁ Non-Dual, ଆଦିଗୁରୁ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ମତରେ ତୁ ଏକ ସେହି ପରଂବ୍ରହ୍ମ, ବ୍ରହ୍ମ ସତ୍ୟ, ଜଗତ୍ ମିଥ୍ୟା ।

**ଅକାଳ ନିର୍ଭୟ -** କାଳ ତୋ'ଠାରୁ ଉତ୍ପନ୍ନ । ତୁ ସମସ୍ତଙ୍କର ଅଭୟଦାତା, ତୋର ଅଭୟ ମୁଦ୍ରା ଜଗତ୍‌ବାସୀଙ୍କ ପାଇଁ ଚିର ଉନ୍ମୁକ୍ତ । ସେଥିପାଇଁ ଯୋଗୀମାନେ ତୋ'ର ଅଭୟ ଚରଣକୁ ଧ୍ୟାନ କରିଥାଆନ୍ତି ।

**ଆତ୍ମ ଲିଙ୍ଗ ଶିବ ତୁ -** ତୁ ଶିବ ଓ ଶକ୍ତି । ତୋ'ରି ଲାଗି ଏ ସୃଷ୍ଟି । ଶିବ ଶକ୍ତି ଯୁକ୍ତ ହୋଇଗଲେ ସଂସାର ସୃଷ୍ଟି । ଶକ୍ତି ବିନା ଶିବ ଶବରେ ପରିଣତ ହୋଇଯାଏ । ଏଣୁ ଶିବ ଲିଙ୍ଗ ଶକ୍ତି ସହିତ ମିଳିତ ହୋଇଥିବାରୁ ସୃଷ୍ଟି ସମ୍ଭବ ହୋଇଛି ।

ସେହିପରି ବାପୁଜୀଙ୍କ ପ୍ରିୟ ରାମ ଧୂନ୍‌ରେ ମଧ୍ୟ ବିଶ୍ୱ କଲ୍ୟାଣ ପାଇଁ ଓ ସର୍ବଧର୍ମ ସମନ୍ୱୟ ମତବାଦକୁ ସୁପ୍ରତିଷ୍ଠିତ କରିବା ପାଇଁ ଅନେକ ଉପାଦେୟ ତଥ୍ୟ ଭରି ରହିଛି ।

## ରାମଧୂନ୍

ରଘୁପତି ରାଘବ ରାଜା ରାମ, ପତିତ ପାବନ ସୀତାରାମ ।
ମଙ୍ଗଳ ପରଶନ ରାଜାରାମ, ପତିତପାବନ ସୀତାରାମ ॥
ଶୁଭ ଶାନ୍ତି ବିଧାୟକ ରାଜାରାମ, ପତିତ ପାବନ ସୀତାରାମ ।
ବରାଭୟ ଦାନରତ ରାଜାରାମ, ପତିତପାବନ ସୀତାରାମ
ଦୀନ ଦୟାଳ ରାଜାରାମ, ପତିତପାବନ ସୀତାରାମ ।
ଈଶ୍ୱର ଆଲ୍ଲା ତେରେ ନାମ, ସବ୍‌କୋ ସନ୍‌ମତି ଦେ ଭଗବାନ
ଆଲ୍ଲା ମଜଦ୍, ଜିହୋରାରାମ, ଏକହୀ ମାଲିକ ତୁଝେ ପ୍ରଣାମ,
ରାମ ରହୀମ୍ ତେରେ ନାମ, ସବ୍‌କୋ ସନ୍‌ମତି ଦେ ଭଗବାନ
କୃଷ୍ଣ କରିମ ତେରେ ନାମ, ସବ୍‌କୋ ସନ୍‌ମତି ଦେ ଭଗବାନ ॥

କେଉଁ ନାମ ଧରି ଡାକିବି ତୁମ୍ଭକୁ ତୁମ୍ଭେ ଯେ ସର୍ବନାମ । ଗାନ୍ଧୀଙ୍କ ପ୍ରିୟ 'ରାମଧୂନ'ରେ ସର୍ବଧର୍ମ ସମନ୍ୱୟ ମତବାଦର ପରିସ୍ଫୁଟନ ଘଟିଛି । ସେ କେବଳ ତାଙ୍କ ପ୍ରିୟତମ, ମର୍ଯ୍ୟାଦା ପୁରୁଷ ସତ୍ୟ, ଶାନ୍ତି, ନ୍ୟାୟର ପ୍ରତୀକ ରାମଚନ୍ଦ୍ରଙ୍କୁ ବନ୍ଦନା କରି ନାହାନ୍ତି । ଦୁନିଆର ମାଲିକ ସେହି ପରମେଶ୍ୱରଙ୍କୁ ମଧ୍ୟ ବିଭିନ୍ନ ନାମରେ ସମ୍ବୋଧନ କରିଛନ୍ତି । ସେ ସମସ୍ତଙ୍କୁ ସନ୍‌ମତି (ସତ୍ + ମତି) ଦେବାକୁ ଈଶ୍ୱର ଆଲ୍ଲାଙ୍କୁ ପ୍ରାର୍ଥନା କରିଛନ୍ତି । ତୁମେ ଆଲ୍ଲା, ତୁମେ ଖ୍ରୀଷ୍ଟିୟାନ୍‌ମାନଙ୍କ ପୂଜିତ ଓଲ୍ଡ ଟେଷ୍ଟାମେଣ୍ଟ (Old Testament)ର ସେହି ଈଶ୍ୱର ଜିହେବା, ତୁମେ ଜୋରାଷ୍ଟର ଧର୍ମର ସେହି ଜୋରାଷ୍ଟର ତୁମେ ପ୍ରଭୁ ନାନା ନାମ ବହିଅଛ । ତେଣୁ ତୁମେ ଏ ଦୁନିଆର କେବଳ ମାଲିକ । ତେଣୁ ତୁମକୁ ସହସ୍ର ସହସ୍ର ବାର ପ୍ରଣାମ କରୁଛି । ତୁମେ ସର୍ବଧର୍ମ ସମନ୍ୱୟ ମତବାଦର ପ୍ରଥମ ପ୍ରବକ୍ତା କବୀରଙ୍କର ସେହି ପ୍ରିୟ ରାମ୍, ରହିମ୍ ଓ କୃଷ୍ଣ କରିମ୍ । ଯେ ମୁସଲମାନଙ୍କର ପ୍ରିୟ ରହିମ୍, ସେ ହେଉଛନ୍ତି ହିନ୍ଦୁମାନଙ୍କର ପରମ ଆରାଧ୍ୟ ଶ୍ରୀରାମ, ଯେ ମୁସଲମାନଙ୍କର ପ୍ରିୟ କରିମ୍, ସେ ହେଉଛନ୍ତି ହିନ୍ଦୁଙ୍କର କୃଷ୍ଣ । ତେଣୁ ସମସ୍ତଙ୍କୁ ସନ୍‌ମତି ଦେ ଏବଂ ଜଗତ୍‌ବାସୀ 'ବସୁଧୈବ କୁଟୁମ୍ବକମ୍' ଆଦର୍ଶରେ ବ୍ରତୀ ହୁଅନ୍ତୁ ଓ ବିଶ୍ୱ ମୈତ୍ରୀ ଓ ଭ୍ରାତୃତ୍ୱର ଆଦର୍ଶରେ ଅନୁପ୍ରାଣିତ ହୁଅନ୍ତୁ । ରମ୍ୟନ୍ତି ଇତିରାମ, ଯେଉଁ ପରମ ସତ୍ତା ସମସ୍ତଙ୍କର ହୃଦୟରେ ବିଚରଣ କରିଥାନ୍ତି, ମୁନିଋଷିମାନଙ୍କଠାରୁ ସାଧାରଣ କୀଟ ପତଙ୍ଗ ଓ ସମସ୍ତଙ୍କୁ ଉଲ୍ଲସିତ କରିଥାଆନ୍ତି । ସେହି ରଘୁବଂଶର କୁଳ ତିଳକ ମର୍ଯ୍ୟାଦା ପୁରୁଷ, ରଘୁବଂଶ ବା ସୂର୍ଯ୍ୟବଂଶର ରାଜା ରାମଚନ୍ଦ୍ରଙ୍କୁ ପ୍ରଥମେ ବନ୍ଦନା କରିଛନ୍ତି । ସତ୍ୟର ଏକନିଷ୍ଠ ପୂଜାରୀ ହେଉଛନ୍ତି ପ୍ରଭୁ ଶ୍ରୀରାମଚନ୍ଦ୍ର । ସେ ସତ୍ୟ ସନ୍ଧ, ପିତୃସତ୍ୟ ପାଳନ କରି ସେ ଦୀର୍ଘ ଚଉଦବର୍ଷ ଉଦାସୀ ଜୀବନ ବିତାଇଥିଲେ । ସେ ପତିତପାବନ । ଗୌତମ ଋଷିଙ୍କ ପତ୍ନୀ ଅହଲ୍ୟା ଯେ ଗୌତମଙ୍କ ଅଭିଶାପରେ ପାଷାଣୀ ହୋଇଯାଇଥିଲେ ତାଙ୍କୁ ସେ ଉଦ୍ଧାର କରିଛନ୍ତି । ବନବାସ କାଳରେ ଧୀବରଙ୍କୁ ମଧ୍ୟ ସେ ଉଦ୍ଧାର କରିଛନ୍ତି । ଜଟାୟୁକୁ ମଧ୍ୟ ଉଦ୍ଧାର କରିଛନ୍ତି, ପ୍ରକୃତରେ ସେ ହିଁ ପତିତପାବନ ନାମଧାରୀ । ଶ୍ରୀରାମଙ୍କ ଗଙ୍ଗାରେ ନୌଯାତ୍ରା ବେଳେ ଶ୍ରୀରାମଚନ୍ଦ୍ରଙ୍କର ପଦ ପ୍ରକ୍ଷାଳନ କରି ଡଙ୍ଗାରେ ବସାଇଥିଲେ । ସେ ଶୁଣିଥିଲେ ଯେ ପ୍ରସ୍ତର ରୂପୀ ଅହଲ୍ୟା ଜୀବନ୍ତ ଅହଲ୍ୟାରେ ପରିଣତ ହୋଇଥିଲେ । ତେଣୁ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ 'ଶ୍ରୀରାମଙ୍କ ଗଙ୍ଗାରେ ନୌଯାତ୍ରା' ପ୍ରସଙ୍ଗରେ ଲେଖିଛନ୍ତି -

ବାଲି ପଡ଼ି ତୋ ଚରଣୁ ଆଶଙ୍କା ଉପୁଜେ ଏଣୁ ପଥରେ ପ୍ରସ୍ତର ଅବଳା ହୋଇଲା । ଏଣୁ ବିଜ୍ଞାନୀ କୈବର୍ତ୍ତ ଆଶଙ୍କା କଲା ଯେ ଯଦି ଶ୍ରୀରାମଚନ୍ଦ୍ରଙ୍କର ପଦରଜ ଏହି ନୌକାରେ ପଡ଼େ, ତାହା ଯଦି ନାୟିକା ହୋଇଯାଏ ତେଣୁ ତା'ର ଧୀବରବୃତ୍ତି ଚାଲିଯିବ । ତା' ଭେଳା ବୁଡ଼ିଯିବ ଓ ସଂସାର ଚଳାଇ ପାରିବନାହିଁ । ତେଣୁ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଯଥାର୍ଥରେ ଲେଖିଛନ୍ତି -

ବିଜ୍ଞାନୀ କୈବର୍ତ୍ତ ଧୋଇଲା
ବିଶ୍ୱେ ପତିତପାବନ ନାମ ରହିଲା ।

ଏହାଛଡ଼ା ସେ ଶବରୀର ଅଇଁଠା ବରକୋଳି ଖାଇଥିଲେ । ଗ୍ରୀସ୍‌ର ମହାପୁରାଣ 'ଇଲିୟାଡ୍' ପରି ରାମାୟଣ ହେଉଛି ଏକ ମହାନ୍ ଗ୍ରନ୍ଥ ଯେଉଁଥିରୁ ସତ୍ୟନିଷ୍ଠା ସମ୍ପର୍କରେ ପ୍ରେରଣା ମିଳେ । ପ୍ରଭୁ ଶ୍ରୀରାମଚନ୍ଦ୍ର ହେଉଛନ୍ତି ମଙ୍ଗଳହାରୀ, ସବୁ ଭବଭୟକୁ ସେ ହଟାଇ ଦିଅନ୍ତି ଏବଂ ଶୁଭ, ଶାନ୍ତି ପ୍ରଦାନକାରୀ । ସେ ତାଙ୍କର ଭକ୍ତମାନଙ୍କ ଲାଗି ସବୁବେଳେ ଅଭୟ ମୁଦ୍ରା ଉନ୍ମୋଚନ କରିଥାଆନ୍ତି । ରାମନାମ ବିପଦ ଭଞ୍ଜନ ନାମ, ସୁଗ୍ରୀବକୁ ସେ ଅଭୟ ପ୍ରଦାନ କରିଥିଲେ ଏବଂ ବାଳୀକୁ ବଧ କରି କିଷ୍କିନ୍ଧ୍ୟା ରାଜ୍ୟ ତାଙ୍କୁ ପ୍ରଦାନ କରିଥିଲେ । ତାରା ସହିତ ସୁଗ୍ରୀବର ବିବାହ ମଧ୍ୟ ସମ୍ପନ୍ନ କରିଥିଲେ । ଲଙ୍କାରେ ରାବଣ ଦ୍ୱାରା ଉତ୍ପୀଡ଼ିତ ରାବଣର ଭାଇ ବିଭୀଷଣକୁ ଅଭୟ ପ୍ରଦାନ କରିଥିଲେ । ରାବଣର ନିଧନ ପରେ ବିଭୀଷଣକୁ ଲଙ୍କା କଟକର ରାଜା କରାଇ ମନ୍ଦୋଦରୀ ସହିତ ବିବାହ ଦେଇଥିଲେ । ସେ ପ୍ରଭୁ ଦୀନଦୟାଳା । ସେ ସବୁ ଦରିଦ୍ରଙ୍କ ପ୍ରତି ସଦା ଅନୁକମ୍ପା ପ୍ରଦର୍ଶନ କରିଥାଆନ୍ତି । ମଙ୍ଗଳମୟ ଭଗବାନ ଶିବ ସର୍ବଦା ରାମଙ୍କର ଗୁଣଗାନ କରିଆସୁଛନ୍ତି ଓ ରାମଧ୍ୟାନରେ ସଦା ନିମଗ୍ନ । ସେ ପ୍ରଜାନୁରଞ୍ଜନ ଓ ପ୍ରଜାଙ୍କର

ମଙ୍ଗଳ ପାଇଁ ସର୍ବଦା ଧ୍ୟାନ ଦେଉଥିଲେ । ରଞ୍ଜନ ଶବ୍ଦରୁ 'ରାଜା' ଶବ୍ଦ ଆସିଛି । ସେ ପ୍ରଜାଙ୍କ ହିତକାରୀ । ତେଣୁ ଗାନ୍ଧିଜୀ ରାମଚନ୍ଦ୍ରଙ୍କର ଆଦର୍ଶରେ ପିଲାଦିନରୁ ଅନୁପ୍ରାଣିତ ହୋଇଥିଲେ ଓ ନାଥୁରାମ୍ ଗଡ୍‌ସେର ଗୁଳି ଯେତେବେଳେ ତାଙ୍କ ଛାତିରେ ବାଜିଲା ସେ 'ହେ ରାମ୍' କହି ଟଳି ପଡ଼ିଥିଲେ । ପରମାତ୍ମା ରାମ ସବୁବେଳେ ତାଙ୍କ ହୃଦୟରେ ବିଚରଣ କରୁଥିଲେ । ଶୟନେ, ସ୍ୱପନେ ଏବଂ କାର୍ଯ୍ୟ କରୁଥିବାବେଳେ ରାମ ଥିଲେ ତାଙ୍କର ଶ୍ରେୟ ଓ ପ୍ରେୟ । ଏଇ ଭାରତରେ ରାମଙ୍କ ପରେ କେତେ ରାଜା ଆସିଛନ୍ତି ଓ ପୃଥିବୀ ପୃଷ୍ଠରୁ ବିଦାୟ ନେଇଛନ୍ତି ମାତ୍ର ଏପର୍ଯ୍ୟନ୍ତ କେଉଁ ଶ୍ରେଷ୍ଠ ପ୍ରାତଃ ସ୍ମରଣୀୟ ରାଜାଙ୍କୁ ଭାରତବାସୀ ଓ ବିଶ୍ୱବାସୀ ଭୁଲି ପାରି ନାହାନ୍ତି ସେ ହେଉଛନ୍ତି -

ରଘୁପତି ରାଘବ ରାଜା ରାମ
ପତିତପାବନ ସୀତାରାମ ।

ତେଣୁ ବିଶ୍ୱରେ ଓ ଭାରତରେ ସର୍ବଧର୍ମ ସମନ୍ୱୟ ମତବାଦକୁ ସୁପ୍ରତିଷ୍ଠିତ କରିବାରେ ମହାତ୍ମା ଗାନ୍ଧୀଙ୍କ ରାମଧୂନ ଓ ସନ୍ଥ ବିନୋବାଙ୍କ ରଚିତ ସର୍ବଧର୍ମ ନାମମାଳା ପରି ସବୁଧର୍ମ, ସଂସ୍କୃତି, ଭାଷା ମଧ୍ୟରେ ଗୋଟିଏ ଗୋଟିଏ ସେତୁ ଭଳି କାର୍ଯ୍ୟ କରିବ । ମୌଳବାଦୀ ବା Fundamentalistଙ୍କ ଚକ୍ରାନ୍ତରୁ ଯେଉଁମାନେ ଧର୍ମର ପ୍ରକୃତ ସଂଜ୍ଞା ନିରୂପଣ ନକରିପାରି ଜନମତକୁ ବିଭ୍ରାନ୍ତ କରୁଛନ୍ତି ଏହି ସମୟରେ ସର୍ବଧର୍ମ ସମନ୍ୱୟ ମତବାଦକୁ ସୁପ୍ରତିଷ୍ଠିତ କରିବାକୁ ପଡ଼ିବ । ବର୍ତ୍ତମାନର ଲୋଡ଼ା 'Mass Spiritual Awakening' ବା ଗଣ ଆଧ୍ୟାତ୍ମିକ ଜାଗରଣ ।

ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ସମ୍ପର୍କରେ ଜାତିର ଜନକ ମହାତ୍ମା ଗାନ୍ଧୀ କହିଥିଲେ, 'ପ୍ରଭୁ ଯୀଶୁଖ୍ରୀଷ୍ଟ କେବଳ ଖ୍ରୀଷ୍ଟିୟାନ ଧର୍ମାବଲମ୍ବୀମାନଙ୍କର ଏକାନ୍ତ ସର୍ବସ୍ୱ ନୁହନ୍ତି । ଯୀଶୁଖ୍ରୀଷ୍ଟଙ୍କ କ୍ଷମା ଓ ପ୍ରେମର ବାଣୀ ବିଶ୍ୱର ସମଗ୍ର ମାନବ ସମାଜ ପାଇଁ ଉଦ୍ଦିଷ୍ଟ । ଏଣୁ କୌଣସି ମହାପୁରୁଷଙ୍କୁ ସେହି ସମ୍ପ୍ରଦାୟର ଗଣ୍ଡି ମଧ୍ୟରେ ଆବଦ୍ଧ କରି ରଖିବା ଉଚିତ ନୁହେଁ । ମହାତ୍ମା, କବୀର ଓ ରାମକୃଷ୍ଣ ପରମହଂସଙ୍କ ପରେ ସର୍ବଧର୍ମ ସମନ୍ୱୟର ବାର୍ତ୍ତା ପ୍ରଚାର କରିଥିଲେ ଓଡ଼ିଶାର ଦୁଇଜଣ ପରମ ସନ୍ଥ । ଜଣେ ହେଲେ ଓଡ଼ିଶାର ଶାକ୍ୟ ମୁନି ସନ୍ଥ ଅରକ୍ଷିତ ଦାସ ଯେକି ଯାଜପୁର ଜିଲ୍ଲା ବଡ଼ଚଣା ଥାନା ଅନ୍ତର୍ଗତ ଓଳାସୁଣୀ ଗୁମ୍ଫାରେ ସିଦ୍ଧିଲାଭ କରି ତାକୁ ତାଙ୍କର ଧର୍ମକ୍ଷେତ୍ର ଓ କର୍ମକ୍ଷେତ୍ର ରୂପେ ବାଛି ନେଇଥିଲେ । ସେ ସେଠି ଏକବ୍ରହ୍ମ ନାମ ଉଦ୍‌ଘୋଷିତ କରି ପ୍ରଚଳିତ ଧର୍ମପ୍ରଥା ଓ କୁ-ଜାତିପ୍ରଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ତାଙ୍କ ପରେ ପୁରୀ ଜିଲ୍ଲା ଗୋପଥାନା ଅନ୍ତର୍ଗତ ଓ କାକଟପୁର ମା' ମଙ୍ଗଳା ସନ୍ନିକଟ ନୟାହାଟସ୍ଥିତ ପ୍ରାଚୀଗୁରୁ ଧର୍ମକ୍ଷେତ୍ରର ପ୍ରାକ୍ତନ କ୍ଷେତ୍ରଜ୍ଞ ପ୍ରେମାଚାର୍ଯ୍ୟ ବାବା ମଧୁସୂଦନ (୧୯୧୯-୮୩) ସର୍ବଧର୍ମ ସମନ୍ୱୟ ମତବାଦକୁ ସୁପ୍ରତିଷ୍ଠିତ କରିବା ପାଇଁ ଚାରିଦଶନ୍ଧିରୁ ଊର୍ଦ୍ଧ୍ୱକାଳ ମସି ଚାଳନା କରିଥିଲେ । ସେ ପ୍ରାଚୀ-କବୀର ଓ ପ୍ରାଚୀ-ରାମକୃଷ୍ଣ ନାମରେ ଅଭିହିତ, ହୋଇଛନ୍ତି । ସର୍ବଧର୍ମ ସମନ୍ୱୟ ମତବାଦ ସମ୍ପର୍କରେ ତାଙ୍କର ୪୮ ଗୋଟି କବିତାକୁ ନେଇ ତା.୨୭.୭.୮୪ରିଖରେ ପ୍ରାଚୀ-ମଧୁ ପ୍ରକାଶନୀ ସଂସ୍ଥା ତରଫରୁ 'ସର୍ବଧର୍ମ ସମନ୍ୱୟ ଗୀତିଗୁଚ୍ଛ' ନାମରେ ଏକ କବିତାବଳୀ ପ୍ରକାଶିତ ହୋଇଛି, ଯେଉଁଥିରୁ କେତେକ ପଦ୍ୟର ଉଦ୍ଧୃତାଂଶ ନିମ୍ନରେ ପ୍ରଦତ୍ତ ହେଲା ।

୧. ସମସ୍ତଙ୍କର ଗୋଟିଏ ଧର୍ମ
ସତ୍ୟ, ଶାଶ୍ୱତ, ସାମ୍ୟ, ପ୍ରେମ
ସମସ୍ତଙ୍କର ଗୁରୁ ଗୋଟିଏ, ଆତ୍ମା ଅଟଇ
ତାଙ୍କରି ନାମ ।

୨. ସବୁଧର୍ମର ମୌଳିକ ସତ୍ୟ,
ଜ୍ଞାନ, ପ୍ରେମ ଓ ଐକ୍ୟ ଅଟେ ।

୩. ଏକ ପ୍ରଭୁ ନାନା ନାମ ବହିଣ ଅଛନ୍ତି
ଜଳକୁ ଯେସନେ ନୀର, ପାଣି ବୋଲୁଥାନ୍ତି ।
ସେହି କୃଷ୍ଣ, ଖ୍ରୀଷ୍ଟ, ରହିମ୍ ସଗୁଣ ବୋଲାନ୍ତି ।
ନିର୍ଗୁଣରୁ ଆସି ପୁଣି ନିର୍ଗୁଣେ ମିଶନ୍ତି ।

୪. ସବୁ ଧରମର ମୌଳିକ ସତ୍ୟ ଗୋଟିଏ ଜାଣ
ଧର୍ମ, ଭଗବାନ, ମହାପୁରୁଷ ଆତ୍ମା ଅଭିନ୍ନ ।
ସତ୍ୟ ଧର୍ମ ଅଟଇ ଆତ୍ମା ସେ ଧର୍ମେ ରଖ ମନ ।
ଆତ୍ମ ଜ୍ଞାନ ବିନା ମାନବ ଅଟେ ପଶୁ ସମାନ ।

୫. ସକଳ ଧର୍ମ ସମନ୍ୱୟ ମଣ
ବିଭିନ୍ନତା ମଧ୍ୟେ ଏକତା ଆଣ ।

୬. ଧର୍ମ ନୁହେଁ ବକ୍ତୃତା ସାମ୍ପ୍ରଦାୟିକ ମତବାଦ
ଧର୍ମଟି ପରମାତ୍ମା ସହିତ ଆତ୍ମାର ସମ୍ବନ୍ଧ
ଲୋକ ସେବା ଲୋକ ହିତଟି ଅଟେ ଅସଲ ଧର୍ମ
ସତ୍ୟ, ଅହିଂସା, ସଂଯମାଦି ପାଳି କର କରମ ।

୭. ଧର୍ମର ଅର୍ଥଟି କେବଳ ନାମ ବା ସମ୍ପ୍ରଦାୟ ନ ବୁଝାଏ
ବ୍ରହ୍ମେ ପଲବ୍‌ଧି, ଲୋକ ସେବା ଯେ କରେ
ଧର୍ମାର୍ଥ ବୁଝେ ସେ ସ୍ୱୟେଂ

୮. ରାମ, କୃଷ୍ଣ, ରହିମ୍, ଯୀଶୁ, ବୁଦ୍ଧ ବୋଲି
ଯେ ନାମେ ଡାକିଲେ ଶୁଣନ୍ତି ସେ ହରି
ନ ଶୁଣନ୍ତି ଉଚ୍ଚେ ଡାକୁଥିଲେ ନିତି
ପ୍ରେମ ଭରା କଣ୍ଠେ ଡାକିଲେ ଶୁଣନ୍ତି ।

୯. କେ କହେ ମନ୍ଦିରେ କେ କହେ ଗୀର୍ଜାରେ
ମସ୍‌ଜିଦ୍‌ରେ ରହିଛନ୍ତି କିଏ ବୋଲେ
ପ୍ରଭୁ ପୂର୍ଣ୍ଣ ସର୍ବଘଟେ ସର୍ବ ଠାବେ
ଯହିଁ ପ୍ରେମେ ଡାକ ତହିଁ ସେ ଶୁଣିବେ ।

ଉପନିର୍ଦ୍ଦେଶକ ତଥା ଉପଶାସନ ସଚିବ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର

# ଉଦ୍ଧବଙ୍କର ବ୍ରଜଯାତ୍ରା

ପଣ୍ଡିତ ଘନଶ୍ୟାମ ମିଶ୍ର

ଲୀୟତାଂ ସୁରତୋପଙ୍ଗୋ ମମ ମନ୍ଦମତିର୍ମତି
ମତ୍ ସର୍ବସ୍ୱ ପଦାମ୍ଭୋଜୌ ରାଧାମଦନ ମୋହନୌ
(ଶ୍ରୀସନାତନ ଗୋସ୍ୱାମୀ)

**ଉ**ପନିଷଦ୍ ଘୋଷଣା କରିଛନ୍ତି, 'ସୁଖଂ ମେ ଭୂୟାତ୍, ଦୁଃଖଂ ମେ ମା ଭୂତ ।' ଦୁଃଖ କାତର ଜୀବ ନିରନ୍ତର ସୁଖାଭିଳାଷ କରେ । କିନ୍ତୁ ସମୟ ସମୟରେ ମଣିଷ ସୁଖ ପାଇଲେ ମଧ ତାହା କ୍ଷଣ ଭଂଗୁର । ସେଇ ନଶ୍ୱର ସୁଖରେ ତା'ର ପରିତୃପ୍ତି ହୁଏ ନାହିଁ । ମଣିଷ ଚାହେଁ ନିରବଚ୍ଛିନ୍ନ । ଶାଶ୍ୱତ ଓ ଅନାବିଳ ସୁଖ, କିନ୍ତୁ ତାହା ଦୁର୍ଲଭ । ସେ ସୁଖ ଦୁଃଖ ସଂସ୍ପର୍ଶ ବର୍ଜିତ, ନିତ୍ୟ ନିରତିଶୟ ଓ ଆତ୍ୟନ୍ତିକ ହେବା ବିଧେୟ । ସେ ସୁଖର ନାମାନ୍ତର 'ବ୍ରହ୍ମାନନ୍ଦ' ବା 'ଆତ୍ମାନନ୍ଦ' । ଯେ ଆନନ୍ଦ ସ୍ୱରୂପ, ଯେ ସର୍ବ ସୁଖର ନିଧାନ, ତାଙ୍କୁ ଭଜନ ନ କଲେ, ତାଙ୍କଠାରେ ଆନୁଗତ୍ୟ ସ୍ୱୀକାର ନକଲେ, ଜୀବ ଚିରନ୍ତନ ସୁଖର ସଂଧାନ ପାଇବ ନାହିଁ । ଗୋସ୍ୱାମୀ ତୁଳସୀ ଦାସଙ୍କ ଭାଷାରେ -

'କମଠ ପୀଠ ବରୁ ଜାମହି ବାରା
ବନ୍ଧ୍ୟା ସୁତ ବରୁ କାହାହୁ ମାରା
ଫୁଲଇ ନଭ ବରୁ ବହୁବିଧ ଫୁଲା
ଜୀବ ନ ଲହ ସୁଖ ହରି ପ୍ରତିକୂଲା ।'

ଦିନେ ଅସମ୍ଭବ ସମ୍ଭବ ହୋଇ ଯାଇପାରେ, ଯଥା- କଇଁଛ ପିଠିରେ କେଶ ଜାତ ହେବା । ବନ୍ଧ୍ୟାନାରୀଠାରୁ ବଳବାନ୍ ପୁତ୍ରଜାତ ହେବା, ବୃକ୍ଷଲତାହୀନ ଆକାଶରେ ନାନାବିଧ ଫୁଲ ଫୁଟିବା ଇତ୍ୟାଦି । କିନ୍ତୁ ହରି ଭଜନ ନକରି ବା ହରିଙ୍କଠାରେ ପ୍ରତିକୂଳ ଆଚରଣ କରି କେହି କେବେହେଲେ ସୁଖଲାଭ କରିବ, ଏହା ସଂପୂର୍ଣ୍ଣ ଅସମ୍ଭବ । ସୁତରାଂ ଶାସ୍ତ୍ରକାରମାନେ ନିର୍ଦ୍ଦେଶ ଦେଇଛନ୍ତି, ଆନନ୍ଦଘନ ଶ୍ରୀଭଗବାନଙ୍କୁ ପାଇବା ପାଇଁ ସହଜ, ସରଳ ଓ ନିଶ୍ଚିତମାର୍ଗ ହେଲା ମୁଖ୍ୟତଃ ଶ୍ରୀମଦ୍ ଭାଗବତ ଶାସ୍ତ୍ର ନିତ୍ୟ ପାରାୟଣ କରିବା ବା ସ୍ୱାଧ୍ୟାୟ । ଶ୍ରୀଭାଗବତ ଏକ ଅଭିନବ ବାର୍ତ୍ତା କଳିହତ ଜୀବମାନଙ୍କ ପାଇଁ ବହନ କରିଛନ୍ତି । ସେ କହନ୍ତି, 'ରେ ଜୀବ ! ତୋ'ର ଭଗବାନଙ୍କୁ ଭଜନ କରିବାର ସାମର୍ଥ୍ୟ ନାହିଁ, ତାଙ୍କୁ ଯଥୋଚିତ ଭାବରେ ଡାକିବାର ଯୋଗ୍ୟତା ମଧ ନାହିଁ । କେବଳ ତାଙ୍କ ଦିବ୍ୟ ରସମୟ ଲୀଳାକଥାକୁ କର୍ଣ୍ଣ ବିବରରେ ଶ୍ରବଣ କର । ତାଙ୍କର ପବିତ୍ର ନାମ ସମୂହଙ୍କୁ କୀର୍ତ୍ତନ କର ଓ ତାଙ୍କୁ ନିରନ୍ତର ଚିତ୍ତରେ ସ୍ମରଣ କର । ହରିରେବ ଶ୍ରୋତବ୍ୟଃ, ହରିରେବ ମନ୍ତବ୍ୟଃ, ହରିରେବ କୀର୍ତ୍ତିତବ୍ୟଶ୍ଚ ।'

ପ୍ରବିଷ୍ଟଃ କର୍ଣ୍ଣ ରନ୍ଧ୍ରେଣ ସ୍ୱାନାଂ ଭାବ ସରୋରୁହମ୍
ଧୁନୋତି ଶମଳଂ କୃଷ୍ଣଃ ସଲିଳସ୍ୟ ଯଥା ଶରତ୍ । (ଭା ୨।୮।୫)

ହରିକଥା ଶ୍ରବଣ ଦ୍ୱାରା ଶ୍ରୀକୃଷ୍ଣ କର୍ଣ୍ଣରନ୍ଧ୍ର ମାଧ୍ୟମରେ ପ୍ରବେଶ କରି ଭକ୍ତର ଭାବମୟ ହୃଦୟ କମଳରେ ଅବସ୍ଥାନ କରି ଭକ୍ତର ସକଳ ପ୍ରକାର ମନୋମଳକୁ ନାଶ କରି ଦିଅନ୍ତି । ଯେପରି ଶରତକାଳ ଆବିଳ ଜଳରାଶିକୁ ଶୋଧନ କରି ନିର୍ମଳ କରିଦିଏ । ଭଗବାନଙ୍କ ନିକଟକୁ ଯିବା ମଣିଷ ପକ୍ଷେ ଅତି କଷ୍ଟକର ବ୍ୟାପାର । ତେଣୁ କରୁଣାମୟ ପ୍ରଭୁ ସ୍ୱୟଂ ନରବପୁ ବା ଲୀଳାତନୁ ଧାରଣ ପୂର୍ବକ ଅବତରଣ କରି ଆସିଛନ୍ତି ଧରାପୃଷ୍ଠକୁ ମୁଖ୍ୟତଃ ମଣିଷ ନିକଟକୁ । 'କଂ ବା ଦୟାଳୁଂ ଶରଣଂ ବ୍ରଜେଶ ।' ପୂତନା ଭଳି ପାପୀୟସୀ ରାକ୍ଷସୀକୁ ଧାତୃଗତି ଦେଇ ଯେ ବୈକୁଣ୍ଠଧାମକୁ ପଠାଇଛନ୍ତି, ସେଭଳି ଦୟାମୟ ପ୍ରଭୁଙ୍କ ବ୍ୟତୀତ ଆଉ କାହାର ଶରଣ ନେବୁ । ଉକ୍ତ ଭଗବାନଙ୍କ ପାଇଁ ବ୍ୟାକୁଳ ହେବା ସ୍ୱାଭାବିକ । କିନ୍ତୁ ଭାଗବତଙ୍କର ଅନ୍ତର କଥା ହେଉଛି ଭଗବାନ ଭକ୍ତ ପାଇଁ ବେଶୀ ବ୍ୟାକୁଳ । ସ୍ତନ୍ୟପିପାସାରେ ବାଳଗୋପାଳ ସ୍ନେହମୟୀ ଯଶୋଦାଙ୍କ ପାଇଁ କାନ୍ଦିଛନ୍ତି । ବ୍ରହ୍ମା ଗୋପବାଳକ ଓ ବତ୍ସମାନଙ୍କୁ ଅପହରଣ କଲାପରେ ସେମାନଙ୍କୁ ଫେରି ପାଇବା ପାଇଁ କୃଷ୍ଣ ବନେ ବନେ ଖୋଜିଛନ୍ତି । ବ୍ରଜାଙ୍ଗନାମାନଙ୍କର ମନହରଣ କରି ସେମାନଙ୍କୁ ପରମ ଆହ୍ଲାଦ ପ୍ରଦାନ କରିବା ସଂଗେ ସଂଗେ ନିଜ ନିକଟକୁ ଆଣିବା ପାଇଁ ବଂଶୀରେ କଳଧ୍ୱନି କରିଛନ୍ତି ଗୋପୀଜନବଲ୍ଲଭ । ଏହା ହିଁ ଭାଗବତୀୟ ଲୀଳାର ମଧୁରିମା ।

ବ୍ରଜ ଛାଡ଼ି ବ୍ରଜେନ୍ଦ୍ର ନନ୍ଦନ ଯାଇଛନ୍ତି ମଥୁରାକୁ । ତାଙ୍କ ବିରହରେ ବ୍ରଜବାସିନୀ ଗୋପବାଳାମାନେ ପରମ କାତର ହୋଇଛନ୍ତି । କିନ୍ତୁ ଗୋପୀମାନଙ୍କ ଅପେକ୍ଷା ପ୍ରେମମୟ ଶ୍ରୀକୃଷ୍ଣ ଅଧିକ କାତର ହୋଇଛନ୍ତି । ବିରହ ବ୍ୟଥା ଅସହ୍ୟ ହୋଇଛି । ହୃଦୟର ବାର୍ତ୍ତା,

ବିରହାଗ୍ନିର ଆତ୍ୟନ୍ତିକ ତାପ, ଗୋପୀ ଅଦର୍ଶନରେ ବଳବତୀ ଉତ୍‌କଣ୍ଠା, ଭଗବାନ ଶ୍ରୀକୃଷ୍ଣଙ୍କ ପାଇଁ ଦୁର୍ବିସହ ହୋଇପଡ଼ିଛି । ତେଣୁ ପ୍ରିୟସଖା, ହରିଦାସବର୍ଯ୍ୟ, ବୁଦ୍ଧିସତ୍ତମ, ବୃହସ୍ପତିତୁଲ୍ୟ ବିଦ୍ୟାନିପୁଣ, ଧୀର, ଶାନ୍ତ କମନୀୟ କାନ୍ତି । ଯଦୁବଂଶର ସୁମନ୍ତ୍ରଣା ଦାୟକ ଉଦ୍ଧବଙ୍କୁ ଭଗବାନ ଶ୍ରୀକୃଷ୍ଣ ବ୍ରଜକୁ ପ୍ରେରଣ କରିଛନ୍ତି । ଐଶ୍ୱର୍ଯ୍ୟର ଭୂମି ମଥୁରା । ମାଧୁର୍ଯ୍ୟର ଧାମ ଶ୍ରୀବୃନ୍ଦାବନ । ଐଶ୍ୱର୍ଯ୍ୟ ସହିତ ମାଧୁର୍ଯ୍ୟର ମିଳନ । ଶୁଦ୍ଧ ପ୍ରେମର ପରାକାଷ୍ଠା, ଗୋପୀମାନଙ୍କର କୃଷ୍ଣଗତ ପ୍ରାଣର ବୈଶିଷ୍ଟ୍ୟ ପ୍ରଭୃତିକୁ ଶିକ୍ଷା ଦେବା ପାଇଁ ଜ୍ଞାନ ପ୍ରବୃଦ୍ଧ ଉଦ୍ଧବଙ୍କୁ ଭଗବାନ ବ୍ରଜଯାତ୍ରା ପାଇଁ ଅନୁରୋଧ ସହିତ ଉପଦେଶ ଦେଇଛନ୍ତି ।

ବୃଷ୍ଣୀନାଂ ପ୍ରବରୋ ମନ୍ତ୍ରୀ କୃଷ୍ଣସ୍ୟ ଦୟିତଃସଖା
ଶିଷ୍ୟୋ ବୃହସ୍ପତେଃ ସାକ୍ଷାଦ୍ ଉଦ୍ଧବୋ ବୁଦ୍ଧିସତ୍ତମଃ ।
(ଭା୧୦ା୪୬ା୧)

ମଥୁରା ଓ ବ୍ରଜ ମଧ୍ୟରେ ଭୌଗଳିକ ଦୂରତା ଖୁବ୍ କମ୍ । ମାତ୍ର ସାତ ମାଇଲ ବା ଆଜିର ମାପରେ ଏଗାର କିଲୋମିଟର । କିନ୍ତୁ ପାରମାର୍ଥିକ ବିଚାରରେ ଦୂରତା ଖୁବ୍ ବେଶୀ । ମଥୁରାରେ ଶ୍ରୀକୃଷ୍ଣ କ୍ଷତ୍ରିୟ ବେଶ । କିନ୍ତୁ ବୃନ୍ଦାବନରେ ଗୋପବେଶ, ମଥୁରାରେ ବୃଷ୍ଣିମାନଙ୍କର ସେ ପରଦେବତା, କିନ୍ତୁ ବୃନ୍ଦାବନରେ ଗୋପୀମାନଙ୍କର ସ୍ୱଜନ, ମଥୁରାରେ ଯାଦବମାନେ କୃଷ୍ଣଙ୍କର ପାଦଧୂଳି ଶିରରେ ଧାରଣ କରନ୍ତି । ଅଥଚ ବୃନ୍ଦାବନରେ ଗୋପବାଳକମାନେ କୃଷ୍ଣଙ୍କର କାନ୍ଧରେ ଉଠନ୍ତି । କଂସ ନିଧନ ପରେ ମାତା ଦେବକୀଙ୍କୁ ପ୍ରଣାମ କଲା ସମୟରେ ସେ କୃଷ୍ଣଙ୍କର ପ୍ରଣାମ ଘେନା କରିବାକୁ ଭୟ କରନ୍ତି, କିନ୍ତୁ ବୃନ୍ଦାବନରେ ବାତ୍ସଲ୍ୟମୟୀ ଯଶୋଦା ରଜ୍ଜୁରେ ବନ୍ଧନ କରି କୃଷ୍ଣଙ୍କୁ ଭର୍ତ୍ସନା କରନ୍ତି । ପିତା ବସୁଦେବ ଶଙ୍କାଯୁକ୍ତ ଚିତ୍ତରେ ପୁତ୍ର କୃଷ୍ଣଙ୍କୁ ଆଲିଙ୍ଗନ କରିବାକୁ ସାହସ କରିପାରନ୍ତି ନାହିଁ । ଅଥଚ ବୃନ୍ଦାବନରେ ବନପଥରେ ଗୋଚାରଣ ସମୟରେ ନନ୍ଦବାବାଙ୍କର ପାଦୁକାକୁ କୃଷ୍ଣ ମଥାରେ ଧାରଣ କରନ୍ତି । ମଥୁରାବାସୀ କୃଷ୍ଣଙ୍କର ପଦତଳେ ବସି ପ୍ରସାଦ ସେବନ କରନ୍ତି । କିନ୍ତୁ ବ୍ରଜବାଳକମାନଙ୍କର ଉଚ୍ଛିଷ୍ଟ ସେବନରେ କୃଷ୍ଣଙ୍କର ପରମ-ଆନନ୍ଦ ହୋଇଥାଏ । ପୁଷ୍ପ ବୃକ୍ଷରେ ଶୋଭାପାଏ । ବୃନ୍ତଚ୍ୟୁତ ହୋଇ ଘରକୁ ଆସିଲେ ତା'ର ଶୋଭା ହ୍ରାସ ପାଏ, ମଳିନ ପଡ଼ିଥାଏ । ଠିକ୍ ସେହିପରି ବ୍ରଜରସ ବା ମାଧୁର୍ଯ୍ୟ ରସ ବ୍ରଜ କୁଞ୍ଜରେ ଯେତିକି ମଧୁମୟ ଅନ୍ୟତ୍ର ସେପରି ନୁହେଁ । ଉଦ୍ଧବଙ୍କ ନୟନ ଓ ମନ ମାଧ୍ୟମରେ ବ୍ରଜରସ ଆସ୍ୱାଦନ କରିବା ଶ୍ରୀକୃଷ୍ଣଙ୍କର ଅଭିଳାଷ । ଅତଏବ ଉଦ୍ଧବଙ୍କର ବ୍ରଜଯାତ୍ରାରେ ଶ୍ରୀକୃଷ୍ଣଙ୍କର ଲାଭ, ଉଦ୍ଧବଙ୍କର ମଧ୍ୟ ଲାଭ, ମଥୁରାବାସୀଙ୍କ ଲାଭ, ନନ୍ଦଯଶୋଦାଙ୍କର ଲାଭ, ସର୍ବୋପରି ପ୍ରେମରସ ଅସ୍ୱାଦନରେ ଭକ୍ତମାନଙ୍କର ବି ଲାଭ ।

ଉଦ୍ଧବଙ୍କୁ ପାଖରେ ବସାଇ ଭଗବାନ ଅତି ମଧୁର ବାଣୀରେ କହିଲେ -

'ଗଚ୍ଛୋଦ୍ଧବ ! ବ୍ରଜଂ ସୋମ୍ୟ ! ପିତ୍ରୋନଃ ପ୍ରୀତିମାବହ
ଗୋପୀନାଂ ମଦ୍ ବିୟୋଗାଧିଂ ମତ୍ ସନ୍ଦେଶୈଃ ବିମୋଚୟ ।
(ଭା୧୦ା୪୬ା୩)

ହେ ସୌମ୍ୟ ଉଦ୍ଧବ, ତୁମେ ବ୍ରଜକୁ ଯାଅ । ଆମର ପିତାମାତା ନନ୍ଦ ଯଶୋଦାଙ୍କର ପ୍ରୀତି ବିଧାନ କର । 'ପିତ୍ରୋଃନଃ - ବସ୍ତୁତଃ ନନ୍ଦ ଯଶୋଦା ଉଦ୍ଧବଙ୍କର ପିତାମାତା ନୁହଁନ୍ତି ତଥାପି ଏପରି ଶବ୍ଦ ପ୍ରୟୋଗର ବିଶେଷତା ଅଛି । ଯେହେତୁ ତୁମେ ମୋର ପ୍ରିୟ ସଖା, ଅନ୍ତରଙ୍ଗ ବନ୍ଧୁ ସେ ହେତୁ ମୋର ପିତାମାତା, ତୁମର ମଧ୍ୟ ପିତାମାତା । ଏହି ମଧୁର ସମ୍ବୋଧନ ଦ୍ୱାରା ଉଦ୍ଧବଙ୍କର ବ୍ରଜଯାତ୍ରା ପ୍ରତି ଶ୍ରଦ୍ଧା ବଢ଼ିଯାଇଛି । ଭଗବାନଙ୍କର ଐଶ୍ୱର୍ଯ୍ୟ ନନ୍ଦଯଶୋଦାଙ୍କଠାରେ କୌଣସି ପ୍ରଭାବ ପକାଇ ପାରି ନାହିଁ । ବାତ୍ସଲ୍ୟ ରସର ଗାଢ଼ତା ଐଶ୍ୱର୍ଯ୍ୟ ଅପେକ୍ଷା ଗରୀୟସୀ, ଏହି ପ୍ରେମର ପଟ୍ଟାନ୍ତର ନାହିଁ । ଦେହର ରୋଗକୁ ବ୍ୟାଧି କୁହାଯାଏ । କିନ୍ତୁ ମନର ବ୍ୟାଧିକୁ ଆଧି କୁହାଯାଏ । ମୋର ବିରହଜନିତ ଗୋପୀମାନଙ୍କର ହୃଦୟଭରା ତୀବ୍ର ପୀଡ଼ା (ମଦ୍ ବିୟୋଗାଧିଂ)କୁ ମୋର କୁଶଳ ବାର୍ତ୍ତା ଶୁଣାଇ ଉପଶମ କରିବ । ଗୋପୀ ଶବ୍ଦଟି ମଧ୍ୟ ତାତ୍ପର୍ଯ୍ୟପୂର୍ଣ୍ଣ - 'ଗୋଭିଃ ନିରନ୍ତରଂ କୃଷ୍ଣରସଂ ପିବତି ଯା ସା ଗୋପୀ ।' ସକଳ ଇନ୍ଦ୍ରିୟ ଦ୍ୱାରା ଯେ ନିରନ୍ତର କୃଷ୍ଣରସକୁ ଆସ୍ୱାଦନ କରନ୍ତି ସେ 'ଗୋପୀ' । ସଂଯୋଗ ଅପେକ୍ଷା ବିରହାବସ୍ଥାରେ ପ୍ରେମପାତ୍ର ସହିତ ତାଦାତ୍ମ୍ୟ ଅଧିକ ହୁଏ । ସଂଯୋଗରେ ପ୍ରେମର ଉତ୍କର୍ଷ ସାଧିତ ହୁଏ । ବିରହରେ ପ୍ରେମର ବାସ୍ତବ ପରୀକ୍ଷା ହୁଏ । ବିୟୋଗକୁ ମଧ୍ୟ ଏକ ପ୍ରକାର ବିଶେଷ 'ଯୋଗ' ବୋଲି କୁହାଯାଇପାରେ । ଭଗବାନ ଗୀତାରେ ଅର୍ଜ୍ଜୁନଙ୍କୁ ଉପଦେଶ ଦେଇ କହିଛନ୍ତି -

'ମନମନାଭବ ମଦ୍‌ଭକ୍ତୋ ମଦ୍‌ଯାଜୀ ମାଂ ନମସ୍କୁରୁ' (ଗୀତା ୧୮ ଅଧ୍ୟାୟ) ଏହି ଉପଦେଶର ମୂର୍ତ୍ତିମନ୍ତ ଉଦାହରଣ ହେଉଛନ୍ତି ଗୋପୀମାନେ ।

ତାମନ୍ ମନସ୍କା ମତ୍‌ପ୍ରାଣା ମଦର୍ଥେ ତ୍ୟକ୍ତ ଦୈହିକାଃ
ମାମେବ ଦୟିତଂ ପ୍ରେଷ୍ଠମାତ୍ମନଂ ମନସାଗତଃ ।
(ଭା୧୦ା୪୬ା୪)

ଗୋପୀମାନଙ୍କର ନିଜର ବୋଲି ମନ କିଛି ନାହିଁ । ସେମାନଙ୍କର ମନ ମୋ'ଠାରେ ସଂପୂର୍ଣ୍ଣ ଅର୍ପିତ ହୋଇଛି । ଏଭଳି ଦୃଷ୍ଟାନ୍ତ ସଂସାରରେ ବିରଳ । 'ସୁଦୁର୍ଲଭାଃ ଭାଗବତାଃ ହି ଲୋକେ' । ସେମାନଙ୍କର ପ୍ରାଣ ଓ ଜୀବନ ମଧ୍ୟ ମୁଁ । ମୋର ପ୍ରୀତି ସଂପାଦନ ପାଇଁ ସେମାନେ ନିଜର ପତି, ସନ୍ତାନ ଆତ୍ମୀୟ ସ୍ୱଜନଙ୍କୁ ତ୍ୟାଗ କରିଛନ୍ତି । ଏଭଳି ତ୍ୟାଗର ପଟ୍ଟାନ୍ତର ନାହିଁ । ସେମାନେ ଦେହ ଓ ଦୈହିକ ବସ୍ତୁସମୂହକୁ ମଧ୍ୟ ତ୍ୟାଗ କରିଛନ୍ତି । 'ମଦନ୍ୟତ୍ତେ ନ ଜାନନ୍ତି ନାହଂ ତେଭ୍ୟୋ ମନାଗପି ।' ମୋ ବ୍ୟତୀତ ସେମାନେ ଅନ୍ୟ କାହାକୁ ଜାଣନ୍ତି ନାହିଁ । ସେମାନଙ୍କୁ ଛାଡ଼ି ମୁଁ ମଧ୍ୟ ଅନ୍ୟ କାହାକୁ ଜାଣେ ନା, ସେମାନଙ୍କର ଶିକ୍ଷାଗତ

ଯୋଗ୍ୟତା କିଛି ନାହିଁ - 'ତେ ନାଧିତ ଶ୍ରୁତିଗଣାଃ' ତଥାପି ସେମାନେ ପ୍ରେମର ମୂର୍ତ୍ତି ଓ ସ୍ନେହର ଜ୍ୟୋତି ସ୍ୱରୂପ । ପ୍ରେମର ରୀତିନୀତି ସେମାନେ ବିଶେଷ ଭାବରେ ଜାଣନ୍ତି । ସେମାନଙ୍କର ଜ୍ଞାନର ଆବଶ୍ୟକତା ଅଛି । ତୁମର ମଧ ପ୍ରେମ ଓ ଶୁଦ୍ଧାଭକ୍ତିର ପ୍ରୟୋଜନ ଅଛି । ଜ୍ଞାନ ଓ ଭକ୍ତିର ବିନିମୟ ହେବା ବାଞ୍ଛନୀୟ । ଏଥିରେ ଉଭୟଙ୍କର ଲାଭ ହେବ । ଯେହେତୁ ସେମାନେ ଦେହଧର୍ମ, ଲୋକଧର୍ମ ପ୍ରଭୃତିକୁ ଜଳାଞ୍ଜଳି ଦେଇ କେବଳ ମୋତେ ଆଶ୍ରୟ କରିଛନ୍ତି ସେହେତୁ ସେମାନଙ୍କୁ ସର୍ବଦା ମୁଁ ମଧ ହୃଦୟରେ ଧାରଣ କରିଛି । ଯେ ଯେଭଳି 'ମୋର ଶରଣାଗତ ହୁଏ ମୁଁ ତାକୁ ସେହିଭଳି ଆଶ୍ରୟ ପ୍ରଦାନ କରେ ।

'ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହଂ ।'

ମୋର କ୍ଷଣାର୍ଦ୍ଧ ଅଦର୍ଶନରେ ସେମାନଙ୍କୁ ଶତଯୁଗ ବୋଲି ବୋଧହୁଏ । ପୁନଃ ମୋତେ ଦର୍ଶନ କଲାବେଳେ ଚକ୍ଷୁର ପଲକ ଦର୍ଶନ - ବାଧାଦିଏ ବୋଲି ସେମାନେ ବିଧାତାକୁ ଜଡ଼ ନିର୍ବୋଧ ବୋଲି ନିନ୍ଦା କରିବାକୁ ପାଶ୍ଚାତ୍‌ପଦ ହୁଅନ୍ତି ନାହିଁ ।

ଅଟତି ଯଦ୍ ଭବାହ୍ନିକାନନଂ ତ୍ରୁଟି ଯୁଗାୟତେ ତ୍ୱାମପଶ୍ୟତାମ୍
କୁଟିଳ କୁନ୍ତଳଂ ଶ୍ରୀମୁଖଂ ଚ ତେ, ଜଡ଼ ଉଦୀକ୍ଷଣଂ ପକ୍ଷ୍ମକୃଦ୍ ଦୃଶାମ୍ ।
(ଭା୧୦।୩୧।୧୫)

ସେମାନେ ଆତ୍ମଜ୍ଞାନୀ ଯୋଗୀ ନୁହଁନ୍ତି । ସେମାନେ ଭକ୍ତ, ପ୍ରେମରସର ମୂର୍ତ୍ତିମତୀ ଦେବୀ । ମୋର ଦର୍ଶନ ଅଭାବରେ ବିରହ ଯନ୍ତ୍ରଣାରେ ସେମାନେ ମୋର ରୂପ, ଶୀଳ, ଗୁଣ, ଶୌର୍ଯ୍ୟ, ବୀର୍ଯ୍ୟ, ଗାମ୍ଭୀର୍ଯ୍ୟ, ମାଧୁର୍ଯ୍ୟ, ପ୍ରାଚୁର୍ଯ୍ୟ, ଔଦାର୍ଯ୍ୟ, ଶୋଭା ଆଭା, ବିଭା, ବିକ୍ରମ ଓ ନାମକୁ ସ୍ମରଣ କରି ବିରହତାପକୁ ଶାନ୍ତ କରନ୍ତି । ବେଳେବେଳେ ସେମାନେ ମାନ, ଅଭିମାନ ଏପରିକି ଭର୍ତ୍ସନା ମଧ କରିଥାଆନ୍ତି । ସେମାନଙ୍କର ଗାଳି ମୋର କର୍ଣ୍ଣ ରସାୟନ ହୁଏ । ସେମାନଙ୍କର ଅନାବିଳ ପ୍ରେମ, ମାଧୁର୍ଯ୍ୟ ମଣ୍ଡିତ ତ୍ୟାଗ ମଧରେ ଯେଉଁ ମୃଦୁ ଭର୍ତ୍ସନା ହୁଏ, ତାହା ମୋର ପ୍ରୀତିବର୍ଦ୍ଧନ କରେ । ମୁଁ ମଧ ସେ ଗାଳିଗୁଡ଼ିକ ଖୁବ ଭଲ ପାଏ ଯେହେତୁ ତାହା ଶ୍ରୁତି ମଧୁର ।

କଲେ ବେଦପତି ନାନା ରୂପେ ସ୍ତୁତି ବିମୁଖ ଯେ ଶୁଣିବାକୁ
କର୍ଣ୍ଣ ଡେରିଥାନ୍ତି ବରଜ ଯୁବତୀ କରତାଙ୍କ ଡାକିବାକୁ ।
(ରସ କଲ୍ଲୋଳ)

ଶୁଦ୍ଧ ପ୍ରେମରେ ରୁଷ୍ଟ ଭାଷାମାନ
ମଧୁର ଅମ୍ଳ ମିଶିଲା ସମାନ । (ବିଦଗ୍ଧ ଚିନ୍ତାମଣି)

ଗାଳି ଶୁଣଇ ଗୋପୀମୁଖେ, ବେଦ ନ ଶୁଣେ ତେତେ ସୁଖ (ଭାଗବତ)

'ପ୍ରିୟା ଯଦି ମାନ କରି କରୟେ ଭର୍ତ୍ସନ
ବେଦସ୍ତୁତି ହୈତ ସେଇ ହରେ ମୋର ମନ ।' (ଚୈତନ୍ୟ ଚରିତାମୃତ)

ନ ତଥା ରୋଚତେ ବେଦାଃ ପୁରଣାଦ୍ୟାସ୍ତଥେତରେ
ଯଥା ତାସାଂ ତୁ ଗୋପୀନାଂ ଭର୍ତ୍ସନା ଗର୍ଭିତଂ ବଚଃ । (ଆଦି ପୁରାଣ)

ବ୍ରଜାଙ୍ଗନାମାନେ ମୋର ଆତ୍ମା । ତତ୍ତ୍ୱ ଦୃଷ୍ଟିରେ ଆମେ ସମସ୍ତେ ଏକ ଆତ୍ମା, କେବଳ ଲୀଳା ଆସ୍ୱାଦନ ପାଇଁ ଆମମାନଙ୍କର ଦେହ ଭେଦ ମାତ୍ର । ଗୋପୀମାନେ ମୋର ଅନ୍ତରଂଗା ଶକ୍ତି । ଅଗ୍ନି ଓ ତା'ର ଦାହିକା ଶକ୍ତି । ସୂର୍ଯ୍ୟ ଓ ସୂର୍ଯ୍ୟକିରଣ ଜଳ ଓ ତରଙ୍ଗ ଯେଭଳି ଏକ ଓ ଅଭିନ୍ନ କେବଳ ନାମାନ୍ତର ମାତ୍ର, ସେଇଭଳି ମୁଁ ଓ ଗୋପୀଙ୍କ ମଧରେ କୌଣସି ଭେଦ ନାହିଁ, ତତ୍ତ୍ୱତଃ ଅଭିନ୍ନ । କେବଳ ପ୍ରେମରସ ଆସ୍ୱାଦନ କରିବା ପାଇଁ ଭିନ୍ନ ଦେହ ଧାରଣ କରାଯାଇଛି ।

ପ୍ରେମ ଭକ୍ତି ରସ ଯାକର ନିର୍ଯ୍ୟାସ
ଏଥିବଳି ଆଉ ନାହିଁ ତେଣିକି । (ଗୋପାଳକୃଷ୍ଣ)

ମୋ ବିଷୟେ ଗୋପୀଗନ୍ ଉପପତି ଭାବେ
ଯୋଗମାୟା କରିବେନ୍ ଆପନ ପ୍ରଭାବେ
ଆମିହ ନା ଜାନି ତାହା ନା ଜାନେ ଗୋପୀଗନ୍
ଦୋହାର ରୂପ ଗୁନେ ନିତ୍ୟ ଦୋହାର ହରେମନ୍
(ଚୈତନ୍ୟ ଚରିତାମୃତ)

ଶ୍ରୀକୃଷ୍ଣଙ୍କର ଏହି ଗମ୍ଭୀର ତଥା ଅର୍ଥପୂର୍ଣ୍ଣ ଅଥଚ ବେଦନାଭରା କଥାଶୁଣି ଜ୍ଞାନ ଗରିଷ୍ଠ ଉଦ୍ଧବ ବୃନ୍ଦାବନ ଯିବାପାଇଁ ମନ ବଳାଇ ପ୍ରସ୍ତୁତ ହୋଇଛନ୍ତି ।

ଯନ୍ତ୍ରୀ ନ ବଜାଇଲେ କି ବାଜିପାରେ ଯନ୍ତ୍ର ! (ଠାକୁର ଅଭିରାମ ପରମହଂସ) ଭଗବାନ୍ ଶ୍ରୀକୃଷ୍ଣ ଯନ୍ତ୍ରୀ, ଉଦ୍ଧବ ଯନ୍ତ୍ର । ସେ ଯେପରି ବଜାଇବାକୁ ଚାହିଁବେ ବା ବଜାଇବେ, ଯନ୍ତ୍ର ସେପରି ବାଜିବ । ଭଗବାନଙ୍କର ଇଚ୍ଛା ଅବଶ୍ୟ ପୂର୍ଣ୍ଣ ହେବ । ସେ ଇଚ୍ଛାମୟ, ବାଞ୍ଛା-କଳ୍ପତରୁ । ସୁତରାଂ ବ୍ରଜଦର୍ଶନ ପାଇଁ ଉଦ୍ଧବଙ୍କର ଲାଳସା କ୍ରମଶଃ ବଢ଼ିବାକୁ ଲାଗିଲା । ଭଗବାନ ନିଜ ହାତରେ ନିଜର ଅଙ୍ଗଆଭରଣ ଓ ପୁଷ୍ପମାଲ୍ୟ ଦେଇ ଉଦ୍ଧବଙ୍କୁ ସଜାଇ ଦେଲେ । କୃଷ୍ଣଙ୍କର ମୃଦୁ ଓ ମଧୁମୟ କରସ୍ପର୍ଶରେ ଉଦ୍ଧବଙ୍କର ଅଙ୍ଗ ପ୍ରତ୍ୟଙ୍ଗରେ ଶିହରଣ ଖେଳିଗଲା । ସର୍ବାଙ୍ଗରେ ପୁଲକ ଓ ରୋମାଞ୍ଚ ଜାଗି ଉଠିଲା ।

ରଥ ପ୍ରସ୍ତୁତ ହୋଇଛି ଉଦ୍ଧବଙ୍କୁ ବହନ କରି ବ୍ରଜପୁର ନେଇଯିବ । ଶ୍ରୀକୃଷ୍ଣ ଶୁଭାଶୀର୍ବାଦ ଦେଇ ଉଦ୍ଧବଙ୍କୁ ବ୍ରଜପଥେ ବିଦାୟ ଦେବା ଅବସରରେ କହିଲେ - 'ଉଦ୍ଧବ ! ତୁମର ଗତିପଥ କିପରି ହେଲେ ତୁମର କୌଣସି ଅସୁବିଧା ହେବ ନାହିଁ, ବ୍ରଜରେ ଅନାୟାସରେ ଓ ଶୀଘ୍ର ପହଞ୍ଚି ପାରିବ, ଏହା ଥରେ ଶୁଣି ନିଅ ।' ଯଜ୍ଞ ପତ୍ନୀମାନଙ୍କ ଦ୍ୱାରା ଅନ୍ନ ଭୋଜନ କରି କୃଷ୍ଣ ତଥା ବ୍ରଜବାଳକମାନେ ପରିତୃପ୍ତ ହୋଇଥିଲେ । ସେ ସ୍ଥାନରେ ନାମ 'ଅନ୍ନଭିକ୍ଷାସ୍ଥଳୀ' । (ଗାୟନ୍ତୀନାଂ ମଦନୁଚରିତଂ ତତ୍ର ବିପ୍ରାଙ୍ଗନାନାଂ) ଯେଉଁ କ୍ରୀଡ଼ାଭୂମିରେ ଶ୍ରୀଦାମଙ୍କ

ଦ୍ୱାରା ପ୍ରଭୁ ହାରି ଯାଇଥିବାରୁ ଶ୍ରୀଦାମ ତାଙ୍କ ପିଠିରେ ବସି ଗୋଷ୍ଠ ପରିକ୍ରମା କରିଥିଲେ, ସେ ଭୂମିକୁ ଦର୍ଶନ କରିବ । ବ୍ରଜବାଳକମାନେ ଗୋଚାରଣବେଳେ ଗାଈ, ବାଛୁରୀମାନଙ୍କୁ ଆଉଁସି ଦେଉଥିବେ, ସେମାନଙ୍କୁ କେତେ ସ୍ନେହ ଆଦର କରୁଥିବେ ଯାହା ମଥୁରାରେ ଦୁର୍ଲଭ, ତାହା ମଧ୍ୟ ଦର୍ଶନ କରିବ । ମାତା ସ୍ୱରୂପା ଗାଭୀମାନଙ୍କୁ ମୋର ପ୍ରଣାମ ଜଣାଇବ । ନନ୍ଦବାବାଙ୍କର ଚରଣଧରି କୃଷ୍ଣ ତାଙ୍କୁ ପ୍ରଣାମ ଜଣାଇଛି ବୋଲି ବନ୍ଦନା କରିବ । 'ନାମ ଗ୍ରାହଂମମ' । ସ୍ନେହମୟୀ, ବାତ୍ସଲ୍ୟମୟୀ ଯଶୋଦା ମାତା ମୋ ବିରହରେ କୃଶତନୁ ହୋଇଥିବ, ମଳିନ ପଡ଼ିଯାଇଥିବେ (ଅନ୍ତଶ୍ଚିନ୍ତା ବିଲୁଳିତ ମୁଖୀଂ ହାମଦେକ ପ୍ରସୂତିଂ) ତାଙ୍କର ପଦବନ୍ଦନା କରି ମୋର ବିନମ୍ର ପ୍ରଣାମ ଜଣାଇବ ।

ଉଦ୍ଧବ ! ତୁମେ ଜାଣିଛ - ଗ୍ରୀଷ୍ମ କାଳରେ ସରୋବର ଜଳ ଶୁଷ୍କ ହୋଇଯାଏ । ସେଇ ଜଳକୁ ଆଶ୍ରୟ କରି ରହିଥିବା କଇଁଚମାନେ କାଦୁଅ ତଳେ ରହି ବଞ୍ଚି ଯାଆନ୍ତି । ତତ୍ତୁଲ୍ୟ ମୋର ବିରହ ବ୍ରଜାଙ୍ଗନାଙ୍କ ପାଇଁ ଦାରୁଣ ନିଦାଘ କାଳ ସଦୃଶ । ମୁଁ ବ୍ରଜକୁ ଫେରି ଆସିବି । ସେମାନେ ମୋତେ ଲାଭ କରିବେ - ଏହି ଆଶା ରୂପକ ପଙ୍କକୁ ସମ୍ବଳ କରି ଗୋପୀରୂପୀ କୂର୍ମମାନେ ବଞ୍ଚି ରହିଛନ୍ତି । ସେମାନଙ୍କୁ ମୋର କୁଶଳ ବାର୍ତ୍ତା ରୂପୀ ଜଳ ବର୍ଷା ଦ୍ୱାରା ସୁସ୍ଥ କରାଇବ । ନାନାବିଧ ସାନ୍ତ୍ୱନା ଦେଇ ସେମାନଙ୍କର ପ୍ରୀତିଭାଜନ ହେବ । ଶ୍ରୀକୃଷ୍ଣଙ୍କର ସ୍ନେହ, ଉପଦେଶ, ଆଶୀର୍ବାଦ ଓ ଶୁଭେଚ୍ଛାକୁ ପାଥେୟ କରି ପ୍ରେମଭୂମି ବ୍ରଜଧାମକୁ ଉଦ୍ଧବ ଯାତ୍ରାର ଶୁଭାରମ୍ଭ କଲେ । ଉଦ୍ଧବଙ୍କୁ ଗାଢ଼ ଆଲିଙ୍ଗନ ପୂର୍ବକ ବିଦାୟ ଦେଇ ସଜଳ ନୟନରେ କୃଷ୍ଣ ବ୍ରଜଧାମକୁ ନିର୍ନିମେଷ ନୟନରେ ଚାହିଁ ରହିଲେ । ବଡ଼ ବିଚିତ୍ର ଏ ଲୀଳା - ମହନୀୟ ଏ ପ୍ରସ୍ଥାନ । ଦ୍ୱନ୍ଦ୍ୱାତୀତ ପ୍ରଭୁଙ୍କର ଦ୍ୱନ୍ଦ୍ୱ - ଶୋକାତୀତଙ୍କର ଶୋକ, ପୂର୍ଣ୍ଣାନନ୍ଦଙ୍କର ବିଳାପ । ଭଗବାନଙ୍କର ଭକ୍ତି - ବିରହ, ଏହା ହିଁ ମାଧୁର୍ଯ୍ୟ ରସର ଚିତ୍ର । ଉଦ୍ଧବଙ୍କର ବ୍ରଜଧାମ ଯାତ୍ରା ଶୁଭମୟ, ମଧୁମୟ ହେଉ । ଗୋପୀ ଭକ୍ତିର କଣିକାଏ ପାଇ ଆମ ଜୀବନ ଧନ୍ୟ ହେଉ ।

ବନ୍ଦେ ନନ୍ଦ ବ୍ରଜସ୍ତ୍ରୀଣାଂ ପାଦରେଣୁ ମଭୀକ୍ଷ୍ଣଶଃ
ଯାସାଂ ହରିକଥୋହଗୀତଂ ପୁନାତି ଭୁବନ ତ୍ରୟମ୍ ।।
(ଭା।୧୦।୪୭।୬)

---

# ଓଡ଼ିଶାର ୧୪ଟି ଜିଲ୍ଲାରେ 'ନବଜ୍ୟୋତି ମିଶନ' ଯୋଜନା ଆରମ୍ଭ

ଶିଶୁ ଦେଶର ଭବିଷ୍ୟତ ନାଗରିକ, ଦେଶର ଭାବି କର୍ଣ୍ଣଧାର । ଏଣୁ ରାଜ୍ୟରେ ଶିଶୁ ମୃତ୍ୟୁହାର ନିୟନ୍ତ୍ରଣ ଓ ହ୍ରାସ କରିବା ପାଇଁ ସରକାର ଅପ୍ରେଲ ପହିଲାରୁ ୧୪ଟି ଜିଲ୍ଲାରେ 'ନବଜ୍ୟୋତି ମିଶନ' ଯୋଜନା ଆରମ୍ଭ କରିଛନ୍ତି । ଆବଶ୍ୟକୀୟ ସ୍ୱାସ୍ଥ୍ୟ ସେବା ଅଭାବରୁ ରାଜ୍ୟରେ ଦିନକୁ ଦିନ ଶିଶୁ ମୃତ୍ୟୁହାର ଦ୍ରୁତଗତିରେ ବଢ଼ି ଚାଲିଥିବାରୁ ସରକାର ଏହି ନୂତନ ଯୋଜନା ପ୍ରଚଳନ କରିଛନ୍ତି । ୨୦୦୨ ମସିହା ସର୍ଭେ ଅନୁଯାୟୀ ଓଡ଼ିଶାର ଶିଶୁମୃତ୍ୟୁ ହାର ହେଉଛି ଦେଶରେ ସର୍ବାଧିକ । ୨୦୦୧ ମସିହାରୁ ରାଜ୍ୟରେ 'ଶିଶୁ ମୃତ୍ୟୁ ହ୍ରାସ ମିଶନ' କାର୍ଯ୍ୟକାରୀ କରାଯାଇ ସମସ୍ତ ନବଜାତ ଶିଶୁଙ୍କ ଯତ୍ନ ନିଆଯାଉଛି ।

ଶିଶୁ ମୃତ୍ୟୁହାର ଅଧିକ ଥିବା ଏବଂ ଅନୁନ୍ନତ ଆଦିବାସୀ ବହୁଳ ୧୪ଟି ଜିଲ୍ଲାରେ ପ୍ରଥମ ପର୍ଯ୍ୟାୟରେ ପରୀକ୍ଷାମୂଳକ ଭାବରେ ଏହି ଯୋଜନା ଆରମ୍ଭ କରାଯାଇଛି । ଏହି ଜିଲ୍ଲାଗୁଡ଼ିକ ହେଲା - ରାୟଗଡ଼ା, ମାଲକାନଗିରି, ନବରଙ୍ଗପୁର, ନୂଆପଡ଼ା, ଗଜପତି, କଳାହାଣ୍ଡି, କେଉଁଝର, ସୁନ୍ଦରଗଡ଼, ଫୁଲବାଣୀ, ବଲାଙ୍ଗୀର, ବୌଦ, କୋରାପୁଟ, ଦେଓଗଡ଼ ଓ ସୋନପୁର । ସରକାରଙ୍କର ଏହି ନୂତନ କାର୍ଯ୍ୟକ୍ରମ ନବଜାତ ଶିଶୁଙ୍କ ଅସୁସ୍ଥତା ଓ ମୃତ୍ୟୁଜନିତହାର ସମସ୍ୟାର ସମାଧାନ ସହ ପୂର୍ବ ପ୍ରଚଳିତ ଶିଶୁ ମୃତ୍ୟୁହ୍ରାସ କରିବାରେ ସହାୟକ ହୋଇପାରିବ ।

ସୌଜନ୍ୟ - ଗବେଷଣା ଓ ତଥ୍ୟ ସୂଚନା ଶାଖା, ସୂଚନା ଓ ଲୋକ ସଂପର୍କ ବିଭାଗ

# ନବଜ୍ୟୋତି ଶିଶୁ

ବିକ୍ରମ ମହାରଣା

'ଶିଶୁ ହସିଲେ ଦେଶ ହସିବ ।' ଉକ୍ତିଟିର ସରଳ ଅର୍ଥ : ସୁସ୍ଥ ସବଳ ଶିଶୁ - ଦେଶର ଭବିଷ୍ୟତ । ଦିନେ ସେ ହେବ ପରିଶ୍ରମୀ କୃଷକ ଅବା ଦେଶପ୍ରେମୀ ସୈନିକ ଅଥବା ସତ୍ୟନିଷ୍ଠ ବୈଜ୍ଞାନିକ । ମଜବୁତ୍ ଘର ପାଇଁ ମଜବୁତ୍ ନିଅଁର ଆବଶ୍ୟକତା ପରି ଶିଶୁକଲ୍ୟାଣ କାର୍ଯ୍ୟକ୍ରମର ବ୍ୟାପକତା ଓ ସଫଳତା ଦେଶ ବିକାଶ ନିମନ୍ତେ ନିତାନ୍ତ ପ୍ରୟୋଜନୀୟ ।

'ଏ ଦେଶର ଶିଶୁ ଏ ଦେଶର ମାଆ
ଅସହାୟେ ଯେବେ ଟଳେ ।
ମୋ'ଠାରୁ ବଳି ଅପରାଧୀ ଆଉ
କିଏ ଅଛି ମହିତଳେ ।'

'ଦେଲୁ ମୋତେ ମହାଶିକ୍ଷା' ଶୀର୍ଷକ ପଦ୍ୟଟିର ଉପର ଲିଖିତ ପଦ୍ୟାଂଶଟି ରାଜା ରଣଜିତ ସିଂହଙ୍କ ଭାଷାରେ ଅର୍ଥପୂର୍ଣ୍ଣ ନିଶ୍ଚିତ । ସୁସ୍ଥ ଶିଶୁ ପ୍ରାପ୍ତି କେବଳ ସୁସ୍ଥ ମାଆ ଗର୍ଭରୁ ସମ୍ଭବ । ସୁସ୍ଥ ଶିକ୍ଷିତ ମାଆ-ସଜାଗ ଓ ବିକଶିତ ରାଷ୍ଟ୍ର ଦ୍ୱାରା, ବିକଶିତ ରାଷ୍ଟ୍ର-ଦୃଢ଼ ଭିତ୍ତିଭୂମି ଦ୍ୱାରା, ଦୃଢ଼ ଭିତ୍ତି ଭୂମି-ମଜବୁତ୍ ନିଅଁ ଦ୍ୱାରା ସମ୍ଭବ । ମଜବୁତ୍ ନିଅଁ ତୁଲ୍ୟ ସୁସ୍ଥ ସବଳ ଶିଶୁ । ସେ ହେବ ଦେଶର କର୍ଣ୍ଣଧାର । ଏ ସବୁ ଜଳ ଓ ଜୀବନଚକ୍ର ପରି ଏକ ଚକ୍ର ଓ ପରସ୍ପରର ନିର୍ଭରଶୀଳ ଅଟନ୍ତି । ଏହାର ଗୁରୁତ୍ୱ ଉପଲବ୍ଧି ହିଁ ସଚେତନତା ।

ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହରୁ ଶିଶୁମାନଙ୍କ ପ୍ରତି ଅତ୍ୟନ୍ତ ଶ୍ରଦ୍ଧା ସ୍ୱରୂପ ଅନେକ ଶିଶୁ ବିକାଶ କାର୍ଯ୍ୟକ୍ରମ ନିମନ୍ତେ ଆଜି ସ୍ମରଣୀୟ । ନଭେମ୍ବର ୧୪ ତାରିଖ ଚାଚା ନେହରୁଙ୍କ ଜନ୍ମ ଦିବସରେ ପାଳିତ ହୁଏ 'ଶିଶୁ ଦିବସ' । ସୁସ୍ଥ ମାଆ - ସୁସ୍ଥ ଶିଶୁ, ସ୍ଲୋଗାନ ନୁହେଁ ବାସ୍ତବିକତା । ଏ ସଂପର୍କିତ ବ୍ୟାପକ ବିଜ୍ଞାପନ ପ୍ରସାର ଓ ସଚେତନତା ଅଭିଯାନ ଗାଁଗହଳର ମହିଳାମାନଙ୍କୁ ଗର୍ଭକାଳୀନ ଯତ୍ନ ଓ ସୁଷମ ଖାଦ୍ୟ ଗ୍ରହଣ ସଂପର୍କରେ ଅଧିକ ସଚେତନ କରିଛି । ନିରାପଦ ମାତୃତ୍ୱ କର୍ମଶାଳା ଅଧିକରୁ ଅଧିକ ସଂଖ୍ୟାରେ ଆୟୋଜନ କରାଯିବା ଦ୍ୱାରା ମାତୃମୃତ୍ୟୁ ଅନୁପାତକୁ ହ୍ରାସ କରାଯାଇପାରିଛି । ପ୍ରତ୍ୟେକ ସ୍ତରରୁ ସକଳ ପ୍ରୟାସ ଅନ୍ତେ ବିଶ୍ୱବକ୍ଷକୁ ସୁସ୍ଥ ଶିଶୁଟିଏ ଓହ୍ଲାଇବା ସମ୍ଭବ ହୁଏ । ପିତାମାତାଙ୍କର ଶାରୀରିକ ଓ ମାନସିକ ସୁସ୍ଥତାରେ ସୁସ୍ଥ ଶିଶୁଟିଏ ଜନ୍ମ ନିଏ । ରଗ୍ଣ ପିତାମାତାଙ୍କଠାରୁ ଜନ୍ମିତ ଶିଶୁ ରଗ୍ଣ, ମାନସିକ ଓ ଶାରୀରିକ ଭାବେ ବିକଳାଙ୍ଗ ହେବା ସହ ଅଳ୍ପାୟୁଷ ହୁଏ । ଉଭୟ ପରିବାର ଓ ସମାଜ ପାଇଁ ଆହ୍ୱାନ ଆଣେ । ଗରିବ ଗର୍ଭବତୀ ମହିଳାମାନଙ୍କର ମାଗଣା ଚିକିତ୍ସା ସେବା ଓ ସେମାନଙ୍କୁ ପ୍ରଥମ ସନ୍ତାନ ଜନ୍ମପର ଆର୍ଥିକ ସୁବିଧା ପ୍ରଦାନ ସାମାଜିକ ମୂଲ୍ୟବୋଧ ପ୍ରାୟ । ଗର୍ଭବତୀ ମହିଳା ଓ ନବଜନ୍ମିତ ଶିଶୁର ସ୍ୱାସ୍ଥ୍ୟ ସୁରକ୍ଷା ଆଜି ସମାଜର ପ୍ରାଥମିକତା ହୋଇଛି । ସମନ୍ୱିତ ଶିଶୁ ବିକାଶ ଯୋଜନା ଅନ୍ତର୍ଗତ ଅଙ୍ଗନବାଡ଼ି କାର୍ଯ୍ୟକ୍ରମ ଏକ ନିର୍ଣ୍ଣୟାତ୍ମକ ଓ ସଫଳ ଭୂମିକା ନିର୍ବାହ କରିବାରେ ଯଥେଷ୍ଟ ସକ୍ଷମ ହୋଇଛି । ମହିଳା ଓ ଶିଶୁ ବିକାଶ କ୍ଷେତ୍ରରେ ପ୍ରଶିକ୍ଷିତ କର୍ମୀମାନଙ୍କର ଯୋଗଦାନ କାର୍ଯ୍ୟକ୍ରମ ପରିଚାଳନା ଅଧିକ ସହଜ ଓ ସରଳ କରିଛି । ମାଆର ପ୍ରଥମ କଷକ୍ଷୀର ଅମୃତ ତୁଲ୍ୟ ଓ ରୋଗ ପ୍ରତିରୋଧକ ଅଟେ । ଏହାର କୌଣସି ବିକଳ୍ପ ନାହିଁ । ଶିଶୁକୁ ସ୍ତନ୍ୟପାନରୁ ବଂଚିତ କରିବା ସ୍ତନକର୍କଟର ପ୍ରଧାନ କାରଣ । ୧୮ରୁ କମ୍ ଓ ୪୦ରୁ ବେଶୀ ବୟସର ଗର୍ଭଧାରଣରେ ନାନାଦି ଜଟିଳ ସମସ୍ୟାର ସମ୍ମୁଖୀନ ହୁଅନ୍ତି । ଶିଶୁ ଜନ୍ମର ବ୍ୟବଧାନ ଅତିକମ୍‌ରେ ୩ ବର୍ଷ ରହିବା ଦ୍ୱାରା ପ୍ରଥମ ଶିଶୁଟିର ଉପଯୁକ୍ତ ଲାଳନପାଳନ ହୋଇପାରିବ ଏବଂ ମାଆର ଶାରୀରିକ ସୁସ୍ଥତା ବଜାୟ ରହିବ । ଦାରିଦ୍ର୍ୟ, ଅଶିକ୍ଷା, ସଚେତନତାର ଅଭାବ, ଅନ୍ଧ ବିଶ୍ୱାସ, କୁସଂସ୍କାର ଓ ସାମାଜିକ ରୀତିନୀତି ସୁସ୍ଥ ସମାଜ ଗଠନରେ ପ୍ରତିବନ୍ଧକ । ଏହାର ଦୁଃଖଦ ପରିଣାମ ସଂପର୍କରେ ଟି.ଭି., ରେଡ଼ିଓ ଓ ପଥପ୍ରାନ୍ତ ନାଟକ ଏବଂ ଅନ୍ୟାନ୍ୟ ସରକାରୀ ବ୍ୟବସ୍ଥା ଦ୍ୱାରା ଗଣସଚେତନତା ସମାଜରେ ପ୍ରଭାବ ପକାଇ ପାରିଛି । ବେସରକାରୀ ତଥା ସ୍ୱେଚ୍ଛାସେବୀ ଅନୁଷ୍ଠାନ ଏ ଦିଗରେ ମଧ୍ୟ ଯତ୍ନବାନ । ଆଗାମୀ କାଲିର ପ୍ରଶ୍ନ ପାଇଁ ଆଜିର ସ୍ୱପ୍ନ ହିଁ ସଠିକ୍ ଉତ୍ତର ।

ଶିଶୁ ବିକାଶରେ ଦେଶର ବିକାଶ । ରାଜ୍ୟ ମୁଖ୍ୟମନ୍ତ୍ରୀଙ୍କର ସ୍ୱାଧୀନତା ଦିବସ ଅଭିଭାଷଣରେ ଶିଶୁ ମୃତ୍ୟୁହାର ହ୍ରାସ ଏବଂ ମାତୃମୃତ୍ୟୁ ଅନୁପାତ ହ୍ରାସ ନିମନ୍ତେ ବିଭିନ୍ନ ପଦକ୍ଷେପର ସୂଚନା ଶିଶୁ ବିକାଶ କାର୍ଯ୍ୟକ୍ରମର ଗୁରୁତ୍ୱ ବଢ଼ାଏ । ନିକଟ ଅତୀତରେ ପ୍ରବର୍ତ୍ତିତ 'ନବଜ୍ୟୋତି' କାର୍ଯ୍ୟକ୍ରମ ରାଜ୍ୟ ସରକାରଙ୍କ ଅଙ୍ଗୀକାରବଦ୍ଧତାର ପ୍ରମାଣ ମାତ୍ର । 'ନବଜ୍ୟୋତି' ଶିଶୁ କଲ୍ୟାଣ କାର୍ଯ୍ୟକ୍ରମ ଦୂରଦୃଷ୍ଟି ଓ ଅନ୍ତର୍ଦୃଷ୍ଟିର ସମାହାର ନିଶ୍ଚିତ । ଏହାର ସଫଳତା ଆମ ସମସ୍ତଙ୍କ ଦାୟିତ୍ୱ ।

ଓଡ଼ିଆ ଅନୁବାଦ ଶାଖା
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର

# ମହିଳାମାନଙ୍କର କରୋନାରୀ ହୃଦ୍‌ରୋଗ

ଡାଃ ରମାରମଣ ଷଡ଼ଙ୍ଗୀ

'ବିନାଶ୍ରୟେ ନବର୍ତ୍ତତେ କବିତା ବନିତା ଲତା ।'

ଆବାଲ୍ୟରୁ ନାରୀଟିଏ ଜୀବନର ଶେଷ ମୁହୂର୍ତ୍ତ ଯାଏଁ ଏକ ସୁରକ୍ଷିତ ବଳୟ ମଧ୍ୟରେ ରହିଥାଏ । ଶୈଶବରେ ପିତା, କୈଶୋରରେ ଭ୍ରାତା, ଯୌବନରେ ସ୍ୱାମୀ ଓ ପ୍ରୌଢ଼ ବୟସରେ ପୁତ୍ର, ନାରୀଟିକୁ ଏକ ସୁରକ୍ଷା ବଳୟ ଭିତରେ ରଖିଥାନ୍ତି । ତେବେ ଯୌବନ ତା'ର ସଂପୂର୍ଣ୍ଣ ଲାଳିତ୍ୟ ସହ ନାରୀଟିକୁ ଆଉ ଏକ କବଚ କୁଣ୍ଡଳ ଖଂଜି ଦେଇଥାଏ ଏବଂ ଏହା ହେଉଛି ସ୍ତ୍ରୀ ଅନ୍ତଃସ୍ରାବୀ ରସ 'ଇଷ୍ଟ୍ରୋଜେନ୍' । ଇଷ୍ଟ୍ରୋଜେନ୍ ନାରୀଟିକୁ ନାରୀତ୍ୱର ସମସ୍ତ ଲାବଣ୍ୟ ଦେବା ସହ ହୃତ୍‌ପିଣ୍ଡକୁ ମଧ୍ୟ ସୁରକ୍ଷିତ ରଖିଥାଏ । ତେଣୁ ମାସିକ ଋତୁସ୍ରାବର ବିରତି ବା 'ମେନୋପଜ୍' ପରେ ହିଁ ମହିଳାମାନେ ହୃଦ୍‌ରୋଗ ଓ ଅନ୍ୟାନ୍ୟ ଅନେକ ପ୍ରକାର ରୋଗ ଭୋଗିଥାନ୍ତି । ସାଧାରଣତଃ ପୁରୁଷମାନଙ୍କୁ ଏହି କରୋନାରୀ ହୃଦ୍‌ରୋଗ ଯେତିକି ବର୍ଷରେ ହୋଇଥାଏ - ତା'ର ୧୦ ବର୍ଷ ପରେ ହିଁ ମହିଳାମାନଙ୍କ କରୋନାରୀ ହୃଦ୍‌ରୋଗ ହୋଇଥାଏ ।

ତେବେ ମହିଳାମାନେ ମଧୁମେହ ରୋଗ ଭୋଗୁଥିଲେ, ରକ୍ତରେ ଚର୍ବିଅଂଶ ବା କୋଲେଷ୍ଟେରୋଲ୍ ଓ ଟ୍ରାଇଗ୍ଲିସ୍‌ରାଇଡ (ଲୋ' ଡେନ୍‌ସିଟି ଲାଇପୋପ୍ରୋଟିନ୍) ବେଶୀ ଥିଲେ ଏବଂ ହାଇଡେନ୍‌ସିଟି ଲାଇପୋପ୍ରୋଟିନ୍ କମ୍‌ଥିଲେ, ହୃଦ୍‌ଘାତ ହେବାର ରିସ୍କ ବେଶୀଥାଏ ଏବଂ ସେମାନେ ମଧ୍ୟ ପ୍ରଥମେ ପ୍ରଥମେ ନିଜକୁ ଅବହେଳା କରି କାହା ଆଗରେ କିଛି ହେଲେ ଲକ୍ଷଣ ପ୍ରକାଶ ନକରି ସହି ଯାଇଥାନ୍ତି । ତେଣୁ ରୋଗ ବେଶୀ ବଢ଼ି ଯାଇଥାଏ । ସେଥିପାଇଁ ମହିଳାମାନଙ୍କୁ ହୃଦ୍‌ଘାତ ହେବାପରେ ତାଙ୍କର ମୃତ୍ୟୁ ସଂଖ୍ୟା ବିଶେଷ ଭାବରେ ବଢ଼ି ଯାଇଥାଏ ।

ଅନେକଙ୍କର ବଦ୍ଧମୂଳ ଧାରଣା ଯେ, କେବଳ ପୁରୁଷମାନେ ହିଁ ଏହି ହୃଦ୍‌ରୋଗର ଶିକାର ହୋଇଥାନ୍ତି ଏବଂ ମହିଳାମାନେ ଆଦୌ ହୃଦ୍‌ରୋଗ ଭୋଗିନଥାନ୍ତି । ଏହି ଧାରଣା ଭୁଲ୍ । ମାସିକ ଋତୁସ୍ରାବର ବିରତିପରେ ମହିଳାମାନଙ୍କର ବୟସ ବଢ଼ିବା ସଂଗେସଂଗେ ପୁରୁଷ ଓ ମହିଳା ଉଭୟ ଏହି ରୋଗ ସମପରିମାଣରେ ଭୋଗିଥାନ୍ତି ।

### ବିପଦ ସଂକୁଳ ଅବସ୍ଥା

ପୁରୁଷ ଭଳି ମହିଳାମାନଙ୍କ ପାଇଁ ମଧ୍ୟ ଉଚ୍ଚରକ୍ତ ଚାପ, ମଧୁମେହ ରୋଗ, ରକ୍ତରେ ଚର୍ବିରୋଗ, ଧୂମ୍ରପାନ, ଆଳସ୍ୟ ତଥା ଅତ୍ୟଧିକ ଓଜନ ବୃଦ୍ଧି ହୃଦ୍‌ଘାତର ମୁଖ୍ୟ କାରଣ ହୋଇଥାଏ । ତେବେ ମଧୁମେହ ରୋଗ ଭୋଗୁଥିବା ମହିଳାମାନେ, ପୁରୁଷମାନଙ୍କଠାରୁ ଦୁଇଗୁଣ ଅଧିକ ହାରରେ ହୃଦ୍‌ରୋଗରେ ଆକ୍ରାନ୍ତ ହୁଅନ୍ତି । ମହିଳା ମଧୁମେହ ରୋଗୀମାନେ ପୁରୁଷମାନଙ୍କ ଅପେକ୍ଷା ଖୁବ୍ ଶୀଘ୍ର ଉଚ୍ଚରକ୍ତଚାପ ଓ ରକ୍ତରେ ଚର୍ବିଅଂଶର ଆଧିକ୍ୟ ଭୋଗିଥାନ୍ତି । ୪୫ ବର୍ଷର ମହିଳାମାନଙ୍କ ରକ୍ତରେ ଚର୍ବିଅଂଶ ଖୁବ୍ ଶୀଘ୍ର ବଢ଼ିଯାଏ । ମାସିକ ଋତୁସ୍ରାବର ବିରତି ପରେ ପ୍ରାୟ ୫୫ ବର୍ଷ ବୟସର ପୁରୁଷମାନଙ୍କ ଅପେକ୍ଷା ମହିଳାମାନଙ୍କର ରକ୍ତରେ ଚର୍ବିଅଂଶ ବେଶୀ ଥାଏ । ଏହି କ୍ଷେତ୍ରରେ ମହିଳାମାନଙ୍କର 'ହାଇଡେନ୍‌ସିଟି ଲାଇପୋପ୍ରୋଟିନ୍' ବା ଭଲ ଚର୍ବିଅଂଶ କମ୍ ଥାଏ ।

### ଲକ୍ଷଣ

କରୋନାରୀ ହୃଦ୍‌ରୋଗର ମୁଖ୍ୟ ଲକ୍ଷଣ ହେଉଛି ଛାତି ବା ହୃଦପିଣ୍ଡ ପାଖରେ କଷ୍ଟ ହେବା (ଆଞ୍ଜାଇନା) ଏବଂ ତାହା ବାଁ ପଟ କାନ୍ଧରୁ ବାଁ ହାତ ଦେଇ ବାମ ଅଂଗୁଳିକୁ ପ୍ରସାରିତ ହୋଇଥାଏ । ତେବେ ମହିଳାମାନଙ୍କ କ୍ଷେତ୍ରରେ ଏହି ଲକ୍ଷଣ ଠିକ୍ ଭାବରେ ଦେଖାଯାଉନଥିବାରୁ ରୋଗ ଚିହ୍ନଟ ହେବାରେ ଡେରି ହୋଇଯାଏ ।

ଯଦି କୌଣସି ପରିଶ୍ରମ କରିବା ପରେ ଏହି କଷ୍ଟ ହୋଇଥାଏ (ଏକ ଜର୍‌ସନ୍ ଆଞ୍ଜାଇନା ବା ସିଣ୍ଡ୍ରୋମ୍ ଏକ୍ସ) ଏବଂ କରୋନାରୀ ଆଞ୍ଜିଓଗ୍ରାମରେ ହୃତ୍‌ପିଣ୍ଡକୁ ରକ୍ତ ଯୋଗାଉଥିବା ଧମନୀ ଭଲଥାଏ - ତେବେ ଏଥିରେ ବେଶୀ ବୟସର ମହିଳାମାନେ ବି ଆରୋଗ୍ୟ ଲାଭ କରିଥାନ୍ତି । ହୃଦ୍‌ଘାତ ବା ମାୟୋକାର୍ଡିଆଲ୍ ଇନ୍‌ଫାର୍କସନ୍ ମଧ୍ୟ ପୁରୁଷମାନଙ୍କ ଅପେକ୍ଷା ମହିଳାମାନଙ୍କୁ ୧୦ ବର୍ଷ ପରେ ହୋଇଥାଏ - ଏଥିରେ ବେକ, କାନ୍ଧ, ମାଢ଼ି ଏବଂ ଛାତି ଓ ହାତରେ କଷ୍ଟ ହୋଇଥାଏ । ମହିଳାମାନଙ୍କର ବେଶୀ ବାନ୍ତି ହୋଇଥାଏ । କେତେକ ମହିଳା ପ୍ରଥମ ହୃଦଘାତ ବେଳେ ହିଁ ମୃତ୍ୟୁ ବରଣ କରିଥାନ୍ତି । ତେବେ ଉପଯୁକ୍ତ ଚିକିତ୍ସା

ନପାଇଲେ ଏମାନଙ୍କ ମଧ୍ୟରେ ଶତକଡ଼ା ୪୨ ପ୍ରତିଶତ ମୃତ୍ୟୁବରଣ କରିଥାନ୍ତି (ପୁରୁଷମାନଙ୍କ ମୃତ୍ୟୁ ହାର ଶତକଡ଼ା ୨୪) ଏବଂ ପ୍ରଥମ ୬ ବର୍ଷ ମଧ୍ୟରେ ପ୍ରାୟ ଶତକଡ଼ା ୩୨ ଭାଗ ମହିଳା ଦ୍ୱିତୀୟ ହୃଦଘାତ ଭୋଗିଥାନ୍ତି । ଆହୁରି ମଧ୍ୟ ମହିଳାମାନେ ହୃଦଘାତ ପରେ ପରେ ବେଶୀ ମାତ୍ରାରେ ଅକର୍ମଣ୍ୟ ହୋଇପଡ଼ନ୍ତି ।

### ଏହାର ଚିହ୍ନଟ

କରୋନାରୀ ହୃଦ୍‌ରୋଗ ଚିହ୍ନଟ ବିଶେଷ କରି ମହିଳାମାନଙ୍କ କ୍ଷେତ୍ରରେ ଅସୁବିଧା ସୃଷ୍ଟି କରିଥାଏ । କାରଣ ସେମାନେ ପ୍ରକୃତ ଲକ୍ଷଣ ଠିକ୍ ଭାବରେ କହି ପାରିନଥାନ୍ତି ଏବଂ ପ୍ରକୃତ କଥା ମଧ୍ୟ ଲୁଚାଇଥାନ୍ତି । ତେବେ ଇ.ସି.ଜି. (ଇଲେକ୍‌ଟ୍ରୋ କାଡ଼ିଓଗ୍ରାମ୍) ବା କଲର ଡପ୍ଲର ଇକୋକାର୍ଡ଼ିଓଗ୍ରାମ୍, ଟ୍ରେଡମିଲ୍‌ଟେଷ୍ଟ (ଟି.ଏମ୍.ଟି. ବା ଷ୍ଟ୍ରେସଟେଷ୍ଟ) ଏବଂ 'ମାୟୋକାର୍ଡ଼ିଆଲ୍ ପର୍‌ଫ୍ୟୁଜନ୍ ଉଇଥ୍ ଥାଲିୟମ୍' ଆଦି କଲେ ରୋଗର ଚିହ୍ନଟ ହୋଇପାରେ ଏବଂ ଚିକିତ୍ସା କରାଯାଇପାରେ ।

### ପ୍ରତିଷେଧକ ବ୍ୟବସ୍ଥା

'ହାଇରିସ୍କ' ମହିଳାମାନେ ଅତି କମ୍ ଡୋଜ୍‌ରେ 'ଆସ୍‌ପିରିନ୍' ବଟିକା ଖାଇଲେ କରୋନାରୀ ହୃଦ୍‌ଘାତ ହେବାର ଆଶଙ୍କା ଶତକଡ଼ା ୩୩ ଭାଗ କମିଯାଏ । ଏହି 'ଆସ୍‌ପିରିନ୍' ପ୍ରାଥମିକ ପ୍ରତିଷେଧକ ହିସାବରେ କାମ ଦେଇଥାଏ । ଏହା ଖାଇଲେ ଦ୍ୱିତୀୟ କରୋନାରୀ ହୃଦ୍‌ଘାତ ଏବଂ ତତ୍‌ଜନିତ ହୃଦ୍‌ଘାତ ଓ ମୃତ୍ୟୁର ପରିମାଣ କମାଇ ଦେଇଥାଏ । ବିଶେଷକରି ଯେଉଁ ମହିଳାମାନେ ମଧୁମେହ ବା ଉଚ୍ଚରକ୍ତଚାପ ଭୋଗୁଥାନ୍ତି, ଧୂମ୍ରପାନ କରୁଥାନ୍ତି କିମ୍ବା ସେମାନଙ୍କର ରକ୍ତରେ ଚର୍ବି ଅଂଶ ବେଶୀଥାଏ, ସେମାନଙ୍କ ପାଇଁ ଏହି 'ଲୋ ଡୋଜ୍ ଆସ୍‌ପିରିନ୍' ଅତି ଚମତ୍କାର କାମ ଦେଇଥାଏ ।

'ବିଟାବ୍ଲକର୍' କିମ୍ବା ଏସ୍‌ଇନହିବିଟର୍ (ଆଞ୍ଜିଓ ଟେନ୍‌ସିନ୍ କନଭର୍ଟିଂ ଏନ୍‌ଜାଇମ୍) ଚିକିତ୍ସା ଦ୍ୱାରା ଶତକଡ଼ା ୨୧ ଭାଗ ମୃତ୍ୟୁ ହାର, ଶତକଡ଼ା ୩୦ ଭାଗ ଆକସ୍ମିକ ମୃତ୍ୟୁ ଏବଂ ଶତକଡ଼ା ୨୫ ଭାଗ କରୋନାରୀ ହୃଦ୍‌ଘାତରୁ ରକ୍ଷା ମିଳିଥାଏ । ଏହାଛଡ଼ା କୋଲେଷ୍ଟେରୋଲ୍ କମାଇବା ପାଇଁ ମଧ୍ୟ ଔଷଧ ଖାଇବା ଉଚିତ (ଲିପିଡ୍ ଲୋଓ୍ୱରିଙ୍ଗ୍ ଥେରାପି) ।

### ହରମୋନ ରିପ୍ଲେସ୍‌ମେଣ୍ଟ୍ ଥେରାପି

ଗୋଟିଏ ନାରୀର ଜୀବନ କାଳ ମଧ୍ୟରେ ପ୍ରାୟ ୧୫ରୁ ୪୫ ବର୍ଷ ପର୍ଯ୍ୟନ୍ତ 'ଇଷ୍ଟ୍ରୋଜେନ୍' ସୁରକ୍ଷା ଦେଇଥାଏ । ସେଥିପାଇଁ ଅନେକେ ମାସିକ ରକ୍ତସ୍ରାବର ବିରତି ପରେ ଇଷ୍ଟ୍ରୋଜେନ୍ ରିପ୍ଲେସ୍‌ମେଣ୍ଟ ଥେରାପି ଦେବାକୁ ମତ ଦେଇଥାନ୍ତି । କିନ୍ତୁ ଅନୁଧ୍ୟାନରୁ ଜଣାଯାଇଛି ଯେ ସିନ୍‌ଥେଟିକ୍, ଇଷ୍ଟ୍ରୋଜେନ୍ ରିପ୍ଲେସମେଣ୍ଟ ଥେରାପି ବରଂ ଅଧିକ ମାତ୍ରାରେ ହୃଦ୍‌ଘାତ କରିଥାଏ । ତେଣୁ କରୋନାରୀ ହୃଦ୍‌ଘାତର ପ୍ରଥମ ପ୍ରତିଷେଧକ ବ୍ୟବସ୍ଥା ରୂପେ 'ହର୍‌ମୋନ ରିପ୍ଲେସ୍‌ମେଣ୍ଟ ଥେରାପି'ର ବିଶେଷ ଭୂମିକା ନାହିଁ କହିଲେ ଚଳେ । ଚିକିତ୍ସା ଦୃଷ୍ଟିରୁ ଦେଖିବାକୁ ଗଲେ କରୋନାରୀ ଆଞ୍ଜିଓପ୍ଲାଷ୍ଟିରେ ସେମାନେ ଆରୋଗ୍ୟ ଲାଭ କରିଥାନ୍ତି । କିନ୍ତୁ ଆଞ୍ଜିଓଗ୍ରାମରେ ବେଶୀ ଅସୁବିଧା ଥିଲେ, ବାଇପାସ୍ ଗ୍ରାଫ୍ଟିଂ (କରୋନାରୀ ବାଇପାସ୍ ସର୍ଜରୀ) କରିବାକୁ ହୋଇଥାଏ ଏବଂ ଏଥିରେ ରୋଗିଣୀ କେତେକାଂଶରେ ସୁସ୍ଥ ହୋଇ ପୁଣି ନିଜ କାମ ସୁରୁଖୁରୁରେ କରିଥାନ୍ତି ।

ମହିଳାମାନଙ୍କର କରୋନାରୀ ହୃଦରୋଗ ଉପରେ ଶେଷରେ ଏତିକି କୁହାଯାଇପାରେ ଯେ, ଏହା ସେମାନଙ୍କୁ ଯେକୌଣସି ବୟସରେ ମଧ୍ୟ ହୋଇପାରେ । ମଧୁମେହ ରୋଗ, ଉଚ୍ଚରକ୍ତ ଚାପ, ରକ୍ତରେ ଅତ୍ୟଧିକ ଚର୍ବିଅଂଶ ବୃଦ୍ଧିର ଚିକିତ୍ସା ଠିକ୍ ସମୟରେ କରିବା ଉଚିତ୍ । ଏହାଦ୍ୱାରା 'ରିସ୍କ ଫେକ୍ଟର' କମିଯାଏ : ବେଳେ ବେଳେ ମହିଳାମାନେ ଏହି ରୋଗର ଭିନ୍ନ ଭିନ୍ନ ଲକ୍ଷଣ ନେଇ ଡାକ୍ତରଙ୍କ ପାଖରେ ପହଞ୍ଚିଥାନ୍ତି । ତେଣୁ ରୋଗ ଚିହ୍ନଟ କରିବାରେ ଅସୁବିଧା ହୋଇଥାଏ । ପ୍ରାଥମିକ ସ୍ତରରେ ପ୍ରତିଷେଧକ ବ୍ୟବସ୍ଥା ହୋଇପାରିଲେ ଅନେକ ମହିଳା ଯେ ଆସନ୍ନ ହୃଦ୍‌ଘାତ ଓ ମୃତ୍ୟୁ ମୁଖରୁ ରକ୍ଷାପାଇ ପାରିବେ ଏଥିରେ ସନ୍ଦେହର ଅବକାଶ ନାହିଁ ।

ପତ୍ର ସୂଚନା କାର୍ଯ୍ୟାଳୟ, ଭାରତ ସରକାର, କଟକ






# ସମ୍ବାଦ ପରିକ୍ରମା



## ଶିଶୁ ମୃତ୍ୟୁ ହ୍ରାସ ମିଶନ ଅଧୀନସ୍ଥ 'ନବଜ୍ୟୋତି' କାର୍ଯ୍ୟକ୍ରମର ଶୁଭାରମ୍ଭ

ଶିଶୁ ମୃତ୍ୟୁହାରର ଶତକଡ଼ା ୬୦ ପ୍ରତିଶତ ମୃତ୍ୟୁ ଜନ୍ମର ଏକମାସ ମଧ୍ୟରେ ଘଟିଥାଏ । ଏଣୁ ଶିଶୁ ମୃତ୍ୟୁହାର ହ୍ରାସ କରିବା ପାଇଁ ସମସ୍ତ ନବଜାତ ଶିଶୁଙ୍କ ଯତ୍ନ ନେବା ନିମନ୍ତେ 'ନବଜ୍ୟୋତି' କାର୍ଯ୍ୟକ୍ରମ ଆରମ୍ଭ ହୋଇଛି ।

ଶିଶୁ ମୃତ୍ୟୁହ୍ରାସ ମିଶନ ଅଧୀନସ୍ଥ 'ନବଜ୍ୟୋତି' କାର୍ଯ୍ୟକ୍ରମକୁ ଗତ ୧ ତାରିଖରେ ଜୟଦେବ ଭବନଠାରେ ଆୟୋଜିତ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିଛନ୍ତି । ଶିଶୁ ମୃତ୍ୟୁହାର ଅଧିକ ଥିବା ଏବଂ ଅନୁନ୍ନତ ଆଦିବାସୀ ବହୁଳ ୧୪ଟି ଜିଲ୍ଲାରେ ପ୍ରଥମ ପର୍ଯ୍ୟାୟରେ ଏହି କାର୍ଯ୍ୟକ୍ରମ ଆରମ୍ଭ କରାଯାଉଛି । ଏହି ଜିଲ୍ଲାଗୁଡ଼ିକ ହେଉଛି ରାୟଗଡ଼ା, ମାଲକାନଗିରି, ବଲାଙ୍ଗୀର, ନୂଆପଡ଼ା, ଗଜପତି, କଳାହାଣ୍ଡି, କେଉଁଝର, ସୁନ୍ଦରଗଡ଼, ଫୁଲବାଣୀ, ନବରଂଗପୁର, ବୌଦ୍ଧ, କୋରାପୁଟ, ଦେବଗଡ଼ ଓ ସୋନପୁର । ଏହି କାର୍ଯ୍ୟକ୍ରମ ମାଧ୍ୟମରେ ସୁଦୂର ଗ୍ରାମାଞ୍ଚଳରେ ନବଜାତ ଶିଶୁଙ୍କ ସ୍ୱାସ୍ଥ୍ୟର ଘରୋଇ ଯତ୍ନ, ଅସୁସ୍ଥ ଶିଶୁଙ୍କୁ ଯଥାଶୀଘ୍ର ଚିହ୍ନଟ ଓ ସ୍ୱାସ୍ଥ୍ୟ ଅନୁଷ୍ଠାନକୁ ପଠାଇବା, ସମସ୍ତ ନବଜାତ ଶିଶୁ ଓ ମା'ମାନଙ୍କୁ ଶିଶୁ ଜନ୍ମର ପ୍ରଥମ, ତୃତୀୟ, ସପ୍ତମ, ଚତୁର୍ଦ୍ଦଶ ଓ ଅଷ୍ଟବିଂଶ ଦିବସରେ ସେମାନଙ୍କ ଘରେ ତାଲିମପ୍ରାପ୍ତ ଧାଇମାନେ ଦେଖିବେ ଏବଂ ବିଭିନ୍ନ ସଂସ୍ଥାର ସହାୟତାରେ ଏହି କାର୍ଯ୍ୟକ୍ରମ ପରିଚାଳିତ ହେବ ।

୧୯୯୭ ମସିହାରେ ପ୍ରତି ଏକ ହଜାର ଜୀବିତାବସ୍ଥାରେ ଜନ୍ମଲାଭ କରୁଥିବା ଶିଶୁଙ୍କ ମୃତ୍ୟୁହାର ୯୭ ଥିବାବେଳେ ବର୍ତ୍ତମାନ ଏହା ୮୭କୁ ହ୍ରାସ ପାଇଛି । ବର୍ତ୍ତମାନ କାର୍ଯ୍ୟକାରୀ ହେବାକୁ ଯାଉଥିବା ୧୪ଟି ଚିହ୍ନିତ ଜିଲ୍ଲାରେ ଏହି କାର୍ଯ୍ୟକ୍ରମ ମାଧ୍ୟମରେ ଆସନ୍ତା ୨ ବର୍ଷ ମଧ୍ୟରେ ଶିଶୁ ମୃତ୍ୟୁହାରକୁ ୮୭ରୁ ୬୦କୁ ହ୍ରାସ କରିବାର ଲକ୍ଷ୍ୟ ରହିଛି । ଏଥିରେ ନିୟୋଜିତ କରାଯାଉଥିବା ସାକ୍ଷର ଧାଇମାନଙ୍କୁ ମା' ଓ ଶିଶୁ ସ୍ୱାସ୍ଥ୍ୟର ଯତ୍ନ ସଂପର୍କରେ ୧୦ ଦିନ ତାଲିମ୍ ଦିଆଯିବ ।

ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ମନ୍ତ୍ରୀ ଶ୍ରୀ ବିଜୟଶ୍ରୀ ରାଉତରାୟ ତାଙ୍କ ଭାଷଣରେ ଏହି ଅଭିନବ କାର୍ଯ୍ୟକ୍ରମର ସଫଳତା ପାଇଁ ୟୁନିସେଫ୍, ୟୁ.ଏନ୍.ଏଫ୍.ପି.ଏ.ଇ.ସି, ବେସରକାରୀ ସ୍ୱେଚ୍ଛାସେବୀ ସଂଗଠନ ଏବଂ ସାଧାରଣ ଲୋକମାନଙ୍କର ସାହାଯ୍ୟ ଓ ସହଯୋଗ କାମନା କରିଥିଲେ ।

ୟୁନିସେଫ୍ ଓଡ଼ିଶା ପ୍ରତିନିଧି ମିଃ ଟମ୍ ଲେସନ ଓଡ଼ିଶାରେ ଶିଶୁ ମୃତ୍ୟୁହାର ହ୍ରାସ ଏବଂ ସ୍ୱାସ୍ଥ୍ୟସେବା ବ୍ୟବସ୍ଥାର ଉନ୍ନତି ନିମନ୍ତେ ୟୁନିସେଫ୍ ତା'ର ସାହାଯ୍ୟ ଅବ୍ୟାହତ ରଖିବ ବୋଲି ପ୍ରକାଶ କରିଥିଲେ । ଅନ୍ୟମାନଙ୍କ ମଧ୍ୟରେ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ପ୍ରମୁଖ ଶାସନ ସଚିବ ଶ୍ରୀ ରବିନାରାୟଣ ସେନାପତି ପ୍ରମୁଖ ଉଦ୍‌ବୋଧନ ଦେଇଥିଲେ । ପରିବାର କଲ୍ୟାଣ ନିର୍ଦ୍ଦେଶକ ଡାଃ ବି.କେ. ଦାସ ସ୍ୱାଗତ ଭାଷଣ ପ୍ରଦାନ କରିଥିଲେ ଏବଂ ରାଜ୍ୟ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ପ୍ରତିଷ୍ଠାନ ନିର୍ଦ୍ଦେଶକ ପ୍ରଫେସର ଭଗବତୀ ଚରଣ ଦାସ ଧନ୍ୟବାଦ ଅର୍ପଣ କରିଥିଲେ ।

## ୨୦୦୫ ମସିହା ଫେବୃଆରୀ ମାସରେ ଓଡ଼ିଶା ରାଜ୍ୟ ପରିବହନ ନିଗମର ୨୬୪.୬୩ ଲକ୍ଷ ଟଙ୍କା ଆୟ

ଓଡ଼ିଶା ରାଜ୍ୟ ପରିବହନ ନିଗମ ପକ୍ଷରୁ ୨୦୦୪ ମସିହା ଫେବୃଆରୀ ମାସରେ ୨୨୬.୭୬ ଲକ୍ଷ ଟଙ୍କା ଆୟ କରାଯାଇଥିବା ବେଳେ ୨୦୦୫ ମସିହା ଫେବୃଆରୀ ମାସରେ ୨୬୪.୬୩ ଲକ୍ଷ ଟଙ୍କା ଆୟ କରାଯାଇଛି । ଏହା ବ୍ୟତୀତ ଭୁବନେଶ୍ୱରର ବରମୁଣ୍ଡା ଓ କଟକର

ବାଦାମବାଡ଼ି ବସ୍‌ଷ୍ଟାଣ୍ଡରେ ରହଣି ମାହାସୁଲ ବାବଦରେ ୪ ଲକ୍ଷ ୭୬ ହଜାର ୫୯୦ ଟଙ୍କା ଆଦାୟ କରାଯାଇଛି ବୋଲି ବାଣିଜ୍ୟ ଓ ପରିବହନ ବିଭାଗ ସୂତ୍ରରୁ ପ୍ରକାଶ ।

ସେହିପରି ଓଡ଼ିଶା ରାଜ୍ୟ ପରିବହନ ନିଗମ ପକ୍ଷରୁ ନୂତନ ମାର୍ଗରେ ହୀରାକୁଦର ଧମା ଦେଇ ବ୍ରହ୍ମପୁର ମଧ୍ୟରେ ବସ୍ ସେବା ପ୍ରଚଳନ କରାଯାଇଛି । ୧୩.୩.୦୫ ତାରିଖଠାରୁ ଭୁବନେଶ୍ୱରରୁ ନୂଆଦିଲ୍ଲୀ ମଧ୍ୟରେ ସପ୍ତାହରେ ଦୁଇଥର 'ଓଡ଼ିଶା ସଂପର୍କ କ୍ରାନ୍ତି' ନାମରେ ଏକ ଦ୍ରୁତଗାମୀ ରେଳଗାଡ଼ିର ବିଧିବଦ୍ଧ ଭାବେ ଚଳାଚଳ ଆରମ୍ଭ ହୋଇଛି ବୋଲି ଉକ୍ତ ବିଭାଗ ସୂତ୍ରରୁ ପ୍ରକାଶ ।

## ଆସନ୍ତା ୩ ବର୍ଷ ମଧ୍ୟରେ କେ.ବି.କେ. ଜିଲ୍ଲାର ପ୍ରତ୍ୟେକ ଗ୍ରାମକୁ ରାସ୍ତା ସଂଯୋଗୀକରଣ କରାଯିବ

ଆସନ୍ତା ୩ ବର୍ଷ ମଧ୍ୟରେ ଅବିଭକ୍ତ ୮ ଗୋଟି କେ.ବି.କେ. ଜିଲ୍ଲାର ପ୍ରତ୍ୟେକ ଗ୍ରାମକୁ ରାସ୍ତା ସଂଯୋଗୀକରଣ ପାଇଁ ସରକାର ବ୍ୟାପକ ପଦକ୍ଷେପ ନେଇଛନ୍ତି । ୨୫୦ରୁ ଊର୍ଦ୍ଧ୍ୱ ଜନସଂଖ୍ୟା ବିଶିଷ୍ଟ ପ୍ରତ୍ୟେକ ଗ୍ରାମ୍ୟ ରାସ୍ତା ସଂଯୋଗୀକରଣ କରାଯିବା ପାଇଁ କେନ୍ଦ୍ର ସରକାରଙ୍କ ରେଳ ମନ୍ତ୍ରଣାଳୟ ଅଧୀନରେ ଥିବା 'ରାଇଟ୍‌ସ' ସହ ଆଜି ଏ ସଂକ୍ରାନ୍ତରେ ଏକ ଚୁକ୍ତି ସ୍ୱାକ୍ଷରିତ ହୋଇଛି । ସ୍ୱତନ୍ତ୍ର ଗ୍ରାମୀଣ ସଂଯୋଗୀକରଣ କାର୍ଯ୍ୟକ୍ରମ ଜରିଆରେ ୩ ଗୋଟି ପର୍ଯ୍ୟାୟରେ ଏହି କାମ ସଂପାଦନ ହେବ । ପ୍ରଥମ ପର୍ଯ୍ୟାୟରେ ୧୦୦୦ରୁ ଊର୍ଦ୍ଧ୍ୱ ଜନସଂଖ୍ୟା ବିଶିଷ୍ଟ ଓ ରାସ୍ତାଘାଟ ନଥିବା ଗ୍ରାମପଞ୍ଚାୟତ, ଦ୍ୱିତୀୟ ପର୍ଯ୍ୟାୟରେ ୫୦୦ରୁ ୧୦୦୦ ମଧ୍ୟରେ ଥିବା ଜନସଂଖ୍ୟା ବିଶିଷ୍ଟ ବା ଗ୍ରାମପଞ୍ଚାୟତ ଏବଂ ତୃତୀୟ ପର୍ଯ୍ୟାୟରେ ୨୫୦ରୁ ୫୦୦ ମଧ୍ୟରେ ଜନସଂଖ୍ୟା ବିଶିଷ୍ଟ ଗ୍ରାମ ତଥା ରାସ୍ତାଘାଟ ନଥିବା ଗ୍ରାମ ପଞ୍ଚାୟତଗୁଡ଼ିକରେ ରାସ୍ତାଘାଟ ତିଆରି କରାଯିବ । ଏହି ରାସ୍ତାଘାଟ ନିର୍ମାଣ କାର୍ଯ୍ୟକ୍ରମ 'ରାଇଟ୍‌ସ' ଦ୍ୱାରା ସଂପାଦିତ ହେବ । ପ୍ରଥମ ପର୍ଯ୍ୟାୟରେ ଏଥିନିମିତ୍ତ ୨୧୧ କୋଟି ଟଙ୍କାର ବ୍ୟୟ କରାଯିବ ବୋଲି ଯୋଜନା ଓ ସମନ୍ୱୟ ବିଭାଗ ସୂତ୍ରରୁ ପ୍ରକାଶ ।

କେନ୍ଦ୍ର ସରକାରଙ୍କ ବିଭିନ୍ନ ଯୋଜନା, ଯଥା- ପ୍ରଧାନମନ୍ତ୍ରୀ ଗ୍ରାମ ସଡ଼କ ଯୋଜନା, ଦୀର୍ଘମିଆଦୀ କ୍ରିୟାଭିମୁଖୀ ଯୋଜନା, ଜାତୀୟ କାମ ପାଇଁ ଖାଦ୍ୟ ଯୋଜନା ଓ ଅବିଭକ୍ତ କେନ୍ଦ୍ରୀୟ ସହାୟତାରେ ଅଦ୍ୟାବଧି ମଂଜୁର ହୋଇଥିବା ୮୨୮.୧୦ କୋଟି ଟଙ୍କା ମଧ୍ୟରୁ ପ୍ରଥମ ପର୍ଯ୍ୟାୟରେ ୨୧୧ କୋଟି ଟଙ୍କା ବ୍ୟୟରେ ଅବିଭକ୍ତ କୋରାପୁଟ ଜିଲ୍ଲାରେ ୭୦ ପ୍ରତିଶତ ରାସ୍ତାଘାଟ ନିର୍ମାଣ ହେବା ବେଳେ ଅବିଭକ୍ତ ବଲାଙ୍ଗୀର ଓ କଳାହାଣ୍ଡି ଜିଲ୍ଲାରେ ୪୦ ପ୍ରତିଶତ କାର୍ଯ୍ୟ ହେବ । ଭବିଷ୍ୟତରେ ଏଥିପାଇଁ କେନ୍ଦ୍ରୀୟ ଅନୁଦାନ ପରିମାଣ ଆହୁରି ବୃଦ୍ଧି ପାଇବ ବୋଲି ଅନୁଷ୍ଠିତ ବୈଠକରୁ ଜଣାପଡ଼ିଛି । ଏହି ବୈଠକରେ 'ରାଇଟ୍‌ସ' ସଂସ୍ଥା ପକ୍ଷରୁ ସୁକୋମଳ ଚକ୍ରବର୍ତ୍ତୀ ଓ ପି.କେ. ପାଣିଗ୍ରାହୀ ଉପସ୍ଥିତ ଥିବାବେଳେ ସରକାରଙ୍କ ପକ୍ଷରୁ ଯୋଜନା ଓ ସମନ୍ୱୟ ବିଭାଗର ସ୍ୱତନ୍ତ୍ର ଶାସନ ସଚିବ ଶ୍ରୀ ଆର୍.ଭି. ସିଂହ ଉପସ୍ଥିତ ଥିଲେ ।

## ପଞ୍ଚାୟତ ଅନୁଷ୍ଠାନକୁ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗର ଅଧିକ କ୍ଷମତା ହସ୍ତାନ୍ତର

ସମ୍ବିଧାନର ୭୩ତମ ସଂଶୋଧନ ଅନୁଯାୟୀ ରାଜ୍ୟରେ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକୁ ସ୍ୱୟଂଶାସିତ ଅନୁଷ୍ଠାନ ରୂପେ କାର୍ଯ୍ୟ କରିବା ପାଇଁ ପର୍ଯ୍ୟାପ୍ତ ଦାୟିତ୍ୱ ଓ କ୍ଷମତା ପ୍ରଦାନ କରିବା ପ୍ରକ୍ରିୟା ଆରମ୍ଭ କରାଯାଇ ଅନେକ କ୍ଷମତା ପ୍ରଦାନ କରାଯାଇଥିବା ବେଳେ ବର୍ତ୍ତମାନ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗର ଆଉ କେତେକ ଅଧିକ କ୍ଷମତା ପ୍ରଦାନ କରାଯାଉଥିବା ବିଦ୍ୟାଳୟ ଓ ଗଣଶିକ୍ଷା ମନ୍ତ୍ରୀ ଶ୍ରୀ ନଗେନ୍ଦ୍ର କୁମାର ପ୍ରଧାନ ପ୍ରକାଶ କରିଛନ୍ତି ।

ପ୍ରାଥମିକ ଶିକ୍ଷା ବ୍ୟବସ୍ଥାର ଅଭିବୃଦ୍ଧି ଓ ଉନ୍ନତି, ପ୍ରୌଢ଼ଶିକ୍ଷା, ଅଣ-ଅନୁଷ୍ଠାନିକ ଶିକ୍ଷା ଓ ସଂପୂର୍ଣ୍ଣ ସାକ୍ଷରତା ନିମନ୍ତେ ଜିଲ୍ଲା ପରିଷଦ, ପଞ୍ଚାୟତ ସମିତି ଓ ଗ୍ରାମ ପଞ୍ଚାୟତକୁ କେତେକ ନିର୍ଦ୍ଦିଷ୍ଟ କ୍ଷମତା ପ୍ରଦାନ କରାଯାଇଛି । ତଦନୁଯାୟୀ ଜିଲ୍ଲା ପରିଷଦ ଜିଲ୍ଲାରେ ଆବଶ୍ୟକ ହେଉଥିବା ବିଦ୍ୟାଳୟ, ଶିକ୍ଷକ, ପାଠ୍ୟ ଉପକରଣ, ବିଦ୍ୟାଳୟର ରକ୍ଷଣାବେକ୍ଷଣ, ନିର୍ଦ୍ଦିଷ୍ଟ ବର୍ଗର ଛାତ୍ରଛାତ୍ରୀମାନଙ୍କ ପାଇଁ ଛାତ୍ରାବାସର ଆବଶ୍ୟକତା ନିମନ୍ତେ ଆକଳନ କରି ଯୋଜନା ପ୍ରସ୍ତୁତ କରିବେ । ସେହିପରି ବିଦ୍ୟାଳୟ ପରିଦର୍ଶନ ଓ ପରିଚାଳନା, ଛାତ୍ରଛାତ୍ରୀଙ୍କ ଉପସ୍ଥାନ ବୃଦ୍ଧି ଓ ଅଧାରୁ ପାଠ ଛାଡୁଥିବା ଛାତ୍ରଛାତ୍ରୀମାନଙ୍କ ହ୍ରାସ କରାଇବା, ନିର୍ଦ୍ଦିଷ୍ଟ ବର୍ଗର ସଂଖ୍ୟା ଛାତ୍ରଛାତ୍ରୀମାନଙ୍କୁ ମାଗଣାରେ ସ୍କୁଲ ପୋଷାକ, ପାଠ୍ୟ ପୁସ୍ତକ ଓ ପାଠ୍ୟ ଉପକରଣ ଯୋଗାଇ ଦେବା, ପ୍ରୌଢ଼ଶିକ୍ଷା କେନ୍ଦ୍ର ସ୍ଥାପନ ନିମନ୍ତେ ଉପଯୁକ୍ତ ସ୍ଥାନ ନିରୂପଣ କରିବା, ପ୍ରୌଢ଼ମାନଙ୍କୁ ଶିକ୍ଷା ଦେବା ନିମନ୍ତେ ସ୍ୱେଚ୍ଛାସେବୀ ଓ ସୁପରଭାଇଜର ମନୋନିତ କରିବା ଓ କେନ୍ଦ୍ରଗୁଡ଼ିକର ରକ୍ଷଣାବେକ୍ଷଣ ଦାୟିତ୍ୱ ତୁଲାଇବା, ଆବଶ୍ୟକୀୟ ଭିତ୍ତିଭୂମି ଯୋଗାଇ

ଦେବା ସହ ପାଠ୍ୟୋପକରଣ ସଂଗ୍ରହ କରି ଯୋଗାଇ ଦେବା, କେନ୍ଦ୍ରର ପରିଚାଳନା ଓ ପର୍ଯ୍ୟବେକ୍ଷଣ କରିବା, ସଂପୂର୍ଣ୍ଣ ସାକ୍ଷରତା କାର୍ଯ୍ୟକ୍ରମ ସଂଗଠିତ କରିବା ଇତ୍ୟାଦି ଦାୟିତ୍ୱ ବହନ କରିବା ।

ସେହିପରି ପଞ୍ଚାୟତ ସମିତି ପ୍ରାଥମିକ ଓ ଉଚ୍ଚ ପ୍ରାଥମିକ ବିଦ୍ୟାଳୟଗୁଡ଼ିକର କାର୍ଯ୍ୟକାରିତାର ପର୍ଯ୍ୟବେକ୍ଷଣ କରିବେ । ବିଦ୍ୟାଳୟଗୁଡ଼ିକୁ ପାଠ୍ୟ ଉପକରଣ ଏବଂ ଆନୁଷଙ୍ଗିକ ସରଂଜାମ ଯୋଗାଣ, ଅଧାରୁ ପାଠ ଛାଡୁଥିବା ଛାତ୍ରଛାତ୍ରୀଙ୍କ ସଂଖ୍ୟାର ଆକଳନ କରି ଏହାକୁ ରୋକିବା ଦିଗରେ ଆବଶ୍ୟକ ପଦକ୍ଷେପ ନେବେ । ନିର୍ଦ୍ଦିଷ୍ଟ ବର୍ଗର ଛାତ୍ରଛାତ୍ରୀମାନଙ୍କୁ ସ୍କୁଲ, ପୋଷାକ ଓ ପାଠ୍ୟ ପୁସ୍ତକ ଯୋଗାଇ ଦେବା ସହ ଛାତ୍ରାବାସର ରକ୍ଷଣାବେକ୍ଷଣରେ ସାହାଯ୍ୟ କରିବେ । ପ୍ରୌଢ଼ଶିକ୍ଷା, ଅଣ-ଆନୁଷ୍ଠାନିକ ଶିକ୍ଷା ଓ ସଂପୂର୍ଣ୍ଣ ସାକ୍ଷରତା ଅଭିଯାନ କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିବା ଦିଗରେ ଦୃଷ୍ଟି ଦେବେ । କେନ୍ଦ୍ରଗୁଡ଼ିକରେ ଆନୁଷଙ୍ଗିକ ପାଠ୍ୟ ଉପକରଣ ଯେପରି ପହଞ୍ଚେ ସେଥିପ୍ରତି ଗୁରୁତ୍ୱ ଦେବା ସହ କେନ୍ଦ୍ର କାର୍ଯ୍ୟକାରିତାର ପରିଚାଳନା ଓ ପର୍ଯ୍ୟବେକ୍ଷଣ ଦାୟିତ୍ୱ ତୁଲାଇବେ ।

ଗ୍ରାମପଞ୍ଚାୟତ ସ୍କୁଲର ଉପସ୍ଥାନ ଶତ ପ୍ରତିଶତ କରିବା ଦିଗରେ ଦାୟିତ୍ୱ ନେବେ । ସ୍କୁଲ ଗୃହ ଓ ଖେଳପଡ଼ିଆର ରକ୍ଷଣାବେକ୍ଷଣ କରିବେ । ସ୍କୁଲଗୁଡ଼ିକର ଶିକ୍ଷକ ଓ ଛାତ୍ରଛାତ୍ରୀମାନଙ୍କ ଉପସ୍ଥାନ ଉପରେ ସତର୍କ ଦୃଷ୍ଟି ରଖି ଉପରିସ୍ଥ ଅଧିକାରୀମାନଙ୍କୁ ଜଣାଇବେ । ନିର୍ଦ୍ଦିଷ୍ଟ ବର୍ଗର ଛାତ୍ରଛାତ୍ରୀମାନଙ୍କୁ ପାଠ୍ୟ ଉପକରଣ ବଣ୍ଟନରେ ସହଯୋଗ କରିବେ, ହଷ୍ଟେଲଗୁଡ଼ିକର ରକ୍ଷଣାବେକ୍ଷଣ ଦାୟିତ୍ୱ ତୁଲାଇବେ । ପ୍ରୌଢ଼ଶିକ୍ଷା ଏବଂ ସଂପୂର୍ଣ୍ଣ ସାକ୍ଷରତା ଅଭିଯାନରେ ଲୋକମାନଙ୍କୁ ସଂଶ୍ଳିଷ୍ଟ କରିବା ପାଇଁ ପ୍ରଭାବିତ କରାଇବା ସହ ସେଣ୍ଟରଗୁଡ଼ିକର ଶିକ୍ଷାର୍ଥୀ ଓ ସ୍ୱେଚ୍ଛାସେବୀମାନଙ୍କର ନିୟମିତତା ଉପରେ ପର୍ଯ୍ୟବେକ୍ଷଣ କରିବା ଦାୟିତ୍ୱ ଅର୍ପଣ କରାଯାଇଛି ।

ଏଠାରେ ସୂଚନାଯୋଗ୍ୟ ଯେ ପୂର୍ବରୁ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ ପଞ୍ଚାୟତିରାଜକୁ ପ୍ରାଥମିକ ଶିକ୍ଷା, ଅଣ-ଆନୁଷ୍ଠାନିକ ଶିକ୍ଷା ଓ ପ୍ରୌଢ଼ ଶିକ୍ଷାର ପ୍ରତିଷ୍ଠାନ ସଂପର୍କିତ ଦାୟିତ୍ୱ ପ୍ରଦାନ କରିଥିଲେ ।

## ରାଜ୍ୟ କୃଷି ବିପଣନ ନିର୍ଦ୍ଦେଶାଳୟର ୨୦୦୪-୦୫ ବର୍ଷର କାର୍ଯ୍ୟାବଳୀ

ଓଡ଼ିଶା ଭଳି କୃଷି ଉପରେ ନିର୍ଭରଶୀଳ ରାଜ୍ୟରେ ଯେଉଁଠି ଅଧିକାଂଶ ଲୋକ ଆଦିବାସୀ, ହରିଜନ ଭଳି ଦୁର୍ବଳଶ୍ରେଣୀ ଓ ଅସଂଗଠିତ ଅବସ୍ଥାରେ କ୍ଷୁଦ୍ର, ନାମମାତ୍ର ଚାଷୀ ଅଟନ୍ତି, କୃଷି ବିପଣନ ବ୍ୟବସ୍ଥାର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ଏବଂ ଏହି ଦାୟିତ୍ୱ ରାଜ୍ୟ କୃଷି ବିପଣନ ପରିଷଦ' ଉପରେ ନ୍ୟସ୍ତ । ବିଭିନ୍ନ ଅଂଚଳରେ ଅଭାବି ବିକ୍ରି ଓ ଲାଭଖୋର ମଧ୍ୟସ୍ଥି-ବେପାରୀ (ମିଡିଲ୍ ମେନ୍‌କ) ଦାଉରୁ ଗରିବ ଚାଷୀଙ୍କୁ ରକ୍ଷା କରିବା ବଜାର-ନିୟନ୍ତ୍ରଣ ବ୍ୟବସ୍ଥାର ମୁଖ୍ୟ ଉଦ୍ଦେଶ୍ୟ ଅଟେ । ବିଭିନ୍ନ ଫସଲକୁ ନିୟନ୍ତ୍ରିତ ଫସଲ ରୂପେ ଘୋଷଣା କରିବା, ବଜାର ପ୍ରାଙ୍ଗଣରେ ପାନୀୟ ଜଳ ଯୋଗାଣ, ଗୋଦାମ ଘର, ବିକ୍ରୟ ଚଟାଣ ଓ ଅନ୍ୟାନ୍ୟ ଭିତ୍ତିଭୂମି ସ୍ଥାପନା, ଦେଶର ଓ ରାଜ୍ୟର ଅନ୍ୟାନ୍ୟ ଅଂଚଳ ବଜାର ଦର ସଂପର୍କରେ ଚାଷୀଙ୍କୁ ସୂଚନା ଦେବା ଆଦି ଅନେକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଏହି ନିର୍ଦ୍ଦେଶାଳୟ ଓ ପରିଷଦ ତୁଲାଇ ଥାଆନ୍ତି । କେତେକ ଆଂଚଳିକ ବଜାର କମିଟି ପ୍ରଚୁର ଫଳ ଓ ପନିପରିବା ଉତ୍ପାଦିତ ହେଉଥିବା ଅଂଚଳରେ କୃଷକ ବଜାରମାନ ପ୍ରତିଷ୍ଠା କରିଛନ୍ତି, ଯେଉଁଠି ଚାଷୀ ତାଙ୍କର ଉତ୍ପାଦିତ ଫଳ ଓ ପନିପରିବାକୁ ସିଧାସଳଖ ଖାଉଟୀଙ୍କୁ ବିକ୍ରି କରୁଥିବାରୁ ଚାଷୀ ଅଧିକ ମୂଲ୍ୟ ପାଇବା ସଂଗେ ସଂଗେ ଖାଉଟୀ ମଧ୍ୟ ଶସ୍ତାରେ ତାଜା ଫଳ ଓ ପନିପରିବା ପାଇ ପାରୁଛନ୍ତି । ରାଜ୍ୟରେ ୪୨ଟି କୃଷକ ବଜାର ରହିଛି ।

ରାଜ୍ୟରେ ଥିବା ୬୦ଟି ଆଂଚଳିକ ବଜାର କମିଟି (ଆର୍.ଏମ୍.ସି.)ର ୪୪ଟି ମୁଖ୍ୟ ବଜାର ପ୍ରାଙ୍ଗଣ, ୩୮୧ଟି ଗୌଣ ବା ଉପପ୍ରାଙ୍ଗଣ, ୧୪୬ଟି ଗୋଦାମ ଘର, ୧୦୮ଟି ଗୋରୁ ହାଟ ଓ କଟନ୍ ଟେକ୍ନୋଲୋଜି ମିଶନ୍ ବ୍ୟବସ୍ଥାରେ ୪ଟି କପା ବଜାର ସୃଷ୍ଟି କରାଯାଇଛି । ଏହି ମୁଖ୍ୟ ବଜାରରେ କମ୍ପ୍ୟୁଟରୀ, ଭାରି ଓଜନ ମାପ ପାଇଁ ଯନ୍ତ୍ର (ୱେବ୍ରିଜ), ଧାନ ସଫେଇ ଯନ୍ତ୍ର (ପ୍ୟାଡି କ୍ଲିନର), ଜଳୀୟ ବାଷ୍ପ ପରିମାପକ ଯନ୍ତ୍ର (ମୟେଶଚର୍ ମିଟର) ଇତ୍ୟାଦିର ବ୍ୟବସ୍ଥା ରହିଛି ।

## ଓମ୍‌ଫେଡ୍‌ର ସମସ୍ତ ଡେରୀଗୁଡ଼ିକୁ ଅଧିକ କ୍ଷମତା ସଂପନ୍ନ କରାଯିବା ପାଇଁ ବ୍ୟାପକ ପଦକ୍ଷେପ ଗ୍ରହଣ

ଓମ୍‌ଫେଡ୍ ଅଧୀନରେ କାର୍ଯ୍ୟରତ ସମସ୍ତ ଡେରୀ ସାରା ରାଜ୍ୟରୁ ଦୁଗ୍ଧ ଚାଷୀଙ୍କ ସଂଗୃହିତ ଦୁଗ୍ଧକୁ ଶୀତଳୀକରଣ, ପ୍ରକ୍ରିୟାକରଣ ପ୍ୟାକେଜିଂ ଓ ଅନ୍ୟାନ୍ୟ ଦୁଗ୍ଧଜାତ ଦ୍ରବ୍ୟ ପ୍ରସ୍ତୁତ କରି ଖାଉଟି ଜନସାଧାରଣଙ୍କ ଚାହିଦା ମୁତାବକ ଯୋଗାଇ ଦେଇ ଆସୁଅଛି । ବିଗତ ବର୍ଷ ଓ

ଚଳିତ ବର୍ଷରେ ଓମ୍‌ଫେଡ୍ ଦୁଗ୍ଧ ସଂଗ୍ରହର ଆଶାତୀତ ବୃଦ୍ଧିକୁ ଦୃଷ୍ଟିରେ ରଖି ଏହାର ସମସ୍ତ ଡେରୀକୁ ଅଧିକ କ୍ଷମତା ସଂପନ୍ନ କରିବା ପାଇଁ ସଂପ୍ରସାରଣ କାର୍ଯ୍ୟ ହାତକୁ ନେଇଛନ୍ତି । ରାଜ୍ୟର ସର୍ବବୃହତ୍ ଡେରୀ ଚନ୍ଦ୍ରଶେଖରପୁରସ୍ଥ ଭୁବନେଶ୍ୱର ଡେରୀର ୧,୨୫,୦୦୦ ଲିଟର ସାମାର୍ଥ୍ୟ ଥିବା କାରଖାନାକୁ ୨,୦୦,୦୦୦ ଲିଟରକୁ ସଂପ୍ରସାରିତ କରିବା ପାଇଁ କାର୍ଯ୍ୟ ଆରମ୍ଭ କରାଯାଇଛି । ସେହିପରି ୧୦,୦୦୦ ଲିଟର ଥିବା ବ୍ରହ୍ମପୁର ଡେରୀକୁ ୨୦,୦୦୦ ଲିଟର, ୧୦,୦୦୦ ଲିଟର ସାମର୍ଥ୍ୟ ଥିବା ବାଲେଶ୍ୱର ଡେରୀକୁ ୩୦,୦୦୦ ଲିଟର କ୍ଷମତା ବିଶିଷ୍ଟ କରାଯିବା ପାଇଁ ନିର୍ମାଣ କାର୍ଯ୍ୟ ଦ୍ରୁତଗତିରେ ଆଗେଇ ଚାଲିଛି । ସମ୍ବଲପୁର ଡେରୀ ଓ ବାଲେଶ୍ୱର ଡେରୀ ଦୁଗ୍ଧ ସଂଗ୍ରହର ଅଭିବୃଦ୍ଧିକୁ ଦେଖି ଭବିଷ୍ୟତରେ ଏହାକୁ ୫୦,୦୦୦ ଲିଟର କରାଯିବା ପାଇଁ ପଦକ୍ଷେପ ଆରମ୍ଭ କରାଯାଇଛି । ଏତଦ୍‌ବ୍ୟତୀତ କେନ୍ଦ୍ରୀୟ ଡେରୀ ଜୟପୁରକୁ ୩,୦୦୦ ଲିଟରରୁ ୧୦,୦୦୦ ଲିଟର, ଭବାନୀପାଟଣା ଡେରୀ ୧,୦୦୦ ଲିଟରରୁ ୧୦,୦୦୦ ଲିଟର, ଢେଙ୍କାନାଳ ଡେରୀକୁ ୧୦,୦୦୦ ଲିଟରରୁ ୨୦,୦୦୦ ଲିଟର, କେଉଁଝର ଡେରୀ ୧୦,୦୦୦ ଲିଟରରୁ ୨୦,୦୦୦ ଲିଟର କ୍ଷମତା ସଂପ୍ରସାରଣ କାର୍ଯ୍ୟାରମ୍ଭ ହୋଇଛି । ଏହିସବୁ ଡେରୀଗୁଡ଼ିକର ଉତ୍ପାଦିତ ଦୁଗ୍ଧ ଓ ଦୁଗ୍ଧ ଜାତୀୟ ଦ୍ରବ୍ୟ ପଡ଼ୋଶୀ ରାଜ୍ୟର ଖାଉଟିମାନଙ୍କୁ ପାଇଁ ଯୋଗାଇ ଦିଆଯିବା ପାଇଁ ଆବଶ୍ୟକୀୟ ଭିତ୍ତିଭୂମି କାର୍ଯ୍ୟ ପ୍ରସ୍ତୁତ ସରିଛି ବୋଲି ଓମ୍‌ଫେଡ୍ ସୂତ୍ରରୁ ପ୍ରକାଶ ।

## ଜାତୀୟ ଜଂଗଲ ନୀତି ଅନୁଯାୟୀ ରାଜ୍ୟରେ ବ୍ୟାପକ ବନୀକରଣ କାର୍ଯ୍ୟକ୍ରମ

ଜାତୀୟ ଜଂଗଲ ନୀତି ୧୯୮୮ ଅନୁଯାୟୀ ରାଜ୍ୟର ମୋଟ ଭୌଗଳିକ ଅଂଚଳର ୩୩ ପ୍ରତିଶତ ଅଂଶ ଜଂଗଲ ଆଚ୍ଛାଦିତ ହେବା କଥା, ମାତ୍ର ଭାରତୀୟ ଜଂଗଲ ସର୍ବେକ୍ଷଣ ସଂସ୍ଥାରେ ରିପୋର୍ଟ ଅନୁଯାୟୀ ଆମ ରାଜ୍ୟର ୩୧.୩୬ ଅଂଶ ବର୍ତ୍ତମାନ ଜଂଗଲ ଆଚ୍ଛାଦିତ ହୋଇ ରହିଛି । ଏଣୁ ଜାତୀୟ ଜଂଗଲ ନୀତି ଅନୁଯାୟୀ ଧାର୍ଯ୍ୟ ହୋଇଥିବା ୩୩ ପ୍ରତିଶତ ଜଂଗଲ ସୃଷ୍ଟି ନିମନ୍ତେ ବନୀକରଣ ତଥା ଉଜୁଡ଼ା ଜଂଗଲର ପୁନଃ ବନୀକରଣ ନିମନ୍ତେ ବିଭିନ୍ନ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଅଛି । ୧୦ ପ୍ରତିଶତରୁ କମ୍ ଘନତ୍ୱ ଥିବା ଜଙ୍ଗଲ ଅଂଚଳ ହେଉଛି ୫,୬୮୨ ବର୍ଗ କିଲୋମିଟର ।

୨୦୦୪-୦୫ ବର୍ଷ ମଧ୍ୟରେ ରାଜ୍ୟରେ ରାଜ୍ୟ ଯୋଜନା, କେନ୍ଦ୍ରୀୟ ଯୋଜନା ଓ କେନ୍ଦ୍ର ପ୍ରବର୍ତ୍ତିତ ଯୋଜନା ଅଧୀନରେ ମୋଟ ୨୪,୬୦୫ ହେକ୍ଟର ପରିମିତ ଜମିରେ ବନୀକରଣ ପାଇଁ ପ୍ରସ୍ତାବ ରଖାଯାଇଛି । ଏହା ମଧ୍ୟରେ ୧୩,୧୩୦ ହେକ୍ଟର ଅଂଚଳରେ ଆର୍.ଏଲ୍.ଟି.ଏ.ପି. ଯୋଜନା ମାଧ୍ୟମରେ ବନୀକରଣ କରାଯାଇଥିବା ବେଳେ ୧୦,୯୪୬ ହେକ୍ଟର ପରିମିତ ଅଂଚଳରେ ଜାତୀୟ ବନୀକରଣ କାର୍ଯ୍ୟକ୍ରମ ଜରିଆରେ ଏବଂ ୩୪୯ ହେକ୍ଟର ଅଂଚଳରେ ଅର୍ଥନୈତିକ ବନୀକରଣ ଜରିଆରେ ବନୀକରଣ କରାଯାଇଛି । ଏହି ବୃକ୍ଷରୋପଣ କାର୍ଯ୍ୟକ୍ରମ ଜଂଗଲ ଓ ବନ୍ୟପ୍ରାଣୀ ବନୀକରଣ ସଂସ୍ଥାମାନଙ୍କ ମାଧ୍ୟମରେ ସମାହିତ ହୋଇଛି ।

ବିଗତ ତିନିବର୍ଷ ଧରି ଏହି ବିଭାଗ ଜରିଆରେ କେ.ବି.କେ. ଜିଲ୍ଲାଗୁଡ଼ିକରେ ଦୀର୍ଘମିଆଦୀ ସକ୍ରିୟ ଯୋଜନା ମାଧ୍ୟମରେ ବୃକ୍ଷରୋପଣ କାର୍ଯ୍ୟକ୍ରମ ସଂପାଦିତ ହୋଇଆସୁଛି । ଚଳିତବର୍ଷ ୮,୦୩୫ ହେକ୍ଟର ଜମିରେ ବୃକ୍ଷରୋପଣ ଏବଂ ୫,୦୦୦ ହେକ୍ଟର ଉଜୁଡ଼ା ଜଂଗଲର ପୁନଃ ବନୀକରଣ ଏବଂ ୯୫ ହେକ୍ଟର ଜମିରେ ଔଷଧୀୟ ବୃକ୍ଷରୋପଣ କରାଯାଇଛି । ପ୍ରତ୍ୟେକ ବନୀକରଣ ଅଂଚଳ ନିକଟସ୍ଥ ମୌଜାରେ ଗ୍ରାମ୍ୟ ଜଂଗଲ ସଂରକ୍ଷଣ ସମିତିମାନ ଗଠନ କରାଯାଇଛି ଏବଂ ଏଥିରେ ଲୋକମାନଙ୍କର ଅଂଶଗ୍ରହଣକୁ ସୁନିଶ୍ଚିତ କରାଯାଇପାରିଛି । ବିଭିନ୍ନ ଯୋଜନା ମାଧ୍ୟମରେ ୨୦୦୪-୦୫ ଆର୍ଥିକ ବର୍ଷରେ ଜଂଗଲ ଓ ବନ୍ୟପ୍ରାଣୀ ଶାଖା ୨୧୦ ହେକ୍ଟର ଜମିରେ ଶ୍ରୀଜଗନ୍ନାଥ ବନ ପ୍ରକଳ୍ପ ବୃକ୍ଷରୋପଣ ଏବଂ ୨୧୧ ହେକ୍ଟର ଜମିରେ ମିଶ୍ରିତ ବୃକ୍ଷରୋପଣ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା ମାଧ୍ୟମରେ କରାଯାଉଛି । ଏତଦ୍‌ବ୍ୟତୀତ ୬,୬୨୨ ହେକ୍ଟର ଜମିରେ ବିଭିନ୍ନ ପ୍ରାୟୋଜିତ ସଂସ୍ଥାମାନଙ୍କ ସାହାଯ୍ୟରେ କ୍ଷତିପୂରଣ ବନୀକରଣ କାର୍ଯ୍ୟ ଗ୍ରହଣ କରାଯାଇଛି ।

## ରାଜ୍ୟରେ ଓମ୍‌ଫେଡ ଦ୍ୱାରା ୩୫ଟି କୃତ୍ରିମ ପ୍ରଜନନ କେନ୍ଦ୍ର ଖୋଲିଲା

ରାଜ୍ୟରେ ଦୁଗ୍ଧ ଉତ୍ପାଦନ ବୃଦ୍ଧି ପାଇଁ ବିଶେଷକରି ଦୁଗ୍ଧ ସମବାୟ ସମିତି ଅଂଚଳରେ ଦୁଗ୍ଧ ଉତ୍ପାଦନ ଓ ସଂଗ୍ରହ ବୃଦ୍ଧି କରିବା ପାଇଁ ବର୍ତ୍ତମାନ ବ୍ୟାପକ ଭାବରେ ବିଭିନ୍ନ ଅଂଚଳରେ କୃତ୍ରିମ ପ୍ରଜନନ କେନ୍ଦ୍ର ଖୋଲାଯାଇଛି । ଚଳିତ ବର୍ଷ ମାର୍ଚ୍ଚ ମାସରେ ଓଡ଼ିଶାର ଅବିଭକ୍ତ ସମ୍ବଲପୁର ଜିଲ୍ଲାରେ ୭ଟି, ଯାଜପୁର ଜିଲ୍ଲାରେ ୪ଟି, ଭଦ୍ରକ ଜିଲ୍ଲାରେ ୯ଟି, ଅନୁଗୁଳ ଜିଲ୍ଲାରେ ୩ଟି, ଗଂଜାମ ଓ ଗଜପତି ଜିଲ୍ଲାରେ ୭ଟି, କଳାହାଣ୍ଡି ଜିଲ୍ଲାରେ ୩ଟି ଏହିପରି ୩୫ ଗୋଟି କୃତ୍ରିମ ପ୍ରଜନନ କେନ୍ଦ୍ର ଖୋଲାଯାଇଛି ।

କୃତ୍ରିମ ପ୍ରଜନନ ବିଷୟରେ ଓମ୍‌ଫେଡ୍ ତାଲିମ୍ ଓ ପ୍ରଶିକ୍ଷଣ କେନ୍ଦ୍ରରେ ବିଭିନ୍ନ ଦୁଗ୍ଧ ସମିତିରେ ମହିଳା ସଭ୍ୟାମାନଙ୍କୁ ତାଲିମ୍ ଦିଆଯାଇଛି । ମହିଳା ସଭ୍ୟାମାନେ ତାଲିମ୍ ନେବା ସଂଗେସଂଗେ ବିଭିନ୍ନ ଉନ୍ନତ କୃତ୍ରିମ ପ୍ରଜନନ କେନ୍ଦ୍ର ମଧ ପରିଦର୍ଶନ କରି ପ୍ରତ୍ୟକ୍ଷ ଜ୍ଞାନ ଆହରଣ କରିଛନ୍ତି । ଜାନୁଆରୀ ୧୧ ତାରିଖରୁ ଆରମ୍ଭ କରି ୪୦ ଦିନ ବ୍ୟାପୀ ଏହି ତାଲିମ୍ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥିଲା ବୋଲି ଓମ୍‌ଫେଡ୍ ସୂତ୍ରରୁ ପ୍ରକାଶ ।

## ଡି.ଏନ୍.ଏ. ପରୀକ୍ଷା ପାଇଁ ଆର୍ଥିକ ସହାୟତା

ପୁରୁଷ ପ୍ରାଧାନ୍ୟ ସମାଜରେ ଚାକିରି ଓ ବିବାହର ପ୍ରଲୋଭନ ଦ୍ୱାରା ନିରୀହ, ସରଳ କୁମାରୀ କନ୍ୟାମାନେ ପ୍ରତାରିତ ଓ ଯନ୍ତ୍ରଣାର ଶିକାର ହେଉଛନ୍ତି । କୁମାରୀ ମାତୃତ୍ୱ ଲାଭ କରି ସମାଜରେ ଏହି କୁମାରୀମାନେ ବହୁ ମାତ୍ରାରେ ମାନସିକ ଓ ସାମାଜିକ ସ୍ତରରେ ନିର୍ଯ୍ୟାତିତ ହେଉଛନ୍ତି । ଏହି କୁମାରୀ ମାତୃତ୍ୱକୁ ରୋକିବା, ପ୍ରକୃତ ସତ୍ୟକୁ ଲୋକଲୋଚନକୁ ଆଣିବା ପାଇଁ ତତ୍‌ସମ୍ବନ୍ଧୀୟ ଜଟିଳ ସମସ୍ୟାର ସମାଧାନ ପାଇଁ ଡି.ଏନ୍.ଏ. ପରୀକ୍ଷାର ଆବଶ୍ୟକତା ଉପଲବ୍‌ଧି କରି ସରକାର ଅସହାୟ ମହିଳା ଓ କିଶୋରୀ ନ୍ୟାୟ ପରିସରଭୁକ୍ତ ଶିଶୁମାନଙ୍କୁ ନ୍ୟାୟ ଦେବା ଉଦ୍ଦେଶ୍ୟରେ ଡି.ଏନ୍.ଏ. ପରୀକ୍ଷଣ ପାଇଁ ଆର୍ଥିକ ସହାୟତା ଦେବାକୁ ବ୍ୟବସ୍ଥା କରିଛନ୍ତି ।

ଏହି ବ୍ୟବସ୍ଥା ଅନୁଯାୟୀ ଜିଲ୍ଲାପାଳ, ଜିଲ୍ଲା ପୁଲିସ୍ ଅଧୀକ୍ଷକ ଏବଂ ରାଜ୍ୟ ମାନବାଧିକାର ସୁରକ୍ଷା ସଂସ୍ଥା (ଏଚ୍.ଆର୍.ପି.ସି.) ଅନୁମୋଦିତ ବ୍ୟକ୍ତିମାନଙ୍କୁ ବିଚାରକୁ ନିଆଯାଇ ମହିଳା ଓ ଶିଶୁ ବିକାଶ ବିଭାଗ ଦ୍ୱାରା ଆବଶ୍ୟକ ଅର୍ଥ ମଂଜୁର କରାଯିବା ପାଇଁ ବ୍ୟବସ୍ଥା ହୋଇଛି ।

ପ୍ରତି ଡି.ଏନ୍.ଏ. ପରୀକ୍ଷା ପାଇଁ ୩୦ ହଜାର ଟଙ୍କା ଖର୍ଚ୍ଚ ହେଉଥିବାରୁ ରାଜ୍ୟ ସରକାର ୨୦୦୫-୦୬ ଆର୍ଥିକ ବର୍ଷରେ ପ୍ରଥମ ପର୍ଯ୍ୟାୟରେ ଏହି ପରୀକ୍ଷା ପାଇଁ ୩ ଲକ୍ଷ ଟଙ୍କା ମଂଜୁର କରିଛନ୍ତି ବୋଲି ମହିଳା ଓ ଶିଶୁ ବିକାଶ ବିଭାଗ ସୂତ୍ରରୁ ପ୍ରକାଶ ।





# ଅଂଶୁଘାତ ପ୍ରତି ସାବଧାନ !

## ମାଲିକ ଓ ଶ୍ରମିକମାନଙ୍କ ଜାଣିବା କଥା

### ମାଲିକମାନେ ଜାଣି ରଖନ୍ତୁ

ମାଲିକମାନେ ଅପ୍ରେଲ ମାସଠାରୁ ଜୁଲାଇ ଶେଷ ପର୍ଯ୍ୟନ୍ତ ସେମାନଙ୍କ ଅଧିନରେ କାମ କରୁଥିବା ଶ୍ରମିକମାନଙ୍କୁ ଏଣିକି ଦିନ ସାଢ଼େ ଏଗାରଟାଠାରୁ ଅପରାହ୍ନ ସାଢ଼େ ୩ ଘଟିକା ପର୍ଯ୍ୟନ୍ତ ଟାଣ ଖରାରେ ଖଟାନ୍ତୁ ନାହିଁ ।

ଏହାର ଖିଲାପ କଲେ ମାଲିକମାନଙ୍କ ବିରୁଦ୍ଧରେ ଶ୍ରମ ଓ ନିୟୋଜନ ବିଭାଗ ତରଫରୁ ପ୍ରଣୟନ କରାଯାଇଥିବା ନିୟମ ଅନୁଯାୟୀ ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ ।

ଶ୍ରମିକମାନଙ୍କୁ ଟାଣ ଖରାରେ ଯଦି ମାଲିକମାନେ କାମ କରିବାକୁ ଜୋର୍ ଜବରଦସ୍ତି ବା ଜୁଲମ୍ କରନ୍ତି ତେବେ ସେମାନେ ନିକଟସ୍ଥ ବ୍ଲକ୍, ତହସିଲ, ସବ୍‌ଡିଭିଜନ, ଜିଲ୍ଲା, ବିଜ୍ଞାପିତ ଅଞ୍ଚଳ ପରିଷଦ (ଏନ୍.ଏ.ସି.), ପୌର ପରିଷଦ (ମ୍ୟୁନିସିପାଲିଟି)ର କାର୍ଯ୍ୟରତ ଅଧିକାରୀ, ଜିଲ୍ଲା ଶ୍ରମ ଅଧିକାରୀ ବା ଉପଖଣ୍ଡୀୟ ଶ୍ରମ ଅଧିକାରୀଙ୍କୁ ତୁରନ୍ତ ଜଣାନ୍ତୁ ।

### ଅଂଶୁଘାତରୁ ରକ୍ଷା ପାଇବାର ଉପାୟ

      

- ଟାଣ ଖରାରେ ପଦାକୁ ବାହାରନ୍ତୁ ନାହିଁ କିମ୍ବା କଠିନ ଶାରୀରିକ ପରିଶ୍ରମ କରନ୍ତୁ ନାହିଁ ।
- ଜରୁରୀ କାମରେ ବାହାରକୁ ଯିବାକୁ ହେଲେ ମୁଣ୍ଡରେ ଓଦା ଗାମୁଛା ଓ ଛତା, ପାଦରେ ଜୋତା, ଆଖିରେ କଳା ଚଷମା ବ୍ୟବହାର କରନ୍ତୁ ଓ ସାଥିରେ ପାଣି ବୋତଲ ନିଅନ୍ତୁ ।
- ଖରାଦିନେ ଜଳ ଶୁଷ୍କତାରୁ ରକ୍ଷା ପାଇବା ପାଇଁ ପାଣି, ପଇଡ଼, ଆଖୁରସ, ଲେମ୍ବୁ ସରବତ, ତୋରାଣି, ଘୋଳଦହି, ଓ.ଆର୍.ଏସ୍. ଦ୍ରବଣ ଆଦି ଯଥେଷ୍ଟ ପରିମାଣରେ ପିଇବା ଉଚିତ ଏବଂ କାକୁଡ଼ି, ତରଭୁଜ ଆଦି ଖାଇବା ଦରକାର ।
- ହାଲିଆ ଲାଗିଲେ ଘରେ କିମ୍ବା ପବନ ଚଳାଚଳ ସ୍ଥାନରେ ବିଶ୍ରାମ ନିଅନ୍ତୁ ।
- ଅଂଶୁଘାତରେ ଆକ୍ରାନ୍ତ ହୋଇଥିବା ବ୍ୟକ୍ତିଙ୍କୁ ପ୍ରଥମେ ଛାଇ ସ୍ଥାନକୁ ନେଇ ମୁଣ୍ଡରେ ଥଣ୍ଡା ପାଣି ଢାଳନ୍ତୁ ।
- ଯଦି ଅଂଶୁଘାତରେ ଆକ୍ରାନ୍ତ ହୋଇଥିବା ବ୍ୟକ୍ତିଙ୍କର ଅବସ୍ଥାରେ କିଛି ଉନ୍ନତି ନ ହୁଏ, ତେବେ ତାଙ୍କୁ ସଂଗେ ସଂଗେ ନିକଟସ୍ଥ ଡାକ୍ତରଖାନାକୁ ନେଇ ଚିକିତ୍ସା କରାନ୍ତୁ ।



ସୂଚନା ଓ ଲୋକ ସଂପର୍କ ବିଭାଗ

ଓଡ଼ିଶା ସରକାର

## ସଂପାଦକୀୟ




# ସାଧୁ ପ୍ରଧାନ ମହାକବି ଜୟଦେବ

**ଉ**ତ୍କୃଷ୍ଟ କଳାର ଦେଶ ହୋଇଥିବାରୁ ଓଡ଼ିଶାର ଅନ୍ୟନାମ ଉତ୍କଳ । ପ୍ରାଚୀନ ଉତ୍କଳ କଳା, ସାହିତ୍ୟ, ସ୍ଥାପତ୍ୟ, ନୌବାଣିଜ୍ୟ ଓ ସମରବିଦ୍ୟା ସବୁଥିରେ ଉତ୍କର୍ଷ ଲାଭ କରିଥିଲା । ବିଶାଳ ସଂସ୍କୃତ ସାହିତ୍ୟର ପରମ୍ପରା ମଧ୍ୟ ଏହାର ପଶ୍ଚାତ ଭାଗରେ ରହିଥିଲା । ଯାହାଫଳରେ ଓଡ଼ିଶାର ବହୁ ବିଦ୍ୱାନ ସଂସ୍କୃତରେ କାବ୍ୟ କବିତା ଆଦି ଲେଖି ସଂସ୍କୃତ ସାହିତ୍ୟକୁ ସମୃଦ୍ଧ କରିଯାଇଛନ୍ତି । ସଂସ୍କୃତ ସାହିତ୍ୟ ଭଣ୍ଡାରକୁ ଓଡ଼ିଶାର ଅବଦାନ କମ୍ ନୁହେଁ । ଏଭଳି ପରମ୍ପରା ଯଦି ଓଡ଼ିଶାରେ ଅନୁସୃତ ହୋଇନଥାନ୍ତା, ମହାକବି ଜୟଦେବଙ୍କ ରଚିତ 'ଗୀତଗୋବିନ୍ଦ' ଭଳି ରସସିକ୍ତ ମହାନ୍ କାବ୍ୟ ରଚନା ସମ୍ଭବ ହୋଇପାରିନଥାନ୍ତା ।

କାଳିଦାସଙ୍କଠାରୁ ଆରମ୍ଭ କରି ସେକ୍ସପିଅରଙ୍କ ପର୍ଯ୍ୟନ୍ତ ବିଶ୍ୱର ପ୍ରସିଦ୍ଧ କବିମାନେ ପ୍ରାୟ ଏକାଧିକ ବା ଅନେକ ଗ୍ରନ୍ଥ ରଚନା କରି ଯଶସ୍ୱୀ ହୋଇଛନ୍ତି । ମାତ୍ର ଖଣ୍ଡିଏ ପୁସ୍ତକ ଲେଖି ବିଶ୍ୱକବିମାନଙ୍କ ଦରବାରରେ ସମ ଆସନରେ ଆସୀନ ହେବାର ଅଧିକାରୀ ହୋଇଛନ୍ତି ଓଡ଼ିଶାର 'ଗୀତଗୋବିନ୍ଦ'ର ରଚୟିତା ପ୍ରାତଃ ସ୍ମରଣୀୟ କବି ଜୟଦେବ । କାନ୍ତ କୋମଳ ପଦ୍ୟାବଳୀରେ ସେ ଯେପରି ରାଧାକୃଷ୍ଣଙ୍କ ଲୀଳା ରହସ୍ୟ ବର୍ଣ୍ଣନା କଲେ, ତାହା ପାଠକର ହୃଦୟ ତନ୍ତ୍ରୀକୁ ମଧୁର ମୂର୍ଚ୍ଛନାରେ ଝଙ୍କୃତ କରି ଦେଲା । ଏହା ହିଁ ବିଶ୍ୱ ପ୍ରସିଦ୍ଧ ଗୀତଗୋବିନ୍ଦର ମହତ୍ୱ । ଏଇଠି କ୍ରାନ୍ତିଦର୍ଶୀ ଶ୍ରୀ ଜୟଦେବଙ୍କର କୃତିତ୍ୱର କାଉଁରୀ ସ୍ପର୍ଶ । ପ୍ରୀତି, ରତି, ଭକ୍ତିରସ ସମନ୍ୱୟରେ ଗଢ଼ି ଉଠିଛି ଏହି ପବିତ୍ର ସାହିତ୍ୟ କୃତି 'ଗୀତଗୋବିନ୍ଦ' । ପଦଲାଳିତ୍ୟର ଅପୂର୍ବ ବିଳାସରେ ବିଳସିତ 'ଗୀତଗୋବିନ୍ଦ' ତେଣୁ ଓଡ଼ିଆ ରୀତି କବିମାନଙ୍କର ପ୍ରେରଣାର ଉତ୍ସ ହୋଇ ପଡ଼ିଥିଲା । ସେଇଥି ପାଇଁ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଭଳି ବଡ଼ ବଡ଼ କବିମାନେ ମଧ୍ୟ କବି ଜୟଦେବଙ୍କ ପଦ କଞ୍ଜରେ ମଥାନତ କରି ଗାଇ ଉଠିଛନ୍ତି -

'ଜୟଦେବ କବିବର (ଦୀନକୃଷ୍ଣ) ଏକା ମୋର ଶରଣ ।'

ଓଡ଼ିଶାର କଳାକୃତି, ସାହିତ୍ୟ, ସ୍ଥାପତ୍ୟ ସବୁଥିରେ କବି ଜୟଦେବଙ୍କ ମାନସିକତାର ପ୍ରତିଫଳନ ଦେଖିବାକୁ ମିଳେ । ଓଡ଼ିଶାର ରାଷ୍ଟ୍ର ଦେବତା ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ଶ୍ରୀଗୀତଗୋବିନ୍ଦ ଦୈନନ୍ଦିନ ପାଠ କରାଯାଏ । ତେଣୁ ମହାକବି ଜୟଦେବ କସ୍ମିନ କାଳେ ବଙ୍ଗଳାର ହୋଇ ନପାରନ୍ତି । ଓଡ଼ିଶାର ବହୁ ବିଦ୍ୱାନ ଏ ଦିଗରେ ଗବେଷଣା କରି ଜୟଦେବ ଓଡ଼ିଶାର ବୋଲି ପ୍ରମାଣ କରିସାରିଲେଣି । ବହୁ ବଙ୍ଗୀୟ ବିଦ୍ୱାନ ମଧ୍ୟ ଶ୍ରୀ ଜୟଦେବ ଓଡ଼ିଶାର ବୋଲି ସ୍ୱୀକୃତି ପ୍ରଦାନ କରିଛନ୍ତି । ଓଡ଼ିଶାରେ ଜନ୍ମ ଗ୍ରହଣ କରି ସର୍ବାନ୍ତକରଣରେ ସେ ହୋଇଯାଇଛନ୍ତି ସମଗ୍ର ଭାରତବର୍ଷର । ମହାକବି ଶ୍ରୀ ଜୟଦେବଙ୍କ 'ଶ୍ରୀଗୀତଗୋବିନ୍ଦ' ଭାରତୀୟ ସଂସ୍କୃତ ସାହିତ୍ୟ ଭଣ୍ଡାରରେ ଏକ ଅମୂଲ୍ୟ ରତ୍ନ ।

# ନିଯୁକ୍ତି ମିଶନ୍

ରାଜ୍ୟରୁ ବେରୋଜଗାରୀ ଓ ବେକାରୀ ଦୂରୀକରଣ ପାଇଁ ଯୁବକଯୁବତୀମାନଙ୍କୁ କାମଧନ୍ଦା ଯୋଗାଇ ଦେବା ତଥା ସ୍ୱାବଲମ୍ବୀ କରିବା ନିମନ୍ତେ ସରକାର ନିକଟରେ ରାଜ୍ୟ ନିଯୁକ୍ତି ନୀତି - ୨୦୦୫ ନିର୍ଦ୍ଧାରଣ କରିଛନ୍ତି । ଏଥିରେ ଆତ୍ମନିଯୁକ୍ତି ଓ ଶ୍ରମଭିତ୍ତିକ ନିଯୁକ୍ତି ସୁବିଧା ସୃଷ୍ଟି କରି ବେକାର ଯୁବକଯୁବତୀମାନଙ୍କ ଆର୍ଥିକ ମାନଦଣ୍ଡ ବୃଦ୍ଧି କରିବା ଲକ୍ଷ୍ୟ ରଖାଯାଇଛି । ଏଥିଲାଗି ସରକାର ଏକ ନିଯୁକ୍ତି ମିଶନ୍ ଗଠନ କରିଛନ୍ତି । ଆତ୍ମନିଯୁକ୍ତି ଓ ଶ୍ରମଭିତ୍ତିକ ନିଯୁକ୍ତି ପାଇଁ ଉପଯୁକ୍ତ ଭିତ୍ତିଭୂମି ଯୋଗାଇ ଦେବା ନିମନ୍ତେ ଯୋଜନା ରଖାଯାଇଛି । ନିଯୁକ୍ତି ନୀତିରେ ଏହି କାର୍ଯ୍ୟକୁ ଏକ ମିଶନ୍ ଭାବେ ଗ୍ରହଣ କରାଯାଇଛି । ମୁଖ୍ୟତଃ କୃଷି ତାହାର ସହଯୋଗୀ କ୍ଷେତ୍ର କ୍ଷୁଦ୍ରଶିଳ୍ପ, ହସ୍ତଶିଳ୍ପ, ହସ୍ତତନ୍ତ, କୁଟୀରଶିଳ୍ପ ଏବଂ ସୂଚନା ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ମୁଖ୍ୟତଃ ଆତ୍ମନିଯୁକ୍ତି ସୁଯୋଗ ସୃଷ୍ଟି କରିବା ପାଇଁ ଅଧିକ ଗୁରୁତ୍ୱ ଦିଆଯାଇଛି ।

ବିଗତ ବର୍ଷଗୁଡ଼ିକରେ ରାଜ୍ୟରେ ବହୁ କ୍ଷେତ୍ରରେ ଉନ୍ନତି ସାଧିତ ହୋଇଥିଲେ ହେଁ, ଆଗାମୀ ଦିନରେ ରାଜ୍ୟକୁ ଶିଳ୍ପୋନ୍ନତ ରାଜ୍ୟ ରୂପେ ଗଢ଼ି ତୋଳିବା ପାଇଁ ସରକାର ବହୁମତେ ପ୍ରୟାସ ଜାରି ରଖିଛନ୍ତି । ବର୍ତ୍ତମାନ ରାଜ୍ୟରେ ବହୁଗୁଡ଼ିଏ ଶିଳ୍ପ ପ୍ରତିଷ୍ଠା ପାଇଁ ଅନୁକୂଳ ବାତାବରଣ ସୃଷ୍ଟି ହୋଇପାରିଛି । ଆଗାମୀ ଦିନରେ ଓଡ଼ିଶା ଏକ ଶିଳ୍ପ ସମୃଦ୍ଧ ରାଜ୍ୟରେ ପରିଣତ ହେବାକୁ ଯାଉଛି । ଏଥିରେ ଜନସହଯୋଗ ଏକାନ୍ତ ଆବଶ୍ୟକ । ଆସନ୍ତୁ, ସମସ୍ତ ପ୍ରକାର ଭେଦାଭେଦ ଭୁଲି ରାଜ୍ୟକୁ ପ୍ରଗତି ପଥରେ ଆଗେଇ ନେବା ପାଇଁ ସରକାରଙ୍କୁ ଅକୁଣ୍ଠ ସାହାଯ୍ୟ ସହଯୋଗ ଯୋଗାଇ ଦେବା ।

ପବିତ୍ର ମଇ ଦିବସ ଅବସରରେ ଓଡ଼ିଶାର ଚାଷୀ, ମୂଲିଆ, କଳକାରଖାନା, ଶିଳ୍ପ ଓ ଖଣି ଖାଦାନରେ କାର୍ଯ୍ୟ କରୁଥିବା ପ୍ରିୟ ଭାଇ ଓ ଭଉଣୀମାନଙ୍କୁ ଆମେ ହାର୍ଦ୍ଦିକ ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛୁ ।

ଚଳିତ ସଂଖ୍ୟାରେ ଜୟଦେବଙ୍କ ସମ୍ପର୍କରେ କେତୋଟି ରଚନା ପ୍ରକାଶିତ । ପୁଣି ଏଥିରେ କେତେକ ଲେଖା ମାଧ୍ୟମରେ ଶ୍ରମିକ ସମସ୍ୟା ଉପରେ ଆଲୋକପାତ କରାଯିବା ସଂଗେସଂଗେ ପାଠକପାଠିକାମାନଙ୍କ ରୁଚି ଭିନ୍ନତାକୁ ଚାହିଁ ଆମେ ଓଡ଼ିଶାର କଳା, ସଂସ୍କୃତି, ସାହିତ୍ୟ ଓ ସରକାରଙ୍କ ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟ ସମ୍ପର୍କରେ ବହୁ ଉପାଦେୟ ଲେଖାମାନ ସ୍ଥାନୀତ କରିଛୁ । ପତ୍ରିକାରେ ସ୍ଥାନୀତ ଲେଖାଗୁଡ଼ିକ ପାଠକପାଠିକାମାନଙ୍କ ନିକଟରେ ଆଦୃତ ହେବ ବୋଲି ଆମର ଆଶା ଓ ବିଶ୍ୱାସ ।

ଶରତ ଚନ୍ଦ୍ର ସାମନ୍ତରାୟ

# ଉତ୍କଳ ପ୍ରସଙ୍ଗ

**The Utkal Prasanga**

୬୧ ଭାଗ | ୧୦ମ ସଂଖ୍ୟା | ବୈଶାଖ-ଜ୍ୟେଷ୍ଠ | ମଇ - ୨୦୦୫





**ବାର୍ଷିକ ଦେୟ : ଟ.୫୦.୦୦**
**ପ୍ରତିଖଣ୍ଡ : ଟ.୫.୦୦**





ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।



ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧
ଫୋନ : ୨୪୦୪୫୧୩

# ସୂଚୀ